# ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା

-ଏକ ଅଧ୍ୟୟନ-



ଡକ୍ଟର ଶାରଦା କୁମାରୀ ମହାନ୍ତି

# ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା

-ଏକ ଅଧ୍ୟୟନ-



ଲେଖିକା :

**ଶ୍ରୀମତୀ ଶାରଦା କୁମାରୀ ମହାନ୍ତି**

ଏମ୍.ଏ.,ବି.ଇଡ୍

# କବିସୂର୍ଯ୍ୟ ବ୍ରହ୍ମା - ଏକ ଅଧ୍ୟୟନ

ଲେଖିକା :

**ଡକ୍ଟର ଶାରଦା କୁମାରୀ ମହାନ୍ତି**

ପ୍ରଥମମୁଦ୍ରଣ—୧୯୯୭

ମୁଦ୍ରଣ :

ପ୍ରିୟଦର୍ଶୀ ପ୍ରକାଶନୀ

୭୩, ଫରେଷ୍ଟ୍ ପାର୍କ

ଭୁବନେଶ୍ୱର-୭୫୧୦୦୯

ପ୍ରକାଶକ :

**ଶ୍ରୀ ଜିତେନ୍ଦ୍ର କିଶୋର ମହାନ୍ତି**

ପୋ: ଅ:—ଜୟବଡ଼, ଜିଲ୍ଲା—ଜଗତ୍ସିଂହପୁର (ଓଡ଼ିଶା)

**ମୂଲ୍ୟ**

**ଟ ୧୦୦.୦୦**

(ଏକଶତଟଙ୍କା) ମାତ୍ର



## ୰ ଡ଼କ୍ଟର ଶାରଦା କୁମାରୀ ମହାନ୍ତ

ଜନ୍ମ : ୧୯୩୫ ମସିହା ମାର୍ଗଶୀର କୃଷ୍ଣପକ୍ଷ ପ୍ରତିପଦ

ମୃତ୍ୟୁ : ୧୯୯୩ ମସିହା ଅକ୍ଟୋବର ୪ ତାରିଖ

ଶିକ୍ଷା : ୧୯୬୨ ମସିହାରେ ଓଡ଼ିଆରେ ଏମ୍.ଏ. (ରେଭେନ୍‌ସା କଲେଜ)
୧୯୬୩ ମସିହାରେ ବି.ଏଡ୍. (ରାଧାନାଥ ଟ୍ରେନିଂ କଲେଜ, କଟକ)
୧୯୮୦ ମସିହାରେ ଓଡ଼ିଆରେ ପି.ଏଚ୍.ଡ଼ି (ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

କର୍ମ ଜୀବନ : ୧୯୬୪ ମସିହାରେ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହା ବିଦ୍ୟାଳୟରେ ଓଡ଼ିଆ ଅଧାପିକା ଭାବରେ ଯୋଗଦାନ ।

ସ୍ୱାମୀ : ଶ୍ରୀ ଜିତେନ୍ଦ୍ର କିଶୋର ମହାନ୍ତି
ଅବସର ପ୍ରାପ୍ତ ଜିଲ୍ଲା ସବ୍‌ରେଜିଷ୍ଟ୍ରାର, ପୁରୀ
ଗ୍ରାମ : ଜୟବଡ଼, ପୋ:ଅ:/ଜିଲ୍ଲା-ଜଗତସିଂହପୁର

ସନ୍ତାନ : (୧) ଚଣ୍ଡୀପ୍ରସାଦ : ଦେଶରକ୍ଷା ବିଭାଗରେ ମେଜର
(୨) କାଳୀପ୍ରସାଦ : ତୈଳ କମ୍ପାନୀରେ ଇଂଜିନିୟର
(୩) ଦେବୀପ୍ରସାଦ : ଜଗତସିଂହପୁରରେ ଆଇନ ବ୍ୟବସାୟୀ

□□□

# ଅଶ୍ରୁ ତର୍ପଣ

ମୋର ସହଧର୍ମିଣୀ ଶାରଦା ବହୁଶ୍ରମ ସ୍ୱୀକାର କରି ଯେଉଁ ଗବେଷଣାମୂଳକ ଗ୍ରନ୍ଥଟି ପ୍ରସ୍ତୁତ କରିଥିଲେ ଏହା ତାହାଙ୍କ ଜୀବତାବସ୍ଥାରେ ମୁଦ୍ରିତ ହୋଇ ପାରିନଥିଲା । ଏଥିପାଇଁ ମୁଁ ଯେ ଉଦ୍ୟମ କରିନଥିଲି, ତାହା ନୁହେଁ, ପରନ୍ତୁ ପରିତାପର ବିଷୟ, ଏହା ସମ୍ଭବ ହୋଇପାରିନଥିଲା । ଜଣେ ପ୍ରକାଶକଙ୍କ ନିକଟରେ ଏହାର ପାଣ୍ଡୁଲିପି ବହୁବର୍ଷ ଧରି ପଡ଼ି ରହିଲା । ଯାହାହେଉ ଶାରଦାଙ୍କ ଆକସ୍ମିକ ବିୟୋଗ ପରେ ସେ ପାଣ୍ଡୁଲିପିଟି ଫେରିଇ ଦେଇଥିଲେ । ଏହାପରେ ମୁଁ ଭୁବନେଶ୍ୱର ଯାଇ ଏଇ ନିବନ୍ଧର ପରୀକ୍ଷକ, ରେଭେନ୍‌ସା କଲେଜର ଅବସର ପ୍ରାପ୍ତ ପ୍ରଫେସର ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ମହାନ୍ତିଙ୍କୁ ସାକ୍ଷାତ କରିଥିଲି । ଏହି ଗ୍ରନ୍ଥକୁ ମୁଦ୍ରଣ କରିବା ସମ୍ପର୍କରେ ତାଙ୍କର ପରାମର୍ଶ ନେଇଥିଲି । ମୋ ଅନୁରୋଧରେ ସେ ବୃହତ ଗ୍ରନ୍ଥଟିକୁ ସଂକ୍ଷିପ୍ତ କରି ଦେଇଥିବାରୁ ଏହାକୁ ଛପାଇବା ସମ୍ଭବ ହେଲା । ସେଥିପାଇଁ ମୁଁ ତାହାଙ୍କ ନିକଟରେ ଚିର ଋଣୀ ।

ମୋ ପତ୍ନୀଙ୍କ ସହକର୍ମୀ ତଥା ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ ଶ୍ରୀଯୁକ୍ତ ଫକୀର ଚରଣ ସିଂହ ଏଇ ଗ୍ରନ୍ଥକୁ ମୁଦ୍ରିତ କରାଇବା ବିଷୟରେ ମୋତେ ଉତ୍ସାହିତ କରିଥିବାରୁ ମୁଁ ତାହାଙ୍କୁ ମଧ୍ୟ କୃତଜ୍ଞତା ଜ୍ଞାପନ କରୁଛି । ପରିଶେଷରେ ମୋର ତିନିପୁଅ ଶ୍ରୀମାନ ଚଣ୍ଡୀପ୍ରସାଦ, କାଳୀପ୍ରସାଦ ଓ ଦେବୀପ୍ରସାଦଙ୍କର ଆଗ୍ରହ ଓ ଅକୁଣ୍ଠିତ ସମର୍ଥନ ମଧ୍ୟ ମୋତେ ଏ ବିଷୟରେ ବହୁତ ଉତ୍ସାହ ପ୍ରଦାନ କରିଛି । ଏତେ ଦିନ ପରେ ପତ୍ନୀଙ୍କର ଶେଷ ଇଚ୍ଛା ପୂରଣ ହୋଇ ପାରିଛି, ଏଥିପାଇଁ ମୁଁ ଆନନ୍ଦିତ ଓ ନିଜକୁ ଦାୟିତ୍ୱ ମୁକ୍ତ ବୋଲି ମନେ କରୁଛି । ତାଙ୍କ ସମ୍ପର୍କରେ ମୁଁ ବା କଣ ଲେଖିବି ? ସେ ଥିଲେ ମୋର ଜୀବନ ସଙ୍ଗିନୀ, ସୁଚରିତ୍ରିଣୀ । ତାଙ୍କ ମଧୁର ସ୍ମୃତିର ସୌରଭ ମୋତେ ଏ ପର୍ଯ୍ୟନ୍ତ ଆଚ୍ଛନ୍ନ କରି ରଖିଛି । ତାଙ୍କର ବିୟୋଗ ବେଦନା ମୁଁ ମର୍ମେ ମର୍ମେ ଅନୁଭବ କରୁଛି ।

ଅସଂଖ୍ୟ ଛାତ୍ରଛାତ୍ରୀଙ୍କ ମାନସ ପଟରେ ତାଙ୍କର ସ୍ମୃତି ଅମ୍ଲାନ ହୋଇ ରହିଅଛି । ଅସଂଖ୍ୟ ଶୋକାକୁଳ ଜନତାର ହୃଦୟ ମଧ୍ୟରେ ବାନ୍ଧି ନହୋଇ କର୍ମଭୂମି ଛାଡ଼ି ସେ ଚାଲିଗଲେ ଧର୍ମଭୂମି ପୁରୀର ସ୍ୱର୍ଗଦ୍ୱାରକୁ ।

**ଶ୍ରୀ ଜିତେନ୍ଦ୍ର କିଶୋର ମହାନ୍ତି**
ହତଭାଗ୍ୟ ସ୍ୱାମୀ

# ଏଇ ନିବନ୍ଧ ସଂପର୍କରେ

ଏଇ ଗବେଷଣାତ୍ମକ ନିବନ୍ଧର ରଚୟିତା ହେଉଛନ୍ତି ସ୍ୱର୍ଗତା ଶାରଦା କୁମାରୀ ମହାନ୍ତି । ୧୯୫୯ରୁ ୧୯୬୧ ପର୍ଯ୍ୟନ୍ତ ସେ ରେଭେନ୍‌ସା କଲେଜର ଓଡ଼ିଆ ଉପାଧ୍ୟୁତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ସେଇ ଭାବରେ ସେ ଥିଲେ ମୋର ଛାତ୍ରୀ । ଦେଖିବାକୁ ଉଜ୍ଜ୍ୱଳ ଗୌରବର୍ଣ୍ଣା, ସଦା ପ୍ରଫୁଲ୍ଲ, ମିଷ୍ଟଭାଷିଣୀ ନମ୍ର ଝିଅଟିଏ । ବୋଧହୁଏ ପାରିବାରିକ ସଂସ୍କାର ଯୋଗୁଁ ସେ ଥିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗିଣୀ । ଶିକ୍ଷକତା ପ୍ରତି ବୋଧହୁଏ ତାଙ୍କର ଥିଲା ଆଗ୍ରହ । ୧୯୬୧ରେ ଏମ୍ ଏ. ପାସ୍ କରିବା ପରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟୟନ କରି ସେ ବି. ଏଡ୍. ପାସ୍ କରିଥିଲେ । ୧୯୬୪ ମସିହାରେ ତାଙ୍କ ଘର ପାଖ ଜଗତସିଂହପୁରରେ ନୂଆ ପ୍ରତିଷ୍ଠିତ ହୋଇଥିବା କଲେଜରେ ସେ ଓଡ଼ିଆ ଅଧ୍ୟାପିକା ଭାବେ ଯୋଗ ଦେଇଥିଲେ ।

ଶାରଦା ରେଭେନ୍‌ସା କଲେଜରୁ ବିଦାୟ ନେବାପରେ ତାଙ୍କ ସହ ବୋଧହୁଏ ମୋର ସାମୟିକ ଥରେ ଦୁଇଥର ସାକ୍ଷାତ ହୋଇଥିଲା । ଥରେ ତାଙ୍କଠାରୁ ଜାଣି ଖୁସି ହେଲି ସେ ପ୍ରାଚୀନକବି କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମାଙ୍କ ସମ୍ପର୍କରେ ଗବେଷଣା କରିବାରେ ମନୋନିବେଶ କରିଛନ୍ତି । ଏଥିପାଇଁ ତାଙ୍କୁ ପରାମର୍ଶ ଦେଇଥିଲେ ସଂସ୍କୃତ ଭାଷାର ବିଶିଷ୍ଟ ବିଦ୍ୱାନ ସ୍ୱର୍ଗତ ପ୍ରହ୍ଲାଦ ପ୍ରଧାନ (୧୯୧୦-୮୨) । ଏହାଛଡ଼ା ତାଙ୍କୁ କବିଙ୍କ ସମ୍ପର୍କରେ ଯିଏ ବହୁ ସାହାଯ୍ୟ କରିଥିଲେ ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତା, ସ୍ୱର୍ଗତ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ (୧୯୦୬-୮୨) । ତାହାଙ୍କଠାରୁ ଶାରଦା କବି ସଦାନନ୍ଦଙ୍କ ରଚିତ କେତେକ ଦୁର୍ଲ୍ଲଭ ପାଣ୍ଡୁଲିପି ଓ ପୋଥି ସଂଗ୍ରହ କରିପାରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣଙ୍କ ଜନ୍ମସ୍ଥାନ ହେଉଛି ପାରଳାଖେମୁଣ୍ଡିର ଦଶରଥପୁର ଶାସନ । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅର୍ଥାନୁକୂଲ୍ୟରେ ସେ ଉଚ୍ଚଶିକ୍ଷା ଲାଭ କରିଥିଲେ ଓ ତାହାଙ୍କ ପ୍ରେରଣାରେ ସାହିତ୍ୟ ଚର୍ଚ୍ଚାରେ ଆଜୀବନ ଥିଲେ ଉତ୍ସର୍ଗୀକୃତ । ପରିବାର ବିହୀନ ଏହି ଜ୍ଞାନତପସ୍ୱୀ ସେତେବେଳେ କଟକ ନଣ୍ଡାଦେଉଳ ପରିସରରେ

ରହୁଥିଲେ । ତାଙ୍କଠାରୁ ପୋଥି ଓ ପାଣ୍ଡୁଲିପି ପାଇବା ଲାଗି ଶାରଦା ବହୁ ପ୍ରଚେଷ୍ଟା କରିଥିଲେ । ଏହିପରି ଦୁଇ ପ୍ରଥିତଯଶା ଜ୍ଞାନୀ, ଗୁଣୀ ଗବେଷକଙ୍କ ସାହାଯ୍ୟ ଓ ସହଯୋଗରେ ଶାରଦାଙ୍କ ଗବେଷଣା କାର୍ଯ୍ୟ ଆଗେଇ ଚାଲିଲା । ଏହାପରେ ଶାରଦା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ସଂରକ୍ଷିତ କବି ସଦାନନ୍ଦଙ୍କ କେତେକ ତାଳପତ୍ର ପୋଥିର ସାହାଯ୍ୟ ମଧ୍ୟ ଗ୍ରହଣ କରିଥିଲେ ।

ଏହି ସମସ୍ତ କାର୍ଯ୍ୟରେ ଶାରଦାଙ୍କ ପ୍ରେରଣାର ଉତ୍ସ ଓ ପରମ ସାହାଯ୍ୟକାରୀ ଥିଲେ ତାଙ୍କର ସ୍ୱାମୀ ଶ୍ରୀଯୁକ୍ତ ଜଗେନ୍ଦ୍ର କିଶୋର ମହାନ୍ତି । ୧୯୬୧ ମସିହାରେ ଜଗତସିଂହପୁର ଜମୁବଡ଼ ନିବାସୀ ଏହି ସଦାଶୟ, କର୍ତ୍ତବ୍ୟପରାୟଣ ବ୍ୟକ୍ତିଙ୍କ ସହ ଶାରଦାଙ୍କର ବିବାହ ଅନୁଷ୍ଠିତ ହୋଇ ଥିଲା । ଏହା ଥିଲା ଯଥାର୍ଥରେ ମଣିକାଞ୍ଚନର ସଂଯୋଗ । ବହୁ ବର୍ଷର ଅଧ୍ୟବସାୟ ପରେ ଶାରଦା ତାହାଙ୍କ ଗବେଷଣାତ୍ମକ ନିବନ୍ଧଟିକୁ ସମ୍ପୂର୍ଣ୍ଣ କରିପାରିଥିଲେ । ଯୋଗକୁ ଏଇ ନିବନ୍ଧର ମୁଁ ଥିଲି ଅନ୍ୟତମ ପରୀକ୍ଷକ । ୧୯୮୦ ମସିହାରେ ଶାରଦାଙ୍କ ଏଇ ନିବନ୍ଧଟି ପରୀକ୍ଷିତ ହୋଇଥିଲା ଓ ସେ ଡକ୍ଟରେଟ୍ ଉପାଧି ପାଇବାକୁ ଯୋଗ୍ୟା ବିବେଚିତ ହୋଇଥିଲେ । ଡକ୍ଟରେଟ୍ ଉପାଧି ପାଇବାରେ ଅଧ୍ୟାପିକା ଭାବେ ହେଉଛନ୍ତି ପ୍ରଥମ ।

ସମାବର୍ତ୍ତନ ଉତ୍ସବରେ ଡକ୍ଟରେଟ୍ ଉପାଧି ପାଇବା ପରେ କୃତଜ୍ଞତା ଜଣାଇବାକୁ ଅଥବା ସୌଜନ୍ୟ ଦୃଷ୍ଟିରୁ ଶାରଦା ଦିନେ ମୋ ସରକାରୀ ବାସଭବନକୁ ଆସିଥିଲେ । ସେତେବେଳେ ତାଙ୍କ ସହ ଆଲାପରୁ ନିବନ୍ଧଟି ପ୍ରସ୍ତୁତ କରିବା ଲାଗି ତାଙ୍କ ଅଧ୍ୟବସାୟ, ତାଙ୍କ ସ୍ୱାମୀଙ୍କ ସହଯୋଗ ପ୍ରଭୃତି ବିଷୟରେ ମୁଁ ଅବହିତ ହୋଇଥିଲି । ନିବନ୍ଧର ବିଷୟଟି ସମ୍ପୂର୍ଣ୍ଣ ନୂତନ ହୋଇଥିବାରୁ ଏହା ଯଥା ଶୀଘ୍ର ପୁସ୍ତକାକାରରେ ପ୍ରକାଶପାଉ ବୋଲି ମୋର ଅଭିମତ ତାଙ୍କୁ ଜଣାଇଥିଲି । ଏହାକୁ ପରିମାର୍ଜିତ ଓ ସାମାନ୍ୟ ସଂକ୍ଷିପ୍ତ କରି ପ୍ରକାଶ କରିବା ସମ୍ପର୍କରେ ମୁଁ ତାଙ୍କୁ ସେତେବେଳେ ପରାମର୍ଶ ମଧ୍ୟ ଦେଇଥିଲି । ମାତ୍ର ଏହା କାର୍ଯ୍ୟକାରୀ ହେବା ପୂର୍ବରୁ ଆଦରଣୀୟା ଶାରଦାଙ୍କର ୪-୧୦-୯୩ରେ ଜଗତସିଂହପୁରରେ ତାହାଙ୍କ ଶ୍ୱଶୁରାଳୟରେ ଅକାଳ ବିୟୋଗ ହୋଇଯାଇଥିଲା । ଜୀବଦ୍ଦଶାରେ ଆପଣା ନିବନ୍ଧଟିକୁ ମୁଦ୍ରିତ ଆକାରରେ ଦେଖିବାର ସୁଯୋଗ ସେ ପାଇପାରି ନଥିଲେ ।

ଶାରଦାଙ୍କ ନିବନ୍ଧଟି ଯେ ମୁଦ୍ରିତ ହୋଇ ପାରିବ ଏ ବିଷୟରେ ମୁଁ ମଧ୍ୟ ଆଶାନ୍ୱିତ ନଥିଲି । ମାତ୍ର ଏହା ଭ୍ରମାତ୍ମକ ବୋଲି ଦିନେ ପ୍ରତିପାଦିତ ହୋଇଗଲା । ୧୯୮୨ରୁ ଅବସର ନେଇ ମୁଁ ଭୁବନେଶ୍ୱରରେ ରହିଆସୁଛି ।

ଶାରଦା ଓ ତାଙ୍କ ନିବନ୍ଧ ବିଷୟ ମୁଁ ଏକ ପ୍ରକାର ଭୁଲି ଯାଇଥିଲି । ହଠାତ୍ ଗତବର୍ଷ ଜୁନ୍ ମାସର ଏକ ଉତ୍ତପ୍ତ ମଧ୍ୟାହ୍ନରେ ମୋ ବାସଭବନରେ ଉପସ୍ଥିତ ହେଲେ ଜଣେ ଗୌରବର୍ଣ୍ଣ, ସୁଠାମ, ଦୀର୍ଘକାୟ ଅପରିଚିତ ଭଦ୍ରବ୍ୟକ୍ତି, ହାତରେ ତାଙ୍କର ଥିଲା ଏକ ମୋଟା ପ୍ୟାକେଟ୍ । ଆପଣାର ପରିଚୟ ଦେଇ ସେ କହିଲେ—'ମୁଁ ହେଉଛି ଜିତେନ୍ଦ୍ର କିଶୋର ମହାନ୍ତି, ଜିଲ୍ଲା ସବ୍‌ରେଜିଷ୍ଟ୍ରାର ଚାକିରିରୁ ଅବସର ନେଇଛି । ମୋ ସ୍ତ୍ରୀ ସଦାନନ୍ଦ ବ୍ରହ୍ମାଙ୍କ ସମ୍ପର୍କରେ ଯେଉଁ ନିବନ୍ଧ ପ୍ରସ୍ତୁତ କରିଥିଲେ ତାହାକୁ ଛପାଇବା ସମ୍ପର୍କରେ ଆପଣଙ୍କ ପାଖକୁ ଆସିଛି ।' ଶାରଦାଙ୍କ ସହ ସଦ୍‌ଭାବ ସତ୍ତ୍ୱେ ତାଙ୍କ ସ୍ୱାମୀଙ୍କୁ ଦେଖିବାର ସୁଯୋଗ ମୋତେ ସେ ପର୍ଯ୍ୟନ୍ତ ମିଳିନଥିଲା ।

ଏହାପରେ ଜିତେନ୍ଦ୍ରବାବୁ ବର୍ଣ୍ଣନା କଲେ କିପରି ଏଇ ନିବନ୍ଧର ମୁଦ୍ରଣ ଲାଗି ବହୁ ଉଦ୍ୟମ ସତ୍ତ୍ୱେ ସେ ବିଫଳ ମନୋରଥ ହୋଇଛନ୍ତି । "ଜଣେ ପ୍ରକାଶକ ଏହାକୁ ଛପାଇବା ଲାଗି ବହୁବର୍ଷ ରଖିବା ପରେ ଶେଷକୁ ଫେରାଇ ଦେଲେ । ଏହାକୁ ଛପାଇବା ଲାଗି ଏବେ ଆଉ କାହାର ଆଗ୍ରହ ଥିବା ଭଳି ମୋତେ ଜଣାପଡୁନାହିଁ । ଏହାକୁ ପ୍ରସ୍ତୁତ କରିବା ଲାଗି ଶାରଦା ଓ ମୁଁ ଯେତେ କଷ୍ଟ ସ୍ୱୀକାର କରିଛୁ ତାହା ଆଉ କିଏ ବା ବୁଝିବ ? ଭୁବନେଶ୍ୱରକୁ ବାରମ୍ବାର ଆସି ରାଜ୍ୟ ସଂଗ୍ରହାଳୟରେ ପୋଥି ଉଣ୍ଡାଇବା-ଠାରୁ ଆରମ୍ଭ କରି ନିବନ୍ଧଟିକୁ ହାତରେ ନକଲ କରିବା ପର୍ଯ୍ୟନ୍ତ କାମ ସବୁ ମୁଁ ଶାରଦା ପାଇଁ କରିଛି । ଏ ନିବନ୍ଧ ହେଉଛି ମୋ ହାତ-ଲେଖା ।" ଏହା କହିବା ବେଳେ କଣ୍ଠ ତାଙ୍କର ବାଷ୍ପାକୁଳ ହୋଇ ଆସୁଥାଏ । ନିବନ୍ଧଟି ଛପାହେବା ମାଧ୍ୟମରେ ତାଙ୍କର ସ୍ମୃତିରକ୍ଷା ହେବ । ଏଥିପାଇଁ ଏହାର ସମସ୍ତ ମୁଦ୍ରଣ ବ୍ୟୟ ବହନ କରିବାକୁ ସେ ନିଜେ ଇଚ୍ଛୁକ ।

ଏସବୁ ଶୁଣିବା ପରେ ଶାରଦାଙ୍କର ଏଇ ଉପେକ୍ଷିତ ନିବନ୍ଧର ମୁଦ୍ରଣ ଲାଗି ଆବଶ୍ୟକ ସାହାଯ୍ୟ ଓ ସହଯୋଗ କରିବାଲାଗି ମୁଁ ସ୍ୱତଃ ସମ୍ମତ ହୋଇଥିଲି । ଏହା କିନ୍ତୁ ବାସ୍ତବିକ ଏତେ ସହଜ ବିଷୟ ନଥିଲା । ଆଠଶହ ପୃଷ୍ଠାରୁ ଅଧିକ ଏଇ ନିବନ୍ଧକୁ ସଂକ୍ଷିପ୍ତ କରିବାକୁ ହେବ—ମୂଳ ଆଲୋଚ୍ୟ ବିଷୟକୁ ଅକ୍ଷୁଣ୍ଣ ରଖି । ଏଥିପାଇଁ ବେଶ୍ କିଛି ପରିଶ୍ରମ କରିବାକୁ ପଡ଼ିଲା । ମୂଳ ଲେଖାରେ ଥିବା ଉଦ୍ଧୃତିର ଅନେକ ଅଂଶକୁ ବାଦ ଦିଆଗଲା; ଅନାବଶ୍ୟକ ପ୍ରସଙ୍ଗ ଓ ପୁନରୁକ୍ତିକୁ ବାଦ ଦେବାକୁ ପଡ଼ିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଏହି ପ୍ରକ୍ରିୟା ଆହୁରି ମାର୍ଜିତ ଓ ଶୋଭନୀୟ ହୋଇପାରିଥିଲା

ମୋର ଆଉ ଜଣେ ବନ୍ଧୁଙ୍କ ସହାୟତାରୁ । ସେ ହେଉଛନ୍ତି ଶ୍ରୀଯୁକ୍ତ ନିମାଇଁ ଚରଣ ପାଣି, ଅବସର ପ୍ରାପ୍ତ ଇଂଜିନିୟର ଓ ଭୁବନେଶ୍ୱର ଫରେଷ୍ଟ ପାର୍କରେ ଥିବା ପ୍ରିୟଦର୍ଶୀ ପ୍ରକାଶନୀ ସଂସ୍ଥାର ସଞ୍ଚାଳକ । ପାଣ୍ଡୁଲିପିର ପରିମାର୍ଜନା ପରେ ନିବନ୍ଧଟି ତାହାଙ୍କ ମୁଦ୍ରଣାଳୟରେ ମୁଦ୍ରିତ ହେବାର ବ୍ୟବସ୍ଥା ହୋଇଥିଲା । ଏଥିପାଇଁ ଜିତେନ୍ଦ୍ରବାବୁ ଏହି ଅନୁଷ୍ଠାନ ସହ ହେଲେ ସମ୍ପୃକ୍ତ । ଗୁଣଗ୍ରାହୀ, ସୁବିବେଚକ ଓ ମୂଲ୍ୟବୋଧସମ୍ପନ୍ନ କଥାଶିଳ୍ପୀ ପାଣିବାବୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନିବନ୍ଧର ମୁଦ୍ରଣ କାର୍ଯ୍ୟ ଯଥାଶୀଘ୍ର ଶେଷ ହେଲା । ଅତୀବ ଆନନ୍ଦର ବିଷୟ, ଏକ ମୂଲ୍ୟବାନ ଉପାଦେୟ ଆଲୋଚନା ଗ୍ରନ୍ଥ ଲୋକ ଲୋଚନକୁ ଆସିବା ସମ୍ଭବ ହେଲା ।

ବୈଷ୍ଣବ କବି କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମାଙ୍କ ବିଷୟରେ କିଛି ଲେଖିବା ଅନାବଶ୍ୟକ ବୋଧ କରୁଛି । ମଧ୍ୟଯୁଗର ଗୌଡ଼ୀୟ ବୈଷ୍ଣବ ମତବାଦୀ କବି ଭାବେ ସେ ଅଗ୍ରଗଣ୍ୟ ଓ ବିଶିଷ୍ଟତମ । ବିଳମ୍ବରେ ହେଉ ପଛକେ ନିଷ୍ଠାପର ସାଧନା ଅବଶ୍ୟ ସୁଫଳଦାୟୀ । ଶାରଦା କୁମାରୀଙ୍କ ଅନୁଶୀଳନ ଓ ଜିତେନ୍ଦ୍ର କିଶୋରଙ୍କ ତ୍ୟାଗର ସୁଫଳ ଦ୍ୱାରା ଏତେ ବର୍ଷ ପରେ ସାହିତ୍ୟାନୁରାଗୀ ଓଡ଼ିଆ ପାଠକ ଓ ସୁଧୀ ସମାଜ ନିଶ୍ଚିତ ଭାବେ ଉପକୃତ ହେବେ, ଏହାହିଁ ମୋର ଆଶା ଓ ବିଶ୍ୱାସ ।

**ଜାନକୀ ବଲ୍ଲଭ ମହାନ୍ତି**
ଅବସର ପ୍ରାପ୍ତ ପ୍ରଫେସର

'ଗୀତିକା'
ଜୟଦେବ ନଗର, ଭୁବନେଶ୍ୱର
୨୭ । ୭ । ୧୯୯୭

# ସୂଚୀପତ୍ର

## ପ୍ରଥମ ପରିଚ୍ଛେଦ

### କବି ସଦାନନ୍ଦଙ୍କ ଜୀବନ ବୃତ୍ତାନ୍ତ ଓ ବ୍ୟକ୍ତିତ୍ୱ



## ଦ୍ୱିତୀୟ ପରିଚ୍ଛେଦ

### ସଦାନନ୍ଦଙ୍କ ଗ୍ରନ୍ଥରାଜି

# ତୃତୀୟ ପରିଚ୍ଛେଦ

## ସଦାନନ୍ଦଙ୍କ କୃତରେ କାବ୍ୟ-ବସ୍ତୁ ଓ ବୈଶିଷ୍ଟ୍ୟ

| ଅନୁଚ୍ଛେଦ | ପୃଷ୍ଠା |
| --- | --- |


## ଚତୁର୍ଥ ପରିଚ୍ଛେଦ

### କବିଙ୍କର ଧର୍ମମତ



## ପଞ୍ଚମ ପରିଚ୍ଛେଦ

### କବିଙ୍କ ସାହିତ୍ୟ କୃତିର ତୁଳନାତ୍ମକ ମୂଲ୍ୟାୟନ





# ପ୍ରାକ୍‌କଥନ

କବି ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା'ଙ୍କ ଜୀବନୀ ଓ ସାହିତ୍ୟ ଆଲୋଚନା କରିବା ସମୟରେ ମନରେ ବିସ୍ମୟ ଜାତହୁଏ ଯେ ଆଜିପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ବଳିଷ୍ଠ ସତ୍ତ୍ୱମଧ୍ୟରେ କବିସୂର୍ଯ୍ୟବ୍ରହ୍ମା ପଦବୀଧାରୀ ଏହି ବ୍ୟକ୍ତି ସାହିତ୍ୟ ଜଗତରେ ସାଧାରଣ ଆଧିପତ୍ୟ ସୁଦ୍ଧା ବିସ୍ତାର କରିନାହାଁନ୍ତି । କବି ପରିଚିତିର ଘନାନ୍ଧକାର ମଧ୍ୟରେ ଏହାଙ୍କର ପ୍ରତିଭା ଲୁକ୍‌କାୟିତ । ଏହି କବିଙ୍କୁ ସେହି ଅନ୍ଧକାରରୁ ମୁକ୍ତକରି ସ୍ପଷ୍ଟ ଆଲୋକକୁ ଆଣିବା ପାଇଁ ମୋତେ ଗୋଟିଏ ଗବେଷଣାତ୍ମକ ପ୍ରବନ୍ଧ ଲେଖିବାପାଇଁ ପ୍ରଥମେ ମୋର ସହକର୍ମୀ ଅଧ୍ୟାପକ ବନ୍ଧୁଗଣ ପରାମର୍ଶ ଦେଇଥିଲେ । ସେହି ଦିନଠାରୁ ଏହି ସନ୍ଦର୍ଭରେ ବିଭିନ୍ନ ତଥ୍ୟ ଓ ନୂତନ ଦିଗନ୍ତର ସନ୍ଧାନରେ ମୁଁ ଅଗ୍ରସର ହେଲି । ଏହି ବିଷୟରେ ଉଚ୍ଚତର ଅଧ୍ୟୟନ ଓ ଗବେଷଣା ନିମନ୍ତେ ମୋର ନିର୍ଦ୍ଦେଶକ ଥିଲେ, ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ପ୍ରାକ୍ତନ ମୁଖ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ପ୍ରହ୍ଲାଦ ପ୍ରଧାନ । ତାହାଙ୍କଠାରୁ ଆଶାତୀତ ଉତ୍ସାହପୂର୍ଣ୍ଣ ନିର୍ଦ୍ଦେଶ ପାଇ ବିଧିବଦ୍ଧ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲି । ଏହି କାର୍ଯ୍ୟରେ ସର୍ବାପେକ୍ଷା ଅଧିକ ନିଷ୍ଠା ଓ ଆନ୍ତରିକତା ସହ ମୋର ସ୍ୱାମୀ ଶ୍ରୀଯୁକ୍ତ କଟଚନ୍ଦ୍ର କିଶୋର ମହାନ୍ତି ଏମ୍.ଏ ସାହାଯ୍ୟ କରିଥିଲେ । ସେ ସେତେବେଳେ କଟକ ଜିଲ୍ଲାସ୍ଥ ସାଲେପୁରଠାରେ ସବ୍‌ରେଜିଷ୍ଟ୍ରାର ଭାବେ ଅବସ୍ଥାପିତ ଥିଲେ । ତେଣୁ ତାଙ୍କ ସହାୟତାରେ କବିଙ୍କ ପ୍ରଧାନ କର୍ମକ୍ଷେତ୍ର ସାଲେପୁର ଥାନା ଅନ୍ତର୍ଗତ ଅସୁରେଶ୍ୱର ଗ୍ରାମ ନିକଟସ୍ଥ 'ପାକ୍ଷିତପଡ଼ା' ମଠ ଯାହା କବିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ଓ ଏବେ ମଧ୍ୟ ଏହା 'କବିସୂର୍ଯ୍ୟ ମଠ' ନାମରେ ପରିଚିତ ପରିଦର୍ଶନ କରିବାର ସୁଯୋଗ ମିଳିଥିଲା । ଏହା ବ୍ୟତୀତ ସେ କବିଙ୍କର ଅନ୍ୟାନ୍ୟ କର୍ମକ୍ଷେତ୍ର ଓ ସାଧନାସ୍ଥଳ ଯଥା—ଗୁନ୍ଦୋଳ, ଦାମୋଦରପୁର ଶାସନ, ବାଲିଆ, ମଧୁପୁର, ନୟାଗଡ଼ସ୍ଥ କବିଙ୍କ ଜନ୍ମସ୍ଥାନ ଭିକାରୀପଡ଼ା ଶାସନ ଓ ଦଶପଲ୍ଲା ଏବଂ ଗଞ୍ଜାମ ଜିଲ୍ଲାସ୍ଥ ଶିକଟି ପ୍ରଭୃତି

ସ୍ଥାନରୁ ନୂତନ ତଥ୍ୟ ସଂଗ୍ରହ ନିମନ୍ତେ ସହଯୋଗ କରିଥିଲେ । ଏହା ଛଡ଼ା ସେ ମୋ ସହିତ କଟକ ଓ ପୁରୀ ଜିଲ୍ଲାରେ ଥିବା ବିଭିନ୍ନ ବୈଷ୍ଣବ ମଠ ପ୍ରଭୃତି ପରିଦର୍ଶନ କରି ତଥ୍ୟ ସଂଗ୍ରହ କରିଛନ୍ତି ଓ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ପାଣ୍ଡୁଲିପି ନକଲ କରିବାରେ ସମସ୍ତ ଓ ଶ୍ରମଦାନ କରିଅଛନ୍ତି ।

ସର୍ବୋପରି ଆଜୀବନ ସାହିତ୍ୟ ସାଧକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ସ୍ୱରଚିତ ଓଡ଼ିଆ ସାହିତ୍ୟର ଇତିହାସ ୩ୟ ଭାଗରେ ଉକ୍ତ ସନ୍ଥକବିଙ୍କ ଉପରେ ଯେଉଁ ସନ୍ଦର୍ଭଟି ଲେଖିଅଛନ୍ତି ଏ ଦିଗରେ ପ୍ରାଥମିକ ପ୍ରଚେଷ୍ଟା ହିସାବରେ ତାହା ଯଥେଷ୍ଟ ଉପାଦେୟ । ଏହାଙ୍କ ସହିତ ବ୍ୟକ୍ତିଗତ ସାକ୍ଷାତ୍‌କାରରୁ ମୁଁ ଅଶେଷ ସାହାଯ୍ୟ ଓ ପ୍ରେରଣା ଲାଭ କରିଅଛି । ପଣ୍ଡିତ ମହାଶୟ ଓ ତାଙ୍କ କନିଷ୍ଠଭ୍ରାତା ଶ୍ରୀ ରାଧାକୃଷ୍ଣ ଦାଶ ସଦାନନ୍ଦଙ୍କ ରଚିତ କେତେକ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ ଅଧ୍ୟୟନ କରିବାର ସୁଯୋଗ ଦେଇ ଗବେଷଣା କରିବାର ଯଥାର୍ଥ ମାର୍ଗ ମୋ ନିକଟରେ ଉନ୍ମୋଚନ କରିଦେଇ ଅଛନ୍ତି । ତାଙ୍କ ପରି ଜଣେ ପ୍ରବୀଣ ସାହିତ୍ୟିକଙ୍କ ଦୃଷ୍ଟିକୋଣ ସହିତ ପରିଚିତ ହୋଇନଥିଲେ ଏପରି ଏକ ଦୁରୂହ କର୍ମରେ ସଫଳ କାମ ହେବା ସମ୍ଭବପର ହୋଇନଥାନ୍ତା । ଏଠାରେ ତାଙ୍କୁ ଭକ୍ତିପୂତ ପ୍ରଣତି ସହ ତାହାଙ୍କ ଦୀର୍ଘ ଜୀବନ କାମନା କରୁଅଛି ।

ପରବର୍ତ୍ତୀ ସମୟରେ ଭୁବନେଶ୍ୱରସ୍ଥ ଓଡ଼ିଶା ମ୍ୟୁଜିୟମ୍, ଉତ୍କଳ ବାଣୀବିହାରସ୍ଥ ପୋଥିବିଭାଗ, ଓଡ଼ିଶା ସାହିତ୍ୟ ଏକାଡେମୀ ପୁସ୍ତକାଗାର, ଟ୍ରାଇବାଲ୍ ରିସର୍ଚ୍ଚ ବ୍ୟୁରୋ, କଟକ ସହରସ୍ଥ ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥାଗାର, ରାସବିହାରୀ ମଠସ୍ଥ ଗ୍ରନ୍ଥାଗାର ତଥା ପ୍ରାଚୀନ ତାଳପତ୍ର ପୋଥି, ସଚ୍ଚିଦାନନ୍ଦ ମଠସ୍ଥ ଗ୍ରନ୍ଥାଗାର, ପୁରୀସ୍ଥିତ ରାଧାକାନ୍ତ ମଠ, ଗଙ୍ଗାମାତା ମଠ, ରଘୁନନ୍ଦନ ପାଠାଗାର ଓ ନେମାଳ ମଠସ୍ଥ ଅଚ୍ୟୁତାନନ୍ଦଙ୍କ ଗାଦି ପାଠାଗାର ପ୍ରଭୃତି ସ୍ଥାନରୁ କବିଙ୍କ ବିଷୟରେ ବହୁ ତଥ୍ୟ ସଂଗ୍ରହ କରିବାରେ ସକ୍ଷମ ହୋଇଥିଲି । ସେଥିପାଇଁ ଏହି ଅନୁଷ୍ଠାନମାନଙ୍କର କର୍ମକର୍ତ୍ତା ତଥା ମଠାଧୀଶମାନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି । ବିଶେଷ ଭାବରେ କଟକସ୍ଥ ରାସବିହାରୀ ମଠ ମହନ୍ତ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦାସ ଓ ନେମାଳ ଅଚ୍ୟୁତାନନ୍ଦ ମଠର ମହନ୍ତ ସ୍ୱର୍ଗତ ପଦ୍ମଚରଣ ଦାସଙ୍କ ଶୁଭେଚ୍ଛା ଓ ସହାନୁଭୂତି ପାଇଁ ମୁଁ ଚିର କୃତଜ୍ଞ ।

ଏହା ବ୍ୟତୀତ ସଦାନନ୍ଦଙ୍କ ଅପ୍ରକାଶିତ ତାଳପତ୍ର ପୋଥି ସଂଗ୍ରହ କରିବାରେ ଦୁଷ୍ପ୍ରାପ୍ୟ ପୁସ୍ତକ ସଂଗ୍ରହ କରିବାରେ ଓ ଉପାଦେୟ ଚିତ୍ର ପ୍ରସ୍ତୁତ କରଣରେ ଯେଉଁ ସଜ୍ଜନଗଣ ମୋତେ ଅକୁଣ୍ଠିତ ସାହାଯ୍ୟ କରିଛନ୍ତି ଓ ସମୟୋପଯୋଗୀ ସାହାଯ୍ୟ ଓ ସହଯୋଗ କରିଛନ୍ତି ସେମାନେ ହେଉଛନ୍ତି ପୂଜ୍ୟ ଅଧ୍ୟାପକ ଡ଼ଃ. ନୀଳକଣ୍ଠ ଗୋବିନ୍ଦ ଶାସ୍ତ୍ରୀ, ଓଡ଼ିଶା ମ୍ୟୁଜିୟମର ମୁଖ୍ୟ ଶ୍ରୀଯୁକ୍ତ ନୀଳମଣି ମିଶ୍ର ଓ ତାଙ୍କ ସହକାରୀ ଶ୍ରୀ କରୁଣାକର ବରୋଇ, ଓ ବନ୍ଧୁ ଅଧ୍ୟାପକ ଡ଼ଃ. ଆଶୁତୋଷ ପଟ୍ଟନାୟକ, ବାଣୀବିହାର ପୋଥିବିଭାଗ କର୍ମଚାରୀ ଶ୍ରୀନିବାସ ରଥ, ଶ୍ରୀ ବନମାଳୀ ବରିହା, ଅଧ୍ୟାପକ ବନ୍ଧୁ ଶ୍ରୀ ଅନନ୍ତ ଚରଣ ଦାସ, ଶ୍ରୀ ଫକୀର ଚରଣ ଦାସ, ଶ୍ରୀ ଫକୀର ଚରଣ ସିଂହ, ଶ୍ରୀ ଭୋଳାନାଥ ରାଉତ, ଶ୍ରୀ ପ୍ରମୋଦ କୁମାର ରାୟ, ଶ୍ରୀ ନାରାୟଣ ଚୌଧୁରୀ, ଶ୍ରୀ ପରଶୁରାମ ଖଣ୍ଡୁଆଳ ଓ ପ୍ରିୟ ଶ୍ରୀ ସୁରେଶ ଚନ୍ଦ୍ର ଜେନା । ଏମାନଙ୍କ ସହାନୁଭୂତି ଓ ଶୁଭେଚ୍ଛା ପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

ଏହା ବ୍ୟତୀତ ପଣ୍ଡିତ ଶ୍ରୀ ଦୟାନିଧି ଶର୍ମା ଓ ପଣ୍ଡିତ ଶ୍ରୀ ଶଙ୍କର ପଣ୍ଡା ଓ ଶ୍ରୀ ପଦ୍ମଚରଣ ନାୟକଙ୍କ ଶୁଭେଚ୍ଛା ନିମନ୍ତେ ମୁଁ କୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ ପରମ ପୂଜ୍ୟ ଗୁରୁଦେବ ଶ୍ରୀଯୁକ୍ତ ବ୍ରହ୍ମଚାରୀ ହରିନାରାୟଣ ଦାଶଙ୍କ ଆଧ୍ୟାତ୍ମିକ ପ୍ରେରଣା ଓ ଆଶୀର୍ବାଦ ସାଂସାରିକ ଜୀବନର ନାନା ଜଞ୍ଜାଳପୂର୍ଣ୍ଣ ବାତାବରଣ ମଧ୍ୟରେ ଅଗ୍ରସର ହେବାପାଇଁ ଯଥେଷ୍ଟ ସାହସ ଓ ଶକ୍ତି ପ୍ରଦାନ କରିଥିବା ହେତୁ ମୁଁ ତାଙ୍କ ନିକଟରେ ଚିର ଋଣୀ ।

ବିନୀତା

**ଶ୍ରୀମତୀ ଶାରଦା କୁମାରୀ ମହାନ୍ତି**

# ଉପକ୍ରମଣିକା

ପ୍ରଥମ ପରିଚ୍ଛେଦରେ ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମାଙ୍କର ବିଭିନ୍ନ ନାମକରଣ, ପିତାମାତା; ବଂଶପରମ୍ପରା, ଜନ୍ମଭୂମି, କୁଳଦେବତା, ବର୍ଣ୍ଣ, ଗୋତ୍ର, ସାକ୍ଷୀ, ପଦବୀ, ସମୟ, ଦୀକ୍ଷା, ଗୁରୁ ପରମ୍ପରା, ଶିଷ୍ୟାବଳୀ, ଆଶ୍ରୟଦାତା, ଭ୍ରମଣ, ବିଭିନ୍ନ ମଠସ୍ଥାପନ, ବେଶଭୂଷା, ପ୍ରକୃତି, ସ୍ୱଭାବ, ଶିକ୍ଷା, ଓ ଅଧ୍ୟୟନ ପ୍ରଭୃତିର ପରିଚୟ ପ୍ରଦାନ କରାଯାଇଅଛି ।

ଦ୍ୱିତୀୟ ପରିଚ୍ଛେଦରେ କବିଙ୍କ ଗ୍ରନ୍ଥରାଜିର ନାମ, ସଂଖ୍ୟା, ଆଧାର, ଶ୍ରେଣୀ ବିଭାଗ, ପ୍ରାମାଣିକତା, ସମ୍ପାଦିତ, ଅସମ୍ପାଦିତ ଗ୍ରନ୍ଥ ଓ ପୋଥିର ବିବରଣ ଲିପିବଦ୍ଧ ହୋଇଛି ।

ତୃତୀୟ ପରିଚ୍ଛେଦରେ ସଦାନନ୍ଦଙ୍କ କାବ୍ୟରେ ଖଣ୍ଡପୁରୀୟ ବୈଭବ, ମାଧୁର୍ଯ୍ୟ ବା ଉଜ୍ଜ୍ୱଳରସ, କାମଶାସ୍ତ୍ର, ଶୃଙ୍ଗାରାଦି ରସ; ରୂପ, ଗୁଣ, ଶୋଭା, ସମାଜ ପ୍ରକୃତି ଚିତ୍ରଣ, ସଙ୍ଗୀତ, ଜ୍ୟୋତିଷ, ବୈଦ୍ୟ, ଗୋଶାସ୍ତ୍ର, ଅଶ୍ୱଶାସ୍ତ୍ର, ମନସ୍ତତ୍ତ୍ୱ, ଭୂଗୋଳ, ନୀତି, ହିତୋପଦେଶ, ଚିତ୍ରକଳା, ଭାଷା, ରାଗରାଗିଣୀ, ଅଳଙ୍କାର, ଶବ୍ଦ ଯୋଜନା ଆଦିର ସାମୂହିକ ସମୀକ୍ଷା କରାଯାଇଅଛି ।

ଚତୁର୍ଥ ପରିଚ୍ଛେଦରେ କବିଙ୍କ ଧାର୍ମିକ ଜୀବନର ବିକାଶଧାରା, ଉପାସ୍ୟଦେବତା, ଉପାସନା ପଦ୍ଧତି, ନାମ, ଧ୍ୟାନ ଓ ତତ୍ତ୍ୱ ଆଦି ବିଷୟରେ ତାତ୍ତ୍ୱିକ ଆଲୋଚନା କରାଯାଇଅଛି ।

ପଞ୍ଚମ ପରିଚ୍ଛେଦରେ କବି ସଦାନନ୍ଦଙ୍କର ପୂର୍ବ, ପର ଓ ସମସାମୟିକ ବିଭିନ୍ନ ଭାରତୀୟ କବିମାନଙ୍କ ସହ ସମ୍ପର୍କ ଓ ସାମଞ୍ଜସ୍ୟ ଦର୍ଶାଇ ଦିଆହେବା ସଙ୍ଗେ ସଙ୍ଗେ କବି କିପରି ସ୍ୱକୀୟ ବୈଶିଷ୍ଟ୍ୟ ପ୍ରତିପାଦନ କରିପାରିଛନ୍ତି ତାହାର ଆଲୋଚନା ହୋଇଅଛି ।

ଆଲୋଚ୍ୟ ନିବନ୍ଧରେ କବି ସଦାନନ୍ଦଙ୍କର ବିଭିନ୍ନ ଗ୍ରନ୍ଥରାଜିର ଶତାଧିକ ଉଦ୍ଧୃତି ଗୃହୀତ ହୋଇଅଛି । କବିଙ୍କର କୌଣସି ଗ୍ରନ୍ଥର ସମ୍ପାଦନା ବା ପାଠର ଶୁଦ୍ଧାଶୁଦ୍ଧ ବିଚାର ଏ ପରିପ୍ରେକ୍ଷୀରେ ସମ୍ଭବ ନୁହେଁ । ଏଣୁ ପ୍ରାପ୍ତ ପାଣ୍ଡୁଲିପି ଓ ପ୍ରକାଶିତ ପୁସ୍ତକଗୁଡ଼ିକରୁ ଉଦ୍ଧୃତିଗୁଡ଼ିକ ଅବିକଳ ଉଦ୍ଧାର କରିହୋଇଅଛି ।



(ପାର୍ଶ୍ୱ)
ଶ୍ରୀ ନାମଚିନ୍ତାମଣି ବହିର
ପ୍ରଚ୍ଛଦପଟ (୧୯୦୭ ମସିହା)






(ପାର୍ଶ୍ୱ)
ରସିକେଶ୍ୱର ରସେଶ୍ୱରୀ
ଯୁଗଳ ବିଗ୍ରହ

(ପାର୍ଶ୍ୱ)
ପ୍ରେମତରଙ୍ଗିଣୀ ବହିର ପ୍ରଚ୍ଛଦପଟ
(୧୯୩୧ ମସିହା)






(ପାର୍ଶ୍ୱ)
ନଷ୍ଟା ନଳମଣି ବହିର ପ୍ରଚ୍ଛଦପଟ
(୧୯୨୦ ମସିହା)



(ପାର୍ଶ୍ୱ) କବଙ୍କ ବ୍ୟବହୃତ କାଷ୍ଠ ପାଦୁକା, ଘଣ୍ଟିଛପଡ଼ା ମଠ



× ଚିହ୍ନିତ କବଙ୍କ ସମାଧି ପୀଠ, ଘଣ୍ଟିଛପଡ଼ା ମଠ

(ପାର୍ଶ୍ୱ)
କଦ୍ବସୂର୍ଯ୍ୟ ମଠ
ଘଷିଢପଡ଼ା, ଅସୁରେଶ୍ୱର





(ପାର୍ଶ୍ୱ)
ଶ୍ରୀ ଗୌର ଗଦାଧର ବଗ୍ରହ
ଘଷିଢପଡ଼ା ମଠ

# ପ୍ରଥମ ପରିଚ୍ଛେଦ

# କବି ସଦାନନ୍ଦଙ୍କ ଜୀବନ ବୃତ୍ତାନ୍ତ ଓ ବ୍ୟକ୍ତିତ୍ୱ

## କବିଙ୍କ ଜୀବନ ବୃତ୍ତାନ୍ତ

ଖୋର୍ଦ୍ଧାର ଗଜପତି ମହାରାଜା ବୀରକେଶରୀ ଦେବଙ୍କ ଦୀର୍ଘ ରାଜତ୍ୱ କାଳ ମଧ୍ୟରେ (୧୭୩୬-୧୭୯୩) ବହୁ କବି ଓ ପଣ୍ଡିତଙ୍କର ଆବିର୍ଭାବ ହୋଇଥିଲି (୧)। ଯଦିଓ ମହାରାଜାଙ୍କ ରାଜନୈତିକ ଜୀବନ ନାନା ସଙ୍କଟପୂର୍ଣ୍ଣ ଅସ୍ଥିରତା ମଧ୍ୟରେ ଗତ କରିଥିଲି, ତଥାପି ସେ ଧର୍ମ, ସଂସ୍କୃତି ତଥା ସାହିତ୍ୟର ଅଭିବୃଦ୍ଧି ଲାଗି କବି ଓ ପଣ୍ଡିତମାନଙ୍କୁ ନାନା ଉପାଧି ଦ୍ୱାରା ଭୂଷିତ କରି ଉତ୍ସାହିତ କରିଥିଲେ। ଏହାଦ୍ୱାରା ତତ୍କାଳୀନ ବହୁ କବି ଉଚ୍ଚକୋଟୀର ଭକ୍ତିମୂଳକ ତଥା ରସୋତ୍ତୀର୍ଣ୍ଣ କାବ୍ୟ କବିତା ରଚନା କରି କାବ୍ୟଭଣ୍ଡାରକୁ ସମୃଦ୍ଧିଶାଳୀ କରିବାରେ ସକ୍ଷମ ହୋଇପାରିଥିଲେ। ଉକ୍ତ କବିମାନଙ୍କ ମଧ୍ୟରେ କବି ଦୟାଳୁ ଦାସ, କବି କୃପାସିନ୍ଧୁ ଦାସ, କବି ବନମାଳି ଦାସ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, କବି ପୀତାମ୍ବର ଦାସ, କବି ରାମ ଦାସ ଓ କବି ଅଭିମନ୍ୟୁ ପ୍ରଭୃତିଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ (୨)। ଆଲୋଚ୍ୟ କବି ସଦାନନ୍ଦ ଉକ୍ତ କବିମାନଙ୍କ ତୁଳନାରେ ସର୍ବାଧିକ ଗ୍ରନ୍ଥ ରଚନା କରିଥିବାର ପ୍ରମାଣ ମିଳେ (୩)। କିନ୍ତୁ ପରିତାପର ବିଷୟ ଏହି କବିଙ୍କର ଅନେକ କାବ୍ୟ ଅପ୍ରକାଶିତ ଥିବାରୁ ଏହାଙ୍କର କବି ପ୍ରତିଭା ଜନସାଧାରଣଙ୍କ ଦୃଷ୍ଟିକୁ ଆସିପାରିନାହିଁ। ତେଣୁ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥାଦିର ସାହାଯ୍ୟରେ ତାଙ୍କର ଆବିର୍ଭାବ ଓ ତିରୋଭାବ ଏବଂ ବଂଶାନୁଚରିତ ନିର୍ଭୁଲ ଭାବରେ ଜାଣିବା ମଧ୍ୟ ଏକ କଷ୍ଟସାଧ୍ୟ ବ୍ୟାପାର।

---

(୧), (୨) ଓ (୩)- ଖୁର୍ଦ୍ଧା ଇତିହାସ ୧୫୬୮-୧୮୧୭ ପୃ : ୨୦୭, ୨୦୮-୨୧୨ ଓ ପୃ ୨୧୧ (କେଦାରନାଥ ମହାପାତ୍ର)।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତାଙ୍କର ଭବିଷ୍ୟତ ଦାୟାଦଙ୍କ ପାଇଁ କେତେକ ପରିଚୟ ଛାଡ଼ିଯାଇଥିଲେ ମଧ୍ୟ ଅନ୍ୟ ବହୁତ ବ୍ୟକ୍ତିଗତ ବିବରଣୀ ଅଦ୍ୟାବଧି ଲୋକଲୋଚନକୁ ଆସିପାରିନାହିଁ । ତେଣୁ ଏ ସବୁର ଆବଶ୍ୟକତା ପୂରଣ ପାଇଁ କିମ୍ବଦନ୍ତୀ, ଜନଶ୍ରୁତି ଏବଂ ପ୍ରାସଙ୍ଗିକ କବି ବଚନର ସହାୟତା ନେବାକୁ ପଡ଼ୁଅଛି । କବି ତାହାଙ୍କର ଏକାଧିକ କୃତିରେ ନିଜର ଏବଂ ଆଶ୍ରୟଦାତାଙ୍କର ବଂଶାନୁଚରିତ ଦେଇଅଛନ୍ତି । ସେଥିସହିତ ନିଜ ଗ୍ରନ୍ଥ ରଚନାର ବିଶେଷ କାରଣ ମଧ୍ୟ ଉଲ୍ଲେଖ କରି ଯାଇଛନ୍ତି ।

ସଦାନନ୍ଦଙ୍କ ରଚିତ ବହୁ ଗ୍ରନ୍ଥ ମଧ୍ୟରୁ କେବଳ ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ଲଳିତ ଲୋଚନା, ପ୍ରେମ କଳ୍ପଲତା, ପ୍ରେମ ତରଙ୍ଗିଣୀ, ନିଷ୍ଠା ମାଳମଣି, ଚଉତରଙ୍ଗିଣୀ, ବ୍ରଜଲୀଳାମୃତ ସମୁଦ୍ର, ବିଶ୍ୱମ୍ଭର ବିହାର ଓ ମୋହନଲତା ପ୍ରଭୃତି କତିପୟ କାବ୍ୟ ପାଠକଲେ କବିଙ୍କ ଉଚ୍ଚକୋଟିର କବି ପ୍ରତିଭାର ପରିଚୟ ମିଳିଥାଏ । କବି ସଂସ୍କୃତ, ବଙ୍ଗଳା, ହିନ୍ଦୀ, ତଥା ଓଡ଼ିଆ ଭାଷାରେ ଜ୍ଞାନଲାଭ କରିଥିବା ସଙ୍ଗେ ସଙ୍ଗେ ବୈଷ୍ଣବ ଧର୍ମ ଉପରେ ଯେଉଁ ତାତ୍ତ୍ୱିକ ଆଲୋକପାତ କରିଅଛନ୍ତି, ତାହା ସମସାମୟିକ ତଥା ପରବର୍ତ୍ତୀ କବିମାନଙ୍କର କାବ୍ୟରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ କବିଙ୍କର ବହୁରଚନା ମଧ୍ୟରୁ କେତେକ ଗ୍ରନ୍ଥକୁ ଛାଡ଼ିଦେଲେ ଅନ୍ୟ ସମସ୍ତ କାବ୍ୟଗ୍ରନ୍ଥ ଏ ପର୍ଯ୍ୟନ୍ତ ଅପ୍ରକାଶିତ । କବି ସ୍ୱକୃତ 'ମୋହନଲତା' କାବ୍ୟର ଶେଷ ଛାନ୍ଦରେ ସ୍ୱକୃତ ୨୩ ଖଣ୍ଡ ଗ୍ରନ୍ଥର ନାମୋଲ୍ଲେଖ କରିଅଛନ୍ତି (୪) । ଏତଦ୍‌ଭିନ୍ନ କବିଙ୍କ ନାମରେ କେତେକ ଭଜନ, ଜଣାଣ, ଚଉତିଶା ପ୍ରଭୃତି ମିଳିଅଛି (୫) ।

ବଙ୍ଗୀୟ ସମାଲୋଚକ ସ୍ୱର୍ଗତଃ ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମ୍‌ଦାର ଓ ଯାଜପୁରର ତତ୍‌କାଳୀନ ଡେପୁଟି କଲେକ୍ଟର ସ୍ୱର୍ଗତ ମନମୋହନ ଚକ୍ରବର୍ତ୍ତୀ କବିଙ୍କ ବିଷୟରେ ଯଦି ସଂକ୍ଷିପ୍ତ ପରିଚୟ ଦେଇ-ନଥାନ୍ତେ ତେବେ ଉକ୍ତ କବି ପ୍ରତିଭା ଚିରଦିନ ଲାଗି ଅନ୍ଧକାର ଗର୍ଭରେ

(୪) 'ମୋହନ ଲତା'-ତାଳପତ୍ର ପୋଥି, ବାଣୀବିହାର ପୋଥି ବିଭାଗରୁ ପ୍ରାପ୍ତ ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ନିକଟରୁ ଅନ୍ୟ ଏକ ପାଣ୍ଡୁଲିପିରୁ ଉଦ୍ଧୃତ । (ଛାନ୍ଦ-୪୬)

(୫) ଓଡ଼ିଶା ମ୍ୟୁଜିୟମସ୍ଥ ପୋଥି ବିଭାଗ ଓ ବାଣୀବିହାରସ୍ଥ ଗ୍ରନ୍ଥାଗାରରୁ ସଂଗୃହୀତ ।

ବିଲୀନ ହୋଇଥାନ୍ତା (୬)। ଉକ୍ତର ଆର୍ତ୍ତବଲ୍ଲଭ ମହାନ୍ତି, ବିଜୟଚନ୍ଦ୍ର ମଜୁମଦାରଙ୍କୁ ପ୍ରଶଂସା କରି ଲେଖିଛନ୍ତି; "ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ତାହାଙ୍କର ସୁଗଭୀର ପାଣ୍ଡିତ୍ୟ ଓ ଉତ୍କଳ ସାହିତ୍ୟରେ ବିଶାଳଦର୍ଶିତାର ନିଦର୍ଶନ ସ୍ୱରୂପ କହିଅଛନ୍ତି ଯେ କବିସୂର୍ଯ୍ୟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସରଣୀରେ ପଥିକ ନଥିଲେ ଓ ଯଦି ଅଭିମନ୍ୟୁ ପ୍ରେମକଳ୍ପଲତାରେ ତାଙ୍କୁ ନିଜର କାବ୍ୟଗୁରୁ ରୂପେ ଉଲ୍ଲେଖ କରିନଥାନ୍ତେ, ତାହେଲେ ତାଙ୍କନାମ ଅଧୁନା ବିସ୍ମୃତିର ଅନ୍ଧ ତମସାରେ ବିଲୀନ ହୋଇଯାଇଥା'ନ୍ତା (୭)।" ପୁନଶ୍ଚ ଉକ୍ତର ମହାନ୍ତିଙ୍କ ମତରେ "ସାଧୁଚରଣ ଦାସଙ୍କ ଭଳି ଗୁରୁ ମିଳି ନଥିଲେ ଅଭିମନ୍ୟୁ କବି ରୂପରେ ଏତେ ପ୍ରସିଦ୍ଧି ଲାଭକରି ପାରି ନଥାନ୍ତେ। ସେ ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ। ଅଭିମନ୍ୟୁ ସାଧୁଚରଣଙ୍କୁ ବଳି-ପଡ଼ିଥିଲେ । ଏହା କହିବା ବାହୁଲ୍ୟ ମାତ୍ର (୮)।" ସ୍ୱର୍ଗତ ମନମୋହନ ଚକ୍ରବର୍ତ୍ତୀ "Language & Literature of Orissa" ପୁସ୍ତକର "SADANANDA KAVISURYA BRAMHA" ଶିରୋନାମାରେ କବିଙ୍କ ବିଷୟରେ ପ୍ରଥମ ସୂଚନା ଦେଇଥିଲେ । ଏହାପରେ କେତେକ ଓଡ଼ିଆ ସମାଲୋଚକ ସ୍ୱସ୍ୱ ପ୍ରବନ୍ଧାଦିରେ କବିଙ୍କ ବିଷୟରେ ସମ୍ୟକ୍ ଆଲୋକପାତ କରିଅଛନ୍ତି । ତନ୍ମଧ୍ୟରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ବହୁ ଶ୍ରମ ସ୍ୱୀକାର କରି କବିଙ୍କର ଜୀବନୀ ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ କବିଙ୍କ କେତେକ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ ଉପରେ ଆଲୋଚନା କରିଅଛନ୍ତି (୯)। ଏହାଙ୍କ ବ୍ୟତୀତ ଅନ୍ୟ କୌଣସି ସମାଲୋଚକ ଏତେ ବିଶଦ ଭାବରେ କବିଙ୍କର ପାଣ୍ଡିତ୍ୟ ତଥା ପ୍ରତିଭାର ଆଲୋଚନା କରିନାହାଁନ୍ତି । ପଣ୍ଡିତ ବିନାୟକ ମିଶ୍ରଙ୍କ ରଚିତ ଓଡ଼ିଆ ସାହିତ୍ୟର ଇତିହାସ, କେଦାରନାଥ ମହାପାତ୍ରଙ୍କ ରଚିତ 'ଖୁରୁଧା ଇତିହାସ' ଓ ଉକ୍ତର ହରେକୃଷ୍ଣ ମହତାବଙ୍କ ରଚିତ

---

(୬) M. M. Chakravarty. "Language & Literature of Orissa" No. 4, 1898. (Page-371)

(୭) ଓ (୮) ବିଦଗ୍ଧ ଚିନ୍ତାମଣି ମୁଖବନ୍ଧ- ଦ୍ୱିତୀୟ ସଂସ୍କରଣ, ୧ମ ଖଣ୍ଡ । ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ସଙ୍କଳିତ ।

(୯) ଓଡ଼ିଆ ସାହିତ୍ୟର ଇତିହାସ – ୩ୟ ଭାଗ (ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ) ।

'ଓଡ଼ିଶା ଇତିହାସ' (୧୦) ରେ କବିଙ୍କ ବିଷୟରେ ଯେତିକ ସୂଚନା ଦିଆ-ଯାଇଅଛି, ତାହା କବିଙ୍କ ସମ୍ପୂର୍ଣ୍ଣ ପରିଚୟ ଦେବାରେ ଯଥେଷ୍ଟ ନୁହେଁ ।

କବି ସଦାନନ୍ଦ ସ୍ୱକୃତ ଗ୍ରନ୍ଥ (୧) ଲଳିତ ଲୋଚନ । (୨) ଯୁଗଳ ରସାମୃତ ଲହରୀ (୩) ଯୁଗଳ ରସାମୃତ ଭଙ୍ଗୀ (୪) ପ୍ରେମ ତରଙ୍ଗିଣୀ (୫) ପ୍ରେମ କଳ୍ପଲତା (୬) ଚଉତିଶା ଚନ୍ଦ୍ରୋଦୟ (୭) ନାମ ଚିନ୍ତାମଣି (୮) ନିଷ୍ଠା ମାଳମଣି (୯) ତତ୍ତ୍ୱତରଙ୍ଗିଣୀ (୧୦) ପାଠ ରତ୍ନାବଳୀ (୧୧) ବ୍ରଜଲୀଳାମୃତ ସମୁଦ୍ର (୧୨) ବିଶ୍ୱମ୍ଭର ବିହାର (୧୩) ପ୍ରୀତି ଚିନ୍ତାମଣି (୧୪) ସଙ୍ଗୀତ ସଦାନନ୍ଦ (୧୫) ମୋହନଲତା (୧୬) ଶ୍ୱୈର ଚିନ୍ତାମଣି (୧୭) ବାଳ ବୋଧିନୀ (୧୮) ସ୍ମର ଦୀପିକା ବା ସ୍ମରଣୀୟ (୧୯) ପ୍ରେମଚିନ୍ତାମଣି ଚଉତିଶା (୨୦) ଭଗବଦ୍ ଗୀତାନୁବାଦ ଓ ବିଭିନ୍ନ ଜଣାଣ ଓ ଚଉତିଶାଦିରେ ସମାପ୍ତି ସୂଚକ ଅଂଶରେ ନିଜ ପରିଚୟ ପ୍ରଦାନ କରିଅଛନ୍ତି । ଏଣୁ ଏହି ଗ୍ରନ୍ଥାଦିର ଅଂଶ ବିଶେଷ ମାଧ୍ୟମରେ କବିଙ୍କ ପରିଚୟ ଲାଭ କରିବାର ପ୍ରଚେଷ୍ଟା ସମୟୋପଯୋଗୀ । ଉକ୍ତ ଗ୍ରନ୍ଥମାନଙ୍କ ମଧ୍ୟରୁ ଯୁଗଳ ରସାମୃତ ଲହରୀ, ନାମଚିନ୍ତାମଣି, ପ୍ରେମତରଙ୍ଗିଣୀ, ନିଷ୍ଠା ମାଳମଣି, ପ୍ରେମକଳ୍ପଲତା ଓ ଶ୍ୱୈରଚିନ୍ତାମଣି ପ୍ରଭୃତି କେତୋଟି ଛାଡ଼ିଦେଲେ ଅନ୍ୟସମସ୍ତ ତାଳପତ୍ର ପୋଥି ମଧ୍ୟରେ ସୀମାବଦ୍ଧ ।

## କବିଙ୍କର ବିଭିନ୍ନ ନାମ

ଗଜପତି ବୀରକେଶରୀ ଦେବଙ୍କ ପ୍ରଦତ୍ତ କବିସୂର୍ଯ୍ୟ ବ୍ରହ୍ମା ଉପାଧି ଲାଭ ପୂର୍ବରୁ କବି ସଦାନନ୍ଦଙ୍କର ଅନେକ ନାମଥିବା ତାଙ୍କ କାବ୍ୟକୃତି ମାନଙ୍କରୁ ଜଣାଯାଏ "ମାତୃ ପିତୃ ବଇଷ୍ଣବ ରାଜଦତ୍ତ ବହୁନାମ ମୋର ଅଛି ।" (ପ୍ରେମ ତରଙ୍ଗିଣୀ ୩୬ ଛାନ୍ଦ ୩୮ ପଦ)

ସଦାନନ୍ଦ ପିତା ମାତାଙ୍କର ବହୁ ବାଞ୍ଛିତ ଏକମାତ୍ର ପୁତ୍ର ଥିଲେ । ସଦାନନ୍ଦଙ୍କ ମାତା ପୁତ୍ର ପ୍ରାପ୍ତି ପାଇଁ ନିରତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଧ୍ୟାନ କରୁଥିବା ଓ ମାତାମହ ଶିବ ପୂଜା କରୁଥିବା ବିଷୟ କବି ସ୍ୱକୃତ 'ପାଠରତ୍ନାବଳୀ'ରେ ଉଲ୍ଲେଖ କରିଅଛନ୍ତି ।

---

(୧୦) 'ଓଡ଼ିଶା ଇତିହାସ' ୨ୟ ଖଣ୍ଡ (ଡଃ ହରେକୃଷ୍ଣ ମହତାବ) ବୀରକେଶରୀ ଦେବ- '୧୭୩୬-୧୭୯୩'

"ଭବାନୀ ମାତା ନାମ ହୋଇ । ଶ୍ରୀଜଗନ୍ନାଥ ପଦ ଧ୍ୟାୟୀ ॥୯୧
ସେ ମୋର ମାତାମହ ପୁଣ । ସକଳ ଗୁଣେ ଅପ୍ରମାଣ ॥୯୨
ନାମ ମୁକୁନ୍ଦ ବ୍ରହ୍ମଚାରୀ । ନିରନ୍ତେ ଶିବ ସେବା କରି ॥୯୩
ମୋହର ଜାତ ହେବା ଅର୍ଥେ । ଏହାଟି ଜାଣନ୍ତି ସମସ୍ତେ ॥୯୪
ମୋ ନାମ ଦେଲେ ସଦାଶିବ । ଏ ଘଟନାକେତେ ଅନୁଭବ ॥୯୫

(ପାଠରତ୍ନାବଳୀ-୪ର୍ଥ ଅଧ୍ୟାୟ ପଦ ୯୧ ରୁ ୯୫)

ମାତାମହଙ୍କର ଶିବପୂଜା କବିଙ୍କର ଜନ୍ମର କାରଣ ହୋଇଥିବା ଯୋଗୁଁ କବିଙ୍କ ନାମ ପ୍ରଥମରେ 'ସଦାଶିବ' ରଖାଯାଇଥିଲା ଏବଂ ଏହା ଥିଲା କବିଙ୍କ ପିତୃମାତୃ ଦତ୍ତ ନାମ ।

"ନବଲକ୍ଷ ରୁଦ୍ରଗଣ ଖଟନ୍ତି ଯା ପଦ ।
ଯାହାଙ୍କ ପ୍ରସାଦେ ପାଇ ସକଳ ସମ୍ପଦ ॥ ୭୭ ॥
ତାହାଙ୍କ ଆଜ୍ଞାରେ ମୋର ଜନମ ମହୀରେ ।
ସଦାଶିବ ନାମ ଲଭି ମାତା ପିତାଙ୍କରେ" ॥ ୭୮ ॥

( ଲଳିତଲୋଚନ-୧ମ ଛାନ୍ଦ )

କିନ୍ତୁ ମାତା ଶ୍ରଦ୍ଧାରେ 'ସଦାନନ୍ଦ' ବୋଲି ଡାକୁଥିଲେ—
"ମାତା ସ୍ନେହେ ଡାକେ ସଦାନନ୍ଦ । ତାଙ୍କ ଦାସ ଏଣୁ ସଦାନନ୍ଦ" ॥ ୩୦ ॥

(ବ୍ରଜଲୀଳାମୃତ ସମୁଦ୍ର-୫୩ ଛାନ୍ଦ)

ମାତାଙ୍କର ଏହି ନାମଟି କବିଙ୍କର ଅଧିକ ପ୍ରିୟ ଥିବାରୁ କବି ନିଜର କାବ୍ୟକୃତମାନଙ୍କରେ ବହୁଳ ଭାବରେ ଏହି 'ସଦାନନ୍ଦ' ନାମର ଉଲ୍ଲେଖ କରିଅଛନ୍ତି । ସଦାଶିବ ଓ ସଦାନନ୍ଦ ବ୍ୟତୀତ କବିଙ୍କର ଅନ୍ୟ କେତେକ ନାମ ଥିବାର ଜଣାଯାଏ । କବିଙ୍କର ଗ୍ରାମବାସୀ ଦତ୍ତନାମ 'ଉଦ୍ଧବ' ବୈଷ୍ଣବ ଦତ୍ତ ନାମ 'ବ୍ରଜମୋହନ' ଓ 'ବ୍ରହ୍ମାନନ୍ଦ' ଏବଂ ଗୁରୁଦତ୍ତ ନାମ 'ସାଧୁଚରଣ' ଥିବା କବିଙ୍କ ସ୍ୱରଚିତ କାବ୍ୟରୁ ଜଣାଯାଏ—

"ସଦାଶିବ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାନନ୍ଦ
ଉଦ୍ଧବ ବ୍ରଜମୋହନ ଦାସ ଏ ମୋର ନାମ ବିଶେଷ,
ଏ ସବୁଠାରୁ ସରସ ଯାହା ବୋଲାଇ ସାଧୁଚରଣ ଦାସ ହେ ॥ ୧୫ ॥

(ଯୁଗଳ ରସାମୃତ ଭଉଁରୀ-୩୭)

ଗ୍ରାମବାସୀ ଦତ୍ତନାମ 'ଉଦ୍ଧବ' ଓ ବୈଷ୍ଣବ ଦତ୍ତ 'ବ୍ରଜମୋହନ' ଓ 'ବ୍ରହ୍ମାନନ୍ଦ'କୁ କବି ନିଜ ରଚିତ କାବ୍ୟମାନଙ୍କରେ କ୍ୱଚିତ ବ୍ୟବହାର କରିଅଛନ୍ତି ।

"ଗ୍ରାମଦତ୍ତ ନାମ ଯେ ଉଦ୍ଧବ । ମାତୃପିତା ବୋଲେ ସଦାଶିବ ।
ବଇଷ୍ଣବ କରୁଣା ଚିତ୍ତରେ । ବ୍ରଜମୋହନ ଦାସ ବୋଇଲେ ॥"

(ବ୍ରଜଲୀଳାମୃତ ସମୁଦ୍ର-ଛାନ୍ଦ ୫୩)

"ସୁବଳ ମଧୁମଙ୍ଗଳ ପ୍ରିୟସଖା ଯାର,
ସେହି ପ୍ରାଣେଶ୍ୱର ବ୍ରଜମୋହନ ଦାସର ॥" (ମୋହନଲତା-ଛାନ୍ଦ ୧୨)

ଏହା ବ୍ୟତୀତ କବି ଗୁରୁଦତ୍ତ ନାମ 'ସାଧୁଚରଣ' ଓ ମାତୃଦତ୍ତ ନାମ 'ସଦାନନ୍ଦ'କୁ ବହୁଳ ଭାବରେ ବ୍ୟବହାର କରିଛନ୍ତି । ତେଣୁ ମନେହୁଏ ଏହି ଦୁଇନାମ କବିଙ୍କର ଅତି ପ୍ରିୟ ଥିଲା—

"ଶ୍ରୀଗୁରୁଙ୍କ ଆଜ୍ଞା ସାଧୁଚରଣ ବୋଲଣ,
ଏହିନାମ ଅଟେ ମୋର ଜୀବର କାରଣ ।" ॥ ୨୫ ॥

(ଲଳିତଲୋଚନା-ଛାନ୍ଦ ୧)

କବି ବୈଷ୍ଣବ ଥିବା ଯୋଗୁଁ 'ସାଧୁଚରଣ ଦାସ' ନାମରେ ସଂସାରରେ ଖ୍ୟାତିଲାଭ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ—

"ସାଧୁଚରଣ ନାମ ମୋର ସଂସାରେ ହେଉ ପ୍ରକାଶ ।
ଭଣେ କବିସୂର୍ଯ୍ୟ ବ୍ରହ୍ମା ମୋ ଶରଣ କେବଳ ରାଧାବିଳାସ" ॥ ୪୪ ॥

(ଯୁଗଳରସାମୃତ ଲହରୀ-ଛାନ୍ଦ ୧୦)

"ବ୍ରଜଲୀଳାମୃତ ସମୁଦ୍ର" କାବ୍ୟରେ କବି ନିଜର ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରିଅଛନ୍ତି ।

"ଭବ ଗ୍ରୀଷ୍ମତାପ ହୋଏ ନାଶ । କହେ ଏ ସାଧୁଚରଣ ଦାସ ॥
ଗୁରୁଦତ୍ତ ନାମ ମୋର ଏହି । ମୋତେ ଚିହ୍ନାଇବା ପାଇଁ କହି ॥
ଗ୍ରାମଦତ୍ତ ନାମ ଯେ ଉଦ୍ଧବ । ମାତୃପିତା ବୋଲେ ସଦାଶିବ ॥
ମାତା ସ୍ନେହେ ଡାକେ ସଦାନନ୍ଦ । ତାଙ୍କ ଦାସ ଏଣୁ ସଦାନନ୍ଦ ॥

ବଇଷ୍ଣବ କରୁଣା ଶରଣରେ । ବ୍ରଜମୋହନ ଦାସ ବୋଇଲେ ॥
ଵୀରକେଶରୀ ଦେବଙ୍କ ଦତ୍ତ । କବିସୂର୍ଯ୍ୟ ବ୍ରହ୍ମା ଖ୍ୟାତ ॥
ଏଣୁ ଏ ନାମେ ଭଣିତା ମୋର । ଦାସପଦ ରଖିଛୁ ଭଣ୍ଡାର ॥
(ବ୍ରଜଲୀଳାମୃତ ସମୁଦ୍ର, ଛାନ୍ଦ-୫୩)

## ପିତା ମାତା ଓ ବଂଶ ପରମ୍ପରା

ସଦାନନ୍ଦ ନିଜର ଗୃହୀଜୀବନ ସମ୍ବନ୍ଧରେ ବିଶେଷ କିଛି ଉଲ୍ଲେଖ କରିନାହାଁନ୍ତି । ମଧ୍ୟଯୁଗୀୟ କବିମାନେ ନିଜର ବଂଶ ପରମ୍ପରା ବିଶେଷ ଭାବେ ଉଲ୍ଲେଖ କରିବା ଦେଖାଯାଏ ନାହିଁ । ସମ୍ଭବତଃ ସାହିତ୍ୟିକ ଜୀବନରେ ଏ ଭଳି ଗୌଣ ଗୌଣ ବିଷୟ ଉଲ୍ଲେଖ କରିବା ସେମାନେ ଉଚିତ ମନେକରୁ ନଥିଲେ । କବିଙ୍କ କେତେଗୋଟି କାବ୍ୟରେ ବଂଶ ପରମ୍ପରାର କ୍ଷୀଣତମ ଆଭାସ ମିଳିଥାଏ । କବିଙ୍କ ପିତାଙ୍କ ନାମ 'ପରମାନନ୍ଦ' ମାତ୍ର 'ପୁରିଓତା' ନାମରେ ସେ ବିଶେଷ ଭାବରେ ପରିଚିତ । ପିତାମହଙ୍କ ନାମ ଥିଲା 'ପୀତାମ୍ବର' । ସ୍ଥଳ ବିଶେଷରେ କବି ପିତାଙ୍କ ନାମ ସହିତ ଏହି 'ବ୍ରହ୍ମା' ସାଙ୍ଗିଆ ବ୍ୟବହାର କରିଅଛନ୍ତି ।

"ଶ୍ରୀ ପୀତାମ୍ବର ପିତାମହ । ମୋର ଅଟନ୍ତି ପିତାମହ ॥
ପରମାନନ୍ଦ ବ୍ରହ୍ମାଙ୍କର । ମୁହିଁ ଯେ ଅଟଇ କୁମର" ॥
(ଶ୍ରୀମଦ୍ ଭାଗବତ ଗୀତାନୁବାଦ)

'ବାପ ପୁରିଓତା ପିତା ତତ୍ପ୍ରିତା × × ×
ବସ ସ୍ୱର୍ଗେ କବିସୂର୍ଯ୍ୟ କଥିତା ।
ବୈଷ୍ଣବ ଚରଣେ ମୁଁ ଆଶ୍ରିତା ' ॥ ୨୨ ॥ (ବିଶ୍ୱମ୍ଭର ବିହାର-ଛାନ୍ଦ ୨୭)

ଏଥିରୁ ପ୍ରମାଣିତ ହୁଏ ଯେ ସଦାନନ୍ଦ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିଜର ପିତାମାତା ବଂଶ ପରମ୍ପରା ସମ୍ପର୍କରେ କ୍ୱଚିତ ଗ୍ରନ୍ଥ ମାନଙ୍କରେ ସୂଚନା ଦେଇ ଅଛନ୍ତି । "ସଦାନନ୍ଦଙ୍କ ମାତାଙ୍କ ନାମ ଥିଲା 'ଭବାନୀ ଦେବୀ' ଓ ମାତାମହଙ୍କ ନାମଥିଲା ମୁକୁନ୍ଦ ବ୍ରହ୍ମସ୍ୱାମୀ । କବି 'ପାଟରତ୍ନାବଳୀ' ଗ୍ରନ୍ଥର ୪ର୍ଥ ଅଧ୍ୟାୟରେ ଏହି ସବୁର ଏକ ସଂକ୍ଷିପ୍ତ ସୂଚନା ଦେଇଅଛନ୍ତି ।

"କହୁଅଛୁ ଯେମନ୍ତେ ଜାଣିମ । ପୁରଓତା ମୋ ପିତାନାମ ॥
ଭବାନୀ ମାତା ନାମ ହୋଇ । ଶ୍ରୀଜଗନ୍ନାଥ ପଦ ଧ୍ୟାୟି ॥
ଯେ ମୋର ମାତାମହ ପୁଣ । ସକଳ ଗୁଣେ ଅପ୍ରମାଣ ॥
ନାମ ମୁକୁନ୍ଦ ବ୍ରହ୍ମଶ୍ବରୀ । ନିରତେ ଶିବ ସେବା କରି ॥
ମୋହର ଜାତ ହେବା ଅର୍ଥେ । ଏହାଟି ଜାଣନ୍ତି ସମସ୍ତେ" ॥

(ପାଠରତ୍ନାବଳୀ, ୪ର୍ଥ ଅଧ୍ୟାୟ)

କବି ନିଜର ମାତା ଏବଂ ମାତାମହଙ୍କ ସମ୍ପର୍କରେ ଏହା ବ୍ୟତୀତ ଅନ୍ୟ କୁତ୍ରାପି କିଛି ଉଲ୍ଲେଖ କରିନାହାଁନ୍ତି । କବି ନିଜେ ସଂସାରୀ ଥିବା କଥା ଅଥବା ପତ୍ନୀ କନ୍ୟା ପୁତ୍ର ପ୍ରଭୃତି ବିଷୟରେ କୌଣସିଠାରେ ଉଲ୍ଲେଖ କରିନାହାଁନ୍ତି । ବରଂ ଆଜୀବନ ବୈରାଗୀ ଏବଂ ବ୍ରହ୍ମଶ୍ବରୀ ଥିବା ତାଙ୍କ କାବ୍ୟରୁ ପ୍ରମାଣିତ ହୁଏ ।

"ଏ ଚତୁର୍ଥ ଛାନ୍ଦ ଆସି ହୋଇଲା ସମ୍ପୂର୍ଣ୍ଣ ।
କବିସୂର୍ଯ୍ୟ ବ୍ରହ୍ମା ହେ ସୁଜନେ ବୈରାଗୀ ଆଦ୍ୟବର୍ଣ୍ଣ" ॥ ୫୭

(ପ୍ରେମ ତରଙ୍ଗିଣୀ, ୪ର୍ଥ ଛାନ୍ଦ)

"ବୟଃକାଳଶ ଛାନ୍ଦେ ଏ ମଧୁଶଯ୍ୟା ଶୃଙ୍ଗାର ରସ ।
ସର୍ବଥା ନୋହିବ ଇତର ମାନଙ୍କର ବିଶ୍ୱାସ ॥
ଅନୁମାନ କରି କହିଲି ଏବେ ମୁଁ ବଇରାଗୀ ।
ସଦାନନ୍ଦ କବି ରବିର ଗତି କୃଷ୍ଣାନୁରାଗୀ" ॥

(ମୋହନଲତା-୪୨ ଛାନ୍ଦ)

'ବ୍ରହ୍ମଚର୍ଯ୍ୟ ଆଶ୍ରମତ ମୋହର ଦଇବେ" ॥

(ଯୁଗଳ ରସାମୃତ ଲହରୀ-୫୭ ଛାନ୍ଦ)

"ବୈରାଗୀ ସଦାଶିବର ହେ ଗଉର ।
ପୁଣି ବନ୍ଦେ ପଦଦ୍ୱୟ ପ୍ରତିକାର" ॥ ୨୨

(ବିଶ୍ୱମ୍ଭର ବିହାର- ଛାନ୍ଦ ୯)

# ଜନ୍ମଭୂମି, କୁଳଦେବତା, ବର୍ଣ୍ଣ, ଗୋତ୍ର, ସାଜ୍ଞା ଓ ପଦବୀ

ସଦାନନ୍ଦ ପୁରୀ ଜିଲ୍ଲା ଅନ୍ତର୍ଗତ ନୟାଗଡ଼ ସବ୍‌ଡିଭିଜନସ୍ଥ ପ୍ରସିଦ୍ଧ ଶ୍ରୀ ଲଡ଼ୁକେଶ୍ୱର ମହାଦେବଙ୍କ ପବିତ୍ର ପୀଠସ୍ଥଳୀ ଶରଣକୂଳ ଗ୍ରାମର ଭିକାରିପଡ଼ା ଶାସନରେ ଶାକ୍ତକୁଳରେ ଜନ୍ମଗ୍ରହଣ କରିଥିଲେ । କବି କାଶ୍ୟପଗୋତ୍ରୀ ସାମବେଦୀ ବ୍ରାହ୍ମଣ ଥିଲେ । ସେ ସମୟରେ ନୟାଗଡ଼ ଜିଲ୍ଲା ମାନ୍ଧାତାଙ୍କ ଶାସନାଧୀନ ଥିଲା । ଏହି ରାଜ୍ୟର ଅଧିପ ନିଜ ରାଜ୍ୟର ସ୍ୱତନ୍ତ୍ରତା ରକ୍ଷାଲାଗି ମୋଗଲ ଶାସକଙ୍କ ସହ ଅବିରତ ସଂଗ୍ରାମ ଚଳାଇଥିଲେ ଓ ଅନ୍ୟାନ୍ୟ ସୀମାନ୍ତ ରାଜ୍ୟର ରାଜନ୍ୟବର୍ଗଙ୍କର ରାଜ୍ୟ ଆକ୍ରମଣକୁ ପ୍ରତିହତ କରି ସୁଖରେ ରାଜ୍ୟ ଶାସନ କରୁଥିଲେ । କବି ଉକ୍ତ ମାନ୍ଧାତାଙ୍କର ସାହଚର୍ଯ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ଇତିହାସ ପ୍ରସିଦ୍ଧ 'ଲଡ଼ୁକେଶ୍ୱର' ମହାଦେବଙ୍କର ଅନନ୍ୟ ଭକ୍ତ ଥିବାରୁ ସମସ୍ତ କାର୍ଯ୍ୟ ନିର୍ବିଘ୍ନରେ ସମାପ୍ତ କରିପାରୁଥିଲେ । କବି ନିଜ ଜନ୍ମଭୂମି, କୁଳଦେବତା, ବର୍ଣ୍ଣ, ଗୋତ୍ର ଓ ସାଜ୍ଞା ଆଦିର ପରିଚୟ ବହୁବାର ନିଜର ବିଭିନ୍ନ ଗ୍ରନ୍ଥ ସମୂହର ଅଂଶ ବିଶେଷରେ ପ୍ରଦାନ କରିଅଛନ୍ତି ।

"ନବଦୁର୍ଗ ବୋଲି ଖ୍ୟାତ କନ୍ଦର ନିକଟେ ।
ସେ ରାଜ୍ୟେ ନରେଶ ପଦ ମାନ୍ଧାତା ଅଟେ ॥ ୭୧
ତହିଁରେ ଶରଣକୂଳ ବୋଲି ସେ ନଗର ।
ଯହିଁ ବିଜେ ଲଡ଼ୁକେଶ ନାମେ ମହେଶ୍ୱର ॥ ୭୨
ନବଲକ୍ଷ ରୁଦ୍ରଗଣ ଖଟନ୍ତି ଯା ପଦ ।
ଯାହାଙ୍କ ପ୍ରସାଦେ ପାଇ ସକଳ ସମ୍ପଦ ॥ ୭୩
ତାହାଙ୍କ ଆଜ୍ଞାରେ ମୋର ଜନମ ମହୀରେ ।
ସଦାଶିବ ନାମ ଲଭି ମାତା ପିତାଙ୍କରେ ॥ ୭୪

(ଲଳିତ ଲୋଚନା- ୧ମ ଛାନ୍ଦ)

ପୁନଶ୍ଚ ଯୁଗଳ ରସାମୃତ ଲହରୀର ୫୭ ଛାନ୍ଦରେ—

"ନୂଆଗଡ଼ ରାଜ୍ୟେ ପୂର୍ବାଶ୍ରମ ସେ ମୋହର"

ଏହିବା ଦ୍ୱାରା କବି, ନୂଆଗଡ଼ ବା ନୟାଗଡ଼ ରାଜ୍ୟର ଅଧିବାସୀ ବୋଲି ସ୍ପଷ୍ଟ ପ୍ରମାଣିତ ହେଉଅଛି । ପୁନଶ୍ଚ—

"ନୂଆଗଡ଼େ ଶରଣକୁଳ ସ୍ଥଳର, ଭକାଗ୍ରିପଡ଼ା ଶାସନ, ।
ସୁବ୍ରାହ୍ମଣ ସଙ୍ଗ ସମାବେଦ ଅଧ୍ୟାପକ, କୁଳେ ମୋର ଜନ୍ମ" ॥ ୨୦

(ପ୍ରେମ ତରଙ୍ଗିଣୀ-୨୪ ଛାନ୍ଦ)

ଏଣୁ ନିଃସନ୍ଦେହ ଭାବେ କବି ଉକ୍ତ ଶରଣକୁଳସ୍ଥ ଭକାଗ୍ରିପଡ଼ା ଶାସନର ଅଧିବାସୀ । ବର୍ତ୍ତମାନ ମଧ୍ୟ ଉକ୍ତ ଭକାଗ୍ରିପଡ଼ା ଶାସନ ବୋଲି ଏକ ଗ୍ରାମ ଅଛି । କବି ଅନ୍ୟତ୍ର ମଧ୍ୟ ଏହାର ଉଲ୍ଲେଖ କରି ଅଛନ୍ତି ।

"ନୂଆଗଡ଼ନାମ ରାଜ୍ୟରେ । ଭକାଗ୍ରୀପଡ଼ା ଶାସନରେ ।
ମୋହର ଅଟଇ ନିବାସ । କହେ ସାଧୁଚରଣ ଦାସ" ॥

(ପାଠରତ୍ନାବଳୀ-୪ର୍ଥ ଅଧ୍ୟାୟ)

କବି ନିଜର କୁଳଦେବତାଙ୍କ ସମ୍ପର୍କରେ ଉଲ୍ଲେଖକରି କହିଛନ୍ତି—

"ନାମ ଶ୍ରୀ ଲଡୁକେଶ୍ୱର କୁଳଇଷ୍ଟ ମୋର" (ମୋହନଲତା-୩୧ ଛାନ୍ଦ)

ଶରଣକୁଳସ୍ଥ ପ୍ରସିଦ୍ଧ ଶ୍ରୀ ଲଡୁକେଶ୍ୱର ମହାଦେବ କବିଙ୍କର କୁଳ ଦେବତା ଥିଲେ । ବୈଷ୍ଣବ ହେବାପରେ ମଧ୍ୟ ଉକ୍ତ ଦେବତାଙ୍କ ପ୍ରତି କବିଙ୍କର ଭକ୍ତି ଏବଂ ବିଶ୍ୱାସ ହ୍ରାସ ପାଇନଥିଲା ।

ବର୍ଣ୍ଣ ଓ ଗୋତ୍ର ସମ୍ବନ୍ଧରେ କବି ଉଲ୍ଲେଖ କରିଅଛନ୍ତି,—

"ସୁବ୍ରାହ୍ମଣ ସଙ୍ଗ ସମାବେଦ ଅଧ୍ୟାପକ କୁଳେ ମୋର ଜନ୍ମ" ॥ (୨୦)
"ପୂର୍ବାଶ୍ରମେ ସାମବେଦୀ ବ୍ରାହ୍ମଣ" ଓ "ଶାକ୍ତକୁଳେ ଜନ୍ମ" (୩୭)

(ପ୍ରେମତରଙ୍ଗିଣୀ ଛାନ୍ଦ-୨୦,୩୩ ଓ ୩୭)

"ଭଣେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, । ପୂର୍ବାଶ୍ରମେ ସମବେଦୀ ବ୍ରାହ୍ମଣ" ॥

(ଯୁଗଳରସାମୃତ ଲହରୀ)

"ସାମବେଦ ଅନ୍ତର୍ଗତ ଦ୍ୱିଜକୁଳେ ଜାତ" । (ମୋହନଲତା ଛାନ୍ଦ-୩୧)
"କାଶ୍ୟପ କୁଳରେ ମୋହର, ଥିଲା ଉଦୟ ଆମ୍ଭର" ।

(ଭାଗବତଗୀତାନୁବାଦ)

"ବିଶେଷେ ବ୍ରାହ୍ମଣ ଆମି ବୈଷ୍ଣବ ଉତ୍ତମ" । (କୀର୍ତ୍ତନ ଉଜ୍ଜଳ)

ଏଥିରୁ ସ୍ପଷ୍ଟ ଅନୁମିତ ହୁଏଯେ କବି ପୂର୍ବାଶ୍ରମରେ 'କାଶ୍ୟପ ଗୋତ୍ରୀୟ ସାମବେଦୀ' ବ୍ରାହ୍ମଣ ଥିଲେ ଓ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲାପରେ ବୈଷ୍ଣବ ଧର୍ମ ନିୟମାନୁସାରେ 'ଅଚ୍ୟୁତ' ଗୋତ୍ରର ଅନ୍ତର୍ଭୁକ୍ତ ହେଲେ ।

'ଶ୍ରୀଲ ଅଚ୍ୟୁତ ଗୋସାଇଁ । ପାଦେ ସଦା ପ୍ରଣମଇ ।
ଆଶ୍ରମେ ମୁଁ ବ୍ରହ୍ମଚାରୀ । ଅଚ୍ୟୁତ ଗୋତ୍ର ଏଣେ' ॥

(ଯୁଗଳରସାମୃତ ଭଞ୍ଜୀ ଛାନ୍ଦ-୪୮)

ପୂର୍ବାଶ୍ରମରେ କବିଙ୍କ ସାଙ୍ଗି 'ଓତା' ଥିଲା । ଏହି ସାଙ୍ଗିକୁ କବି କ୍ୱଚିତ ବ୍ୟବହାର କରିଅଛନ୍ତି— 'ଭଣନ୍ତି ଏ ପୁରୀ ଓତା ବାଳକରି'

(ପ୍ରେମକଳ୍ପଲତା ଛାନ୍ଦ-୧୫)

କେବଳ ପିତାଙ୍କ ନାମୋଲ୍ଲେଖ ସମୟରେ ଅଳ୍ପ କେତେଥର ପିତାଙ୍କ ନାମସହ ଉକ୍ତ ସାଙ୍ଗି ଜଡ଼ିତ ଥିବାର ଦେଖାଯାଏ । ବୈଷ୍ଣବ ହେବା ପରେ କବି 'ସଦାଶିବ ଓତା' ନାମ ପରିବର୍ତ୍ତନ କରି 'ସାଧୁଚରଣ ଦାସ' ନାମ ଗ୍ରହଣ କରିଥିଲେ ଓ ଏହାହିଁ ହେଲା କବିଙ୍କ ଗୁରୁଦତ୍ତ ନାମ । ଦୀକ୍ଷା-ଗ୍ରହଣ ଦୃଷ୍ଟିରୁ ଅନୁଚିତ ହେଲେ ମଧ୍ୟ କବି ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲାପରେ ମଧ୍ୟ ପୂର୍ବାଶ୍ରମର ବର୍ଣ୍ଣ ଅର୍ଥାତ ବ୍ରାହ୍ମଣ ଜାତିକୁ ଭୁଲି ନଥିଲେ—

'ଶୁଣି ବାଳୀ ଠାରି ଲୁଆଁଇ ଶିର । ଭଣେ କବିସୂର୍ଯ୍ୟ ବ୍ରହ୍ମା ଭୂସୁର' ।

(ମୋହନଲତା ଛାନ୍ଦ-୩୯)

ପୁନଶ୍ଚ କବି ଲେଖିଛନ୍ତି—

'କୁଳୀବାଣ - କୁଳକଞ୍ଜ - ଆଦିତ୍ୟ
କୋପୀ କବିସୂର୍ଯ୍ୟ ବ୍ରହ୍ମା କଥିତ" ।

(ଯୁଗଳରସାମୃତ ଲହରୀ)

ଏହିପରି ସ୍ଥଳ ବିଶେଷରେ କବି ନିଜକୁ ବ୍ରାହ୍ମଣ କୁଳର ଆଦିତ୍ୟ ବୋଲି ବର୍ଣ୍ଣନା କରିଅଛନ୍ତି ।

## ପଦବୀ

ଖୋର୍ଦ୍ଧା ରାଜା ଗଜପତି ବୀରକେଶରୀ ଦେବ କବି ସଦାନନ୍ଦଙ୍କୁ 'କବିସୂର୍ଯ୍ୟ ବ୍ରହ୍ମା' ପଦବୀରେ ଭୂଷିତ କରିଥିବା କବି ସ୍ୱରଚିତ ଗ୍ରନ୍ଥମାନଙ୍କରେ

ଉଲ୍ଲେଖ କରିଅଛନ୍ତି । ଡକ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀ କେଦାରନାଥ ମହାପାତ୍ରଙ୍କ ମତରେ ଗଜପତି ବୀର କେଶରୀ ଦେବ ଖ୍ରୀ:ଅ ୧୭୩୬ ଠାରୁ ୧୭୯୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ (୧୧) । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତରେ କବିଙ୍କର ପୁରୀ ଅବସ୍ଥାନ ସମୟରେ ବୀରକେଶରୀ ଦେବଙ୍କ ଠାରୁ ଏହି ଉପାଧି ପ୍ରାପ୍ତ ହୋଇଥିଲେ (୧୨) । ପଣ୍ଡିତଙ୍କର ଏହି ଉକ୍ତି ଯଥାର୍ଥ ବୋଲି ମନେ ହୁଏ । କାରଣ ତତ୍‌କାଳୀନ ଖୋର୍ଦ୍ଧାର ଗଜପତି ମହାରାଜା ପୁରୀର ଠାକୁର ରାଜା ନାମରେ ପରିଚିତ ଥିଲେ । ଗଜପତିଙ୍କ ସହିତ କବି କଭଳି ପରିଚୟ ଲାଭ କରିଥିଲେ ଓ 'କବିସୂର୍ଯ୍ୟ ବ୍ରହ୍ମା' ଉପାଧି ପ୍ରାପ୍ତ ହେଲେ ତାହାର ସୂଚନା ମିଳୁଥିଲେ ମଧ୍ୟ ସମ୍ପୂର୍ଣ୍ଣ ବିବରଣୀ ଏବେ ମଧ୍ୟ କୁହେଳିକାରେ ନିହିତ । କବି ବୈଷ୍ଣବଧର୍ମରେ ଦୀକ୍ଷିତ ହେବା ପରେ ମଧ୍ୟ ଏହି ଉପାଧି ବ୍ୟବହାର କରିଥିବାରୁ ସ୍ୱ ବୈଷ୍ଣବ ସମ୍ପ୍ରଦାୟର କେତେକେ ଏହା ପସନ୍ଦ କରୁନଥିଲେ ।

'କବିସୂର୍ଯ୍ୟ ବ୍ରହ୍ମାପଦ । ଏ ଆସି ମୋତେ ହେଲା ବିପଦ ହେ,
ବିବେକ ଜନେ ! ବୈଷ୍ଣବ କଲେ ବାଦ ହେ' ।
(ଯୁଗଳ ରସାମୃତ ଲହରୀ-୭ମ ଛାନ୍ଦ)

ମାତ୍ର ଏ ପଦବୀ ପ୍ରତି ତାଙ୍କର କୌଣସି ଲାଳସା ନଥିବା ବିଷୟ ସେ ଉଲ୍ଲେଖ କରିଅଛନ୍ତି—

'ମୋ କବିସୂର୍ଯ୍ୟ ବ୍ରହ୍ମାପଦ ଶୁଣି ଯାଉଛି ଲୋକେ, ଶବଦ ।
ମୁଁ ଯେ ବୋଲଇ କେହି ନ ବଦ, ନିନ୍ଦେ ପିଶୁନ ହେ' ।
(ଯୁଗଳ ରସାମୃତ ଲହରୀ-୪ର୍ଥ ଛାନ୍ଦ)

---

(୧୧) (କ) ଓଡ଼ିଶା ଇତିହାସ- ୨ୟ ଖଣ୍ଡ, ଡଃ ହରେକୃଷ୍ଣ ମହତାବ
ପ୍ରସଙ୍ଗ- 'ଗଜପତି ବୀରକେଶରୀ ଦେବ' ୧୭୩୬-୧୭୯୩
(ଖ) 'ଗଜପତି ବୀରକେଶରୀ ଦେବ' ଶ୍ରୀ କେଦାରନାଥ ମହାପାତ୍ର
'ଝଙ୍କାର' ୧୦ମ ବର୍ଷ, ୩ୟ ସଂଖ୍ୟା, ଜାନୁଆରୀ ୧୯୫୮ ମସିହା
ପୃ-୨୯୪

(୧୨) ଓଡ଼ିଆ ସାହିତ୍ୟର ଇତିହାସ- ୩ୟ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । ପୃ-୩୩୭

'ପ୍ରେମତରଙ୍ଗିଣୀ' ରେ କବି ଉଲ୍ଲେଖ କରିଅଛନ୍ତି :-

"ପ୍ରେମତରଙ୍ଗିଣୀ ଊନବିଂଶ ଛାନ୍ଦ ।
ପୂର୍ଣ୍ଣ କଲା ବୈଷ୍ଣବ ସଦାନନ୍ଦ ॥
ପୂର୍ବେ ଶ୍ରୀ ବୀରକେଶରୀ ଦତ୍ତ ପଦ ।
କବିସୂର୍ଯ୍ୟ ବ୍ରହ୍ମା ବୋଲି ଓଲକେ ବେଦ ॥
ସର୍ବେ ଜାଣିବା ପାଇଁ ଏ ନାମ ଭଣି ।
ସାଧୁଚରଣ ଦାସ ମୁଁ ଥିବ ଜାଣି" ॥

(ପ୍ରେମ ତରଙ୍ଗିଣୀ ଛାନ୍ଦ-୨୯)

'ଏଣୁ ଶ୍ଲୋକ ପଦେ କହି ଷୋଡଶ ସଂଖ୍ୟାତ ।
କବିସୂର୍ଯ୍ୟ ଗୀତ ହେଉ ସଂସାରେ ବିଖ୍ୟାତ' ॥ (ପ୍ରେମ କଳ୍ପଲତା)

ଗଜପତି ଶ୍ରୀ ବୀରକେଶରୀ ଦେବ କବିଙ୍କୁ ଏହି ପଦବୀ ଦାନ କରିଥିବା ବିଷୟ କବି ନିଜର କାବ୍ୟ କୃତିମାନଙ୍କର ଅଂଶ ବିଶେଷରେ ବହୁବାର ଉଲ୍ଲେଖ କରିଅଛନ୍ତି—

'ବୀର ଶ୍ରୀ ବୀରକେଶରୀ ଦେବ ଦତ୍ତ କରି ପଦ ପୂର୍ବେ କବିସୂର୍ଯ୍ୟ ବ୍ରହ୍ମା' ।

(ମୋହନଲତା ଛାନ୍ଦ-୩୧)

'ପୂର୍ବେ ଶ୍ରୀ ବୀରକେଶରୀ ଦତ୍ତପଦ' । (ପ୍ରେମତରଙ୍ଗିଣୀ ଛାନ୍ଦ-୨୯)

ଏତଦ୍‌ଭିନ୍ନ କବି ସ୍ୱକୃତ ଭଗବଦ୍ ଗୀତାନୁବାଦରେ ନିଜକୁ ଶକତି 'କବିସୂର୍ଯ୍ୟ ବ୍ରହ୍ମା' ବୋଲି ଉଲ୍ଲେଖ କରି ପାଠକମାନଙ୍କୁ ଦ୍ୱନ୍ଦ୍ୱରେ ପକାଇ ଦେଇଅଛନ୍ତି । ତେବେ କବି କିଛୁକାଳ ଗଞ୍ଜାମରେ ରହିଥିବା କଥା 'ଯୁଗଳ ରସାମୃତ ଲହରୀ' ରୁ ଜଣାପଡ଼େ ।

'ନୂଆଗଡ଼ ରାଜ୍ୟେ ପୂର୍ବାଶ୍ରମ ଯେ ମୋହର ।
କିଛୁଦିନ ମାସକ ରହିଲି ଘୁମୁସର ॥
ଦଶପଲ୍ଲା ଭଞ୍ଜରାଜା ସଖ୍ୟପ୍ରେମେ ମୋତେ ।
ବହୁ ସମ୍ଭାବନାରେ ରଖିଲେ ବର୍ଷ କେତେ' ॥

(ଯୁଗଳ ରସାମୃତ ଲହରୀ ଛାନ୍ଦ-୫୬)

ଚକଟିରେ ଅବସ୍ଥାନ କାଳରେ ସେ ଭଗବଦ୍ ଗୀତା ଅନୁବାଦ କରିଥିଲେ ଓ ସେଥିଲାଗି ଉକ୍ତ ଗ୍ରନ୍ଥରେ ନିଜକୁ ଚକଟି କବିସୂର୍ଯ୍ୟ ବ୍ରହ୍ମା ବୋଲି ଉଲ୍ଲେଖ କରିଥିଲେ ।

କବି ନିଜର କେଉଁ ଉଲ୍ଲେଖନୀୟ କୃତି ନିମନ୍ତେ ଗଜପତିଙ୍କ ଠାରୁ ଉକ୍ତ ପଦବୀ ପ୍ରାପ୍ତ ହୋଇଥିଲେ ତାହା ସଠିକ୍ ଭାବେ ଜଣାଯାଉ ନାହିଁ । କାବ୍ୟମାନଙ୍କ ମଧ୍ୟରେ 'ଲଳିତ ଲୋଚନା' ପ୍ରଥମ କାବ୍ୟ ବୋଲି କବି 'ମୋହନଲତା' ରେ ସୂଚନା ଦେଇଅଛନ୍ତି । ଏହି 'ଲଳିତଲୋଚନା'ର ପ୍ରଥମ ଛାନ୍ଦରେ କବି 'କବିସୂର୍ଯ୍ୟ ବ୍ରହ୍ମା' ଉପାଧି ଓଡ଼ିଶା ଗଜପତି ଶ୍ରୀ ବୀରକେଶରୀ ଦେବଙ୍କ ଠାରୁ ପ୍ରାପ୍ତ ହୋଇଥିବା ଉଲ୍ଲେଖ କରିଥିବାରୁ ଏ କାବ୍ୟ ରଚନା ପୂର୍ବରୁ ଉକ୍ତ ଉପାଧି ପ୍ରାପ୍ତ ହୋଇଥିବା ସୁସ୍ପଷ୍ଟ । କବିଙ୍କର କାବ୍ୟ ପ୍ରତିଭା 'ଲଳିତ ଲୋଚନା' ର ପୂର୍ବରୁ ଥିବା ପ୍ରମାଣିତ ହେଉଅଛି । ପୁନଶ୍ଚ 'ମୋହନଲତା' କାବ୍ୟର ୯୭ ଛାନ୍ଦରେ କାବ୍ୟରଚନା ପୂର୍ବରୁ ଓଡ଼ିଆ, ବଙ୍ଗଳା, ଖୁରୁଠା ପ୍ରଭୃତି ଭାଷାମାନଙ୍କରେ ସେ ଚଉପଦୀ, ଚଉତିଶା ଆଦି କ୍ଷୁଦ୍ର କ୍ଷୁଦ୍ର ରଚନା କରିଥିବା ବିଷୟ ଉଲ୍ଲେଖ କରି ଅଛନ୍ତି ।

"ଉତ୍କଳ ବଙ୍ଗ ଖୁରୁଠାଦି ଭାଷାମାନ ।
ଏ ପ୍ରକାରେ କିଛି କିଛି କରିଛି ବର୍ଣ୍ଣନ ॥
ଚଉପଦୀ ଚଉତିଶା ବୋଲି ଅଛି ଯେତେ ।
କେଉଁଦେଶେ କେଉଁଠାରେ ପ୍ରକାଶ ଜଗତେ" ॥

(ମୋହନଲତା ଛାନ୍ଦ-୯୭)

ପ୍ରଥମେ କ୍ଷୁଦ୍ର କବିତା ରଚନାରୁ କ୍ରମେ କବିର ପ୍ରତିଭାର ବିକାଶ ହୋଇଥାଏ । ଶୋକ ବା ଆନନ୍ଦରେ ଅଧୀର ହେଲେ ମନୁଷ୍ୟ ହୃଦୟରୁ ଛନ୍ଦୋମୟୀ ବାଣୀ ସ୍ୱତଃ ବିକଶିତ ହୁଏ । ସେ ବାଣୀରେ ଅର୍ଥ ନିହିତ ଥିଲେ ତାହା କବିତା ହୁଏ । ଏଣୁ ସବୁକାଳରେ ସବୁ ଦେଶରେ ବିଶିଷ୍ଟ କବି-ମାନଙ୍କର କବିତ୍ୱର ଉତ୍ପତ୍ତି ପଦ୍ୟ ରଚନାରୁ ହିଁ ଆରମ୍ଭ ହୋଇଥାଏ । ଗୀତରେ ଶୋକର ଝଙ୍କାର ଥିଲେ ତାହା ପାଠକର ସହାନୁଭୂତି ଉଦ୍ରେକ କରେ । କବି ସଦାନନ୍ଦ ତାଙ୍କ କବି ଜୀବନରେ ଏକାଧିକ ମର୍ମସ୍ପର୍ଶୀ କବିତା

ରଚନା କରି ଗଜପତିଙ୍କ ଠାରୁ ଏହି ପଦବୀ ପ୍ରାପ୍ତ ହୋଇଥିବେ ବୋଲି ନିଶ୍ଚିତ କରାଯାଇ ପାରେ (୧୩)। ମାତ୍ର ଉକ୍ତ ଉପାଧି ପ୍ରାପ୍ତି ରେ ମଧ୍ୟ ଏ ଭଳି ଜଣେ କବି ତତ୍କାଳୀନ ପ୍ରଥାନୁଯାୟୀ ରାଜସଭା ମଣ୍ଡନ ନ କରି ବିଭିନ୍ନ ରାଜ୍ୟ ଭ୍ରମଣ କରିବା ମୂଳରେ କି ଉଦ୍ଦେଶ୍ୟ ନିହିତ ଥିଲା ତାହା ଜଣାଯାଇନାହିଁ । ହୁଏତ ଧର୍ମ ପ୍ରଚାରକ ଭାବରେ ସେ ନାନାସ୍ଥାନ ଭ୍ରମଣ କରିଥିବା ସ୍ୱାଭାବିକ ମନେହୁଏ । କବିଙ୍କର ଏହି ଉପାଧି ଲାଭ ବିଷୟରେ କବି ସ୍ୱକୃତ ବିଭିନ୍ନ କାବ୍ୟମାନଙ୍କର ଅଂଶ ବିଶେଷରେ ଉଲ୍ଲେଖ କରି ଅଛନ୍ତି (୧୪)। ସେଥିମଧ୍ୟରୁ ଲଳିତ ଲୋଚନା, ଯୁଗଳ ରସାମୃତ ଲହରୀ, ପ୍ରେମ ତରଙ୍ଗିଣୀ ଓ ପାଟରହାବଳୀ ପ୍ରଭୃତି କାବ୍ୟର ନିମ୍ନ ଅଂଶ ବିଶେଷରୁ କିଛି ଦୃଷ୍ଟାନ୍ତ ମିଳେ ।

---

(୧୩) ଓଡ଼ିଆ ସାହିତ୍ୟର ଇତିହାସ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । ପୃ-୪୦୩

(୧୪) (କ) 'ଲଳିତ ଲୋଚନା'- (ଅପ୍ରକାଶିତ ପାଣ୍ଡୁଲିପି) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଠାରୁ ପ୍ରାପ୍ତ । (୧ମ ଛାନ୍ଦର ୬୭ ପଦ, ୧୮ଶ ଛାନ୍ଦର ୬୫ ପଦ, ୨୧ଶ ଛାନ୍ଦର ୩୩ ପଦ)

(ଖ) ଯୁଗଳ ରସାମୃତ ଲହରୀ-୪ର୍ଥ ଛାନ୍ଦର ୧୨ ପଦ ପୃ-୧୦, ୬ଷ୍ଠ ଛାନ୍ଦର ୪୫ ପଦ ପୃ-୧୬ । ପ୍ରକାଶିତ କାବ୍ୟ, ହରିନାଥ ପ୍ରେସ୍, କଟକ-୨, ମୁଦ୍ରଣ କାଳ ୧୯୬୪ ମସିହା ।

(ଗ) ପ୍ରେମତରଙ୍ଗିଣୀ-ପ୍ରକାଶକ ରାଧାକୃଷ୍ଣ ବସୁ ଏମ୍. ଏ., ଶ୍ରୀ ରାସବିହାରୀ ମଠ, କଟକ, ମୁଦ୍ରଣ କାଳ-୧୯୩୧ ମସିହା । ୨୯ଶ ଛାନ୍ଦର ୩୩ ପଦ ପୃ-୧୬୪, ୩୧ଶ ଛାନ୍ଦର ୨୩ ପଦ ପୃ-୧୭୬ ।

(ଘ) ପାଟରହାବଳୀ-ଅପ୍ରକାଶିତ କାବ୍ୟ । ବାଣୀବିହାରସ୍ଥ ଗ୍ରନ୍ଥାଗାରର ପୋଥିବିଭାଗରୁ ସଂଗୃହୀତ । No. OL/151 (୪ର୍ଥ ଅଧ୍ୟାୟ ୯୬ ପଦ ଓ ୯୭ ପଦ) ।

## କବିଙ୍କ କାଳ ନିରୂପଣ

କବିଙ୍କ ଜନ୍ମ ବର୍ଷ ସମ୍ପର୍କରେ ଏବେ ମଧ୍ୟ ମତଭେଦ ଦେଖାଯାଏ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମହାଶୟ ନିମ୍ନୋକ୍ତ ମତେ କବିଙ୍କ ଜନ୍ମ ବର୍ଷର ସିଦ୍ଧାନ୍ତ କରିଅଛନ୍ତି । 'ଯୁଗଳ ରସାମୃତ ଲହରୀ' ରେ କବି ଲେଖିଛନ୍ତି ଯେ 'ବୀରକେଶରୀ ଦେବଙ୍କ ପଞ୍ଚାବନ ଅଙ୍କରେ (୧୫) କବି ଉକ୍ତ କାବ୍ୟଟିର ରଚନା ଆରମ୍ଭ କରିଥିଲେ । ବୀରକେଶରୀ ଦେବ ଖ୍ରୀ:ଅ ୧୭୩୭ ରେ ସିଂହାସନ ଆରୋହଣ କରିଥିଲେ (୧୬) । ବୀରକେଶରୀଙ୍କ ୫୫ ଅଙ୍କ ତାଙ୍କ ରାଜତ୍ୱର ୪୫ ବର୍ଷରେ ପଡୁଅଛି । ଅର୍ଥାତ ଖ୍ରୀ:ଅ ୧୭୮୧ । ସେତେବେଳକୁ କବିଙ୍କୁ ୪୩ ବର୍ଷ ବୟସ ହୋଇଥିବାର ସେ ଯୁଗଳ ରସାମୃତ ଲହରୀରେ ସ୍ୱୀକାର କରି ଅଛନ୍ତି ।

—"ମୂର୍ଖ କହିଲେ ଯାହାକହି ସେ ଅର୍ଥ । ହରିଗୁଣାର୍ଣ୍ଣବ ସେ ମହାତୀର୍ଥ ॥
ତହିଁ ଅବଗାହେ ମୋ ବଡ଼ ହର୍ଷ । ବୟସ ହେଲାଣି ତେୟାଳିଶ ବର୍ଷ" ॥
(ଯୁଗଳ ରସାମୃତ ଲହରୀ-୨ୟ ଛାନ୍ଦ)

ଏଣୁ ଜଣାଯାଉଛି କବି ୧୭୩୮ ଖ୍ରୀ:ଅରେ ଜନ୍ମଗ୍ରହଣ କରିଥିଲେ । ଖ୍ରୀ:ଅ ୧୭୮୧ ରେ ମଧୁପୁରରେ ଥିବା ସମୟରେ ଘନଶ୍ୟାମଧୀର ନରେନ୍ଦ୍ର କଟକରେ ବନ୍ଦୀ ହୋଇଥିଲେ (୧୭) ବୋଲି କବି ଯାହା ଲେଖିଛନ୍ତି ସେଥିରୁ ଦେଖିଲେ ମଧ୍ୟ ଏହି ସମୟଟି ଠିକ୍ ବୋଲି ବିଶ୍ୱାସ ହେଉଅଛି" ।

ପଣ୍ଡିତ ବିନାୟକ ମିଶ୍ରଙ୍କ ମତ ଅନୁସାରେ କବି ୧୭୨୦ ଖ୍ରୀ:ଅ ପୂର୍ବରୁ ଜନ୍ମଗ୍ରହଣ କରିଥିଲେ । ସଦାନନ୍ଦ ଯଜ୍ଞାନୁଷ୍ଠାନ କରିବାରୁ ପୁତ୍ରହୀନ ଇନ୍ଦ୍ରଜିତଙ୍କର କନିଷ୍ଠ ପତ୍ନୀଙ୍କ ଗର୍ଭରୁ ଅଭିମନ୍ୟୁ ଜନ୍ମ ହୋଇଥିଲେ ।

---

(୧୫) ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍.ଏ. ପୃ-୩୪୫ ।

(୧୬) ଭକ୍ତି ରସାମୃତ ଲହରୀ-ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା Cy-92, OL 608 ଛାନ୍ଦ-୪୮, ପଦ-୭୦ ଓଡ଼ିଶା ମ୍ୟୁଜିୟମ୍, ଭୁବନେଶ୍ୱର ।

(୧୭) ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍.ଏ ୩ୟ ଭାଗ ପୃ-୩୪୫-୩୪୬) ।

ଖ୍ରୀ:ଅ ୧୮୦୬ ରେ ୪୯ ବର୍ଷରେ ଅଭିମନ୍ୟୁ ଦେହତ୍ୟାଗ କରିଥିବାରୁ ସେ ଖ୍ରୀ: ୧୭୫୬ ବା ୧୭୫୭ ରେ ଜନ୍ମଗ୍ରହଣ କରିଥିବା ଅନୁମାନ । ତେବେ ସଦାନନ୍ଦ ବାଲ୍ୟାକୁ ଅନ୍ତତଃ ଦୁଇବର୍ଷ ପୂର୍ବରୁ ଯାଇଥିବେ । ତେବେ ସଦାନନ୍ଦ ୧୭୨୦ ଖ୍ରୀ:ଅ ର ପୂର୍ବବର୍ତ୍ତୀ କୌଣସି ବର୍ଷ ଜନ୍ମ ଗ୍ରହଣ କରିଥିବେ । କାରଣ ଯୌବନ ପାର ହୋଇଗଲେ ବାଲ୍ୟାଠାରେ କେହି ତାଙ୍କୁ ଭକ୍ତ ଓ ବିଶ୍ୱାସ କରିନଥାନ୍ତେ (୧୮) । ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ମତ ଅନୁସାରେ କବିଙ୍କ ଜନ୍ମ ସମୟ ଖ୍ରୀ:ଅ ୧୭୩୬ ରେ । "ସଦାନନ୍ଦ ଗଜପତି ବୀରକେଶରୀ ଦେବଙ୍କ ରାଜତ୍ୱର ଜଣେ ପ୍ରସିଦ୍ଧ ବୈଷ୍ଣବ କବି । × × × ତାଙ୍କର ଯୁଗଳ ରସାମୃତ ଲହରୀ ଗ୍ରନ୍ଥରୁ ଜଣାଯାଏ ଯେ ସେ ବୀରକେଶରୀ ଦେବଙ୍କ ୫୫ ଅଙ୍କରେ ଗୁଣ୍ଡିଚ୍ଛ ସମୟରେ ଉକ୍ତ ଗ୍ରନ୍ଥ ସମାପ୍ତ କରିଥିଲେ । ସେତେବେଳକୁ ତାଙ୍କୁ ୪୩ ବର୍ଷ ହୋଇଥିଲା । ବୀରକେଶରୀ ଦେବଙ୍କ ୫୫ ଅଙ୍କ ୧୭୮୦-୮୧ ଖ୍ରୀ:ଅ ରେ ପଡ଼ିଥିବାରୁ କବି ୧୭୩୭ଖ୍ରୀ: ରେ ଜନ୍ମଗ୍ରହଣ କରିଥିଲେ । × × × ଅର୍ଥାତ୍ ୧୭୮୦ ଖ୍ରୀ:ଅ ରେ ଘନଶ୍ୟାମ ଧୀରନରେନ୍ଦ୍ର ମଧୁପୁରର ରାଜା ଥିଲେ । × × ସେ ବାଲ୍ୟାରେ ରହି ଯଜ୍ଞ ଅନୁଷ୍ଠାନ କରିବାରୁ ୧୭୫୭ ମସିହାରେ ପ୍ରସିଦ୍ଧ କବି ଅଭିମନ୍ୟୁ ଜନ୍ମ-ଗ୍ରହଣ କରିଥିଲେ" (୧୯) ।

ଡଃ ହରେକୃଷ୍ଣ ମହତାବ ଓ ଶ୍ରୀ କେଦାରନାଥ ମହାପାତ୍ର ବୀରକେଶରୀ ଦେବଙ୍କ ସମୟ ୧୭୩୬ ଖ୍ରୀ:ଅ ରୁ ୧୭୯୩ ଖ୍ରୀ:ଅ ହୋଇଥିବା ନିର୍ଣ୍ଣୟ କରିଅଛନ୍ତି (୨୦) । ଏହି ଗଜପତିଙ୍କ ସମୟରେ କବି ସଦାନନ୍ଦଙ୍କ

---

(୧୮) ଓଡ଼ିଆ ସାହିତ୍ୟର ଇତିହାସ- ପଣ୍ଡିତ ବିନାୟକ ମିଶ୍ର ପୃ-୧୧୪

(୧୯) ଖୁର୍ଦ୍ଧା ଇତିହାସ-ଖ୍ରୀ:ଅ ୧୫୬୮-୧୮୧୭ ଶ୍ରୀ କେଦାରନାଥ ମହାପାତ୍ର ପୃ-୨୦୯-୨୧୦

(୨୦) ବୀରକେଶରୀ ଦେବ-୧୭୩୬-୧୭୯୩- ଓଡ଼ିଆ ଇତିହାସ-୨ୟ ଖଣ୍ଡ, ଡଃ ହରେକୃଷ୍ଣ ମହତାବ ।

ଆବିର୍ଭାବ ହୋଇଥିବା କଥା ମଧ୍ୟ ଉଲ୍ଲେଖ କରାଯାଇଅଛି (୨୧)। ଏହି କବିଙ୍କ ଶିଷ୍ୟ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଜନ୍ମ ୧୭୫୭ ଖ୍ରୀ:ଅରେ ହୋଇଥିବା କଥା ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ଆଲୋଚକ ୰ଜଗବନ୍ଧୁ ସିଂହ, ୰ମୃତ୍ୟୁଞ୍ଜୟ ରଥ, ଅଭିମନ୍ୟୁ ସାହିତ୍ୟ ପରିଷଦର ସମ୍ପାଦକ ଶ୍ରୀଯୁକ୍ତ ପ୍ୟାରୀମୋହନ କର ୰ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ପ୍ରଭୃତିଙ୍କ ଦ୍ୱାରା ସମର୍ଥିତ ହୋଇ ଅଛି (୨୨)। ପୁନଶ୍ଚ **Bengal Dist. Gazettier, Cuttack-Page-44** ରେ ଅଭିମନ୍ୟୁଙ୍କ ମୃତ୍ୟୁ ବିଷୟରେ ଲେଖିଛନ୍ତି **"Abhimanyu died in 1806 at the age of 49"** ।

ଏହି ସମସ୍ତ ପର୍ଯ୍ୟାଲୋଚନା କଲାପରେ ଜଣାଯାଏ ଯେ, ଗୁରୁ ସଦାନନ୍ଦ ଓ ଶିଷ୍ୟ ଅଭିମନ୍ୟୁ ଉଭୟଙ୍କର ଆବିର୍ଭାବ ଅଷ୍ଟାଦଶ ଶତାବ୍ଦୀରେ ଘଟିଅଛି ଓ ଅଭିମନ୍ୟୁଙ୍କ ଜନ୍ମ ୧୭୫୭ ଖ୍ରୀ:ଅ ରେ ହୋଇଥିବା ଅଧିକ ଯୁକ୍ତିଯୁକ୍ତ । ଏହାଛଡ଼ା ୰ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଓ ଅଭିମନ୍ୟୁ ସାହିତ୍ୟ ପରିଷଦର ସମ୍ପାଦକ ଶ୍ରୀଯୁକ୍ତ ପ୍ୟାରୀମୋହନ କର ଉଲ୍ଲେଖ କରି ଅଛନ୍ତି ଯେ, କବି ଅଭିମନ୍ୟୁ ୨୪ ବର୍ଷ ବୟସରେ 'ରସବତୀ' କାବ୍ୟ ସମାପ୍ତ କରିଥିଲେ । ଅର୍ଥାତ୍ ଏହା ୧୭୮୧ ଖ୍ରୀ:ଅରେ ସମାପ୍ତ ହୋଇଥିଲା ଓ ଅଭିମନ୍ୟୁଙ୍କ ବୟସ ମାତ୍ର ୨୪ ବର୍ଷ (୨୩)। ଏହି ସମୟ ମଧ୍ୟରେ ଗୁରୁ ସଦାନନ୍ଦଙ୍କ ଯୁଗଳ ରସାମୃତ ଲହରୀ କାବ୍ୟ ଲେଖାଯାଇଥିବାର ପ୍ରମାଣ

---

(୨୧) ଗଜପତି ବୀରକେଶରୀ ଦେବ-ଝଙ୍କାର-୧୦ମ ବର୍ଷ, ୩ୟ ସଂଖ୍ୟା ୧୯୫୮ ପୃ-୨୯୪ । ଶ୍ରୀ କେଦାରନାଥ ମହାପାତ୍ର ।

(୨୨) (କ) ବିଦଗ୍ଧ ଚିନ୍ତାମଣି ମୁଖବନ୍ଧ- ୧ମ ଖଣ୍ଡ-ପ୍ରାଚୀ ସଂସ୍କରଣ ୰ଆର୍ତ୍ତବଲ୍ଲଭ ମହାନ୍ତି ।

(ଖ) ପ୍ରାଚୀନ ଉତ୍କଳ ୰ଜଗବନ୍ଧୁ ସିଂହ-ପୃ-୧୩୫ ।

(ଗ) ଉତ୍କଳ ସାହିତ୍ୟ ୧୮ଶ ଭାଗ- ୰ମୃତ୍ୟୁଞ୍ଜୟ ରଥ

(ଘ) ସମାଜ ପତ୍ରିକା ( ସାପ୍ତାହିକ ସମାଲୋଚନା ସ୍ତମ୍ଭ ) ୧୯୫୭ ଜୁଲାଇ ।

(୨୩) ବିଦଗ୍ଧ ଚିନ୍ତାମଣି ମୁଖବନ୍ଧ- ୧ମ ଖଣ୍ଡ-ପ୍ରାଚୀ ସଂସ୍କରଣ ୰ଆର୍ତ୍ତବଲ୍ଲଭ ମହାନ୍ତି ।

ମିଳୁଅଛି ଓ ସଦାନନ୍ଦଙ୍କୁ ସେତେବେଳେ ୪୩ ବର୍ଷ ବୋଲି ମଧ୍ୟ ପ୍ରମାଣ ମିଳୁଅଛି ।

"ଶ୍ରୀ ବୀରକେଶରୀ ଦେବଙ୍କ ପଞ୍ଚାବନ ଅଙ୍କରେ ।
ଗ୍ରନ୍ଥ ଆରମ୍ଭ ବାହୁଡା ଗୁଣ୍ଡିଚ୍ଛରେ ॥ × × ×
ତହିଁ ଅବଗାହେ ମୋ ବଡ ହର୍ଷ । ବୟସ ହେଲାଣି ତେୟାଳିଶ ବର୍ଷ" ॥

(ଯୁଗଳ ରସାମୃତ ଲହରୀ ୨ୟ-ଛାନ୍ଦ)

ଶ୍ରୀ ବୀରକେଶରୀ ଦେବଙ୍କ ରାଜତ୍ୱ ସମୟ ୧୭୩୬ ଖ୍ରୀ:ଅରୁ ଆରମ୍ଭ ହୋଇଥିବାରୁ ତାଙ୍କ ରାଜତ୍ୱର ୫୫ ଅଙ୍କ ବା ୪୫ ବର୍ଷ ୧୭୮୧ ଖ୍ରୀ: ଅରେ ପଡୁଅଛି । ଏହି ୧୭୮୧ ଖ୍ରୀ: ଅ ସମୟକୁ କବି ସଦାନନ୍ଦଙ୍କୁ ୪୩ ବର୍ଷ ଓ କବି ଅଭିମନ୍ୟୁଙ୍କୁ ୨୪ ବର୍ଷ ହୋଇଥିବାରୁ ସଦାନନ୍ଦ ଅଭିମନ୍ୟୁଙ୍କ ଠାରୁ ମାତ୍ର ୧୯ ବର୍ଷ ଜ୍ୟେଷ୍ଠ ଥିଲେ । ତେଣୁ ଅଭିମନ୍ୟୁଙ୍କ ଜନ୍ମ ୧୭୫୭ ଖ୍ରୀ: ଅ ହେଲେ ସଦାନନ୍ଦଙ୍କ ଜନ୍ମ ବର୍ଷ ୧୭୩୮ ଖ୍ରୀ: ଅରେ ହେବା ସ୍ୱାଭାବିକ । ଏଣୁ ପଣ୍ଡିତ ବିନାୟକ ମିଶ୍ରଙ୍କ ମତ ଯୁକ୍ତି ଯୁକ୍ତ ନୁହେଁ ।

କବି ସଦାନନ୍ଦଙ୍କ ମୃତ୍ୟୁ କେବେ ଓ କେଉଁଠାରେ ହୋଇଥିଲା, ତାହାର ସଠିକ ବିବରଣୀ ନ ମିଳିଲେ ମଧ୍ୟ କବି ଯେ ବୃଦ୍ଧ ଅବସ୍ଥାରେ ମୃତ୍ୟୁବରଣ କରିଥିଲେ ଏହା ନିଃସନ୍ଦେହ । "ନିସ୍ତାମଣିମାଳ" ଲେଖିବା ସମୟକୁ କବିଙ୍କୁ ବାର୍ଦ୍ଧକ୍ୟ ଆସିଯାଇଥିବା ଅନୁମାନ କରାଯାଏ । କାରଣ ଧ୍ୟାନନିଷ୍ଠା ଛାନ୍ଦରେ ସୂଚନା ଦେଇ କବି ଲେଖିଛନ୍ତି;

"କୃଷ୍ଣର ଅଶେଷ ଧାମ   କେ ହେବ କହିବା କ୍ଷମ
ଧାମ ଭେଦ ନାମ ଭେଦ ସେ ଇଶ୍ୱରର ।
ଲକ୍ଷ୍ମୀନାରାୟଣ କାହିଁ   ରୁକ୍ମଣୀ ବାସୁଦେବହିଁ
ସୀତାରାମ କେଉଁଠାରେ ପାର୍ବତୀ ହର ॥
ଏହି ଅନୁରୂପରେ ଲୀଳା
ପ୍ରକାଶ ବିଳାସ ଅଂଶ ଆବେଶ କଳା" ॥ ୧ ॥

× × ×

ଏ କଥା ସିଦ୍ଧାନ୍ତ ପାଇଁ   ଏଠାରେ ସମସ୍ତ ନାହିଁ ।
ନ ବୁଝିବେ ଗୀତ କେହି ହେବ ନିଷ୍ଠୁର" ।

(ନିସ୍ତାମାଳମଣି-୮ମ ଛାନ୍ଦ)

କୃଷ୍ଣଙ୍କ ମହିମାକୁ ସଠିକ ଭାବରେ ସିଦ୍ଧାନ୍ତ କରିବା ପାଇଁ କବିଙ୍କର ସମସ୍ତ ନଥିବା କଥାରୁ ଅନୁମାନ କରାଯାଏ, କବି ଏହି କାବ୍ୟଟିକୁ ବାର୍ଦ୍ଧକ୍ୟ ଅବସ୍ଥାରେ ଲେଖି ଅଛନ୍ତି । କବିଙ୍କ ଯୁଗଳ ରସାମୃତ ଲହରୀ ର ରଚନା କାଳ ବୀରକେଶରୀ ଦେବଙ୍କ ୫୫ ଅଙ୍କ ଅର୍ଥାତ ୧୭୮୧ ଖ୍ରୀ:ଅ ଓ କବିଙ୍କୁ ଯେତେବେଳେ ୪୩ ବର୍ଷ ବୋଲି କବି ନିଜେ ସ୍ୱୀକାର କରି ଯାଇଅଛନ୍ତି । ପୁନଶ୍ଚ ଉକ୍ତ ଯୁଗଳ ରସାମୃତ ଲହରୀ ମଧୁପୁରଠାରେ ଅବସ୍ଥାନ ସମୟରେ ଲେଖାଯାଇଥିଲା । ଯେତେବେଳେ ସେଠାର ରାଜା ଘନଶ୍ୟାମ ଧୀରନରେନ୍ଦ୍ର କଟକରେ ବନ୍ଦୀ ହୋଇଥିବା ଘଟଣା ଉକ୍ତ ଯୁଗଳ ରସାମୃତ ଲହରୀରେ ଉଲ୍ଲେଖ କରିହୋଇଛି । କବି ସ୍ୱରଚିତ କାବ୍ୟ 'ମୋହନଲତା ବା ମୋହନ କଳ୍ପଲତା'ର ୪୭ ଛାନ୍ଦରେ ଯେଉଁ ଗ୍ରନ୍ଥ ସୂଚୀର ଉଲ୍ଲେଖ କରିଛନ୍ତି ସେଥିରୁ ଅନୁମାନ କରାଯାଏ, କବିଙ୍କର ପ୍ରଥମ ଗ୍ରନ୍ଥ 'ଲଳିତଲୋଚନା' ପରେ 'ଯୁଗଳ ରସାମୃତ ଲହରୀ' ରଚିତ ହୋଇଅଛି (୨୪) । ତେଣୁ ଯୁଗଳ ରସାମୃତ ଲହରୀ କବିଙ୍କର ଦ୍ୱିତୀୟ ଗ୍ରନ୍ଥ ହୋଇଥିବା ଅନୁମାନ କରାଯାଏ ।

"ଆହେ ଶ୍ରୋତାମାନେ ଏବେ ଶୁଣ ଦେଇ କର୍ଣ୍ଣ ।
ଗ୍ରନ୍ଥମାନ ନୁହଇ କହି ଗୋଚର ବିଧାନ ॥ ୧ ॥
ଉତ୍କଳ ବଙ୍ଗଳା ଖୁରୁଠାଦି ଭାଷାମାନ ।
ଏ ପ୍ରକାର କିଛି କିଛି କରିଛି ବର୍ଣ୍ଣନ ॥ ୨ ॥
ଚଉପଦୀ ଚଉତିଶା ବୋଲି ଅଛି ଯେତେ ।
କହିଁ ଦେଶେ କାହିଁଠାରେ ପ୍ରକାଶ ଜଗତେ ॥ ୩ ॥
ଲଳିତଲୋଚନା ଗ୍ରନ୍ଥ ବାଉନ ଛାନ୍ଦରେ ।
ସମ୍ପୂର୍ଣ୍ଣ ହୋଇଛି ଜାଣ କଳ୍ପନା ବେଭାରେ ॥ ୪ ॥
ଶ୍ରୀ ଯୁଗଳ ରସାମୃତ ଲହରୀ ପ୍ରବନ୍ଧ ।
ରାଧାକୃଷ୍ଣ ପୂର୍ବରାଗ ଅଠାବନ ଛାନ୍ଦ ॥ ୫ ॥
ତାହା ସଙ୍ଗମାନ ରସେ ଭଣିଛି କଠିନ ।
ଅଷ୍ଟଚାଳିଶ ଛାନ୍ଦରେ ହୋଇଛି ସମ୍ପୂର୍ଣ୍ଣ ॥ ୬ ॥
ଶ୍ରୀ ପ୍ରେମତରଙ୍ଗିଣୀ ଯେ ଚମତ୍କାର ରସ ।
ଛତିଶ ଛାନ୍ଦରେ ସେହି ହୋଇଅଛି ଶେଷ ॥ ୭ ॥

(୨୪) ଜନ୍ମ ଆ ନୀଳମଣି-ପ୍ରକାଶକ : ରାଧାକୃଷ୍ଣ ବସୁ (୧୯୨୦), ପୃ-୧ ଓ ୨

ଶ୍ରୀଳ ପ୍ରେମକଳ୍ପଲତା ମଥୁରା ଗମନେ ।
ବର୍ଣ୍ଣିତ ହୋଇଛି ଷଟଦଶ ଛାନ୍ଦେ ତେହ୍ନେ ॥ ୮ ॥

ଶ୍ରୀ ଚଟାଉ ଚନ୍ଦ୍ରୋଦୟ ଷଟଦଶ ଛାନ୍ଦ ।
ଦାନକ ଚରିତ ସବ ଚଟାଉ ନିବନ୍ଧ ॥ ୯ ॥

ଶ୍ରୀ ଶ୍ରୀ ନାମ ଚିନ୍ତାମଣି ଅଟେ ଛାନ୍ଦ ବାର ।
ଶ୍ରୀ ଶ୍ରୀ ନିଷ୍ଠାମାଳମଣି ତେମନ୍ତ ପ୍ରକାର" ॥ ୧୦ ॥

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ, ଯୁଗଳ ରସାମୃତ ଲହରୀ କବିଙ୍କର ଦ୍ୱିତୀୟ ରଚନା । ଏହାଛଡ଼ା ନିଷ୍ଠାମାଳମଣି ରଚନା ପୂର୍ବରୁ ବହୁଗ୍ରନ୍ଥ ରଚନାକରି କବି ମହାକବି ନାମରେ ଖ୍ୟାତି ଓ ପ୍ରତିଷ୍ଠା ଲଭ କରିଥିବା ନିଷ୍ଠା ମାଳମଣି କାବ୍ୟର ମଙ୍ଗଳାଚରଣରେ ବର୍ଣ୍ଣିତ ହୋଇଅଛି (୨୫) ।

କବି ପ୍ରକାଶ କରିଅଛନ୍ତି ଯେ, ସେ ପ୍ରାକୃତ ଭାଷା ଓଡ଼ିଆରେ ସଂସ୍କୃତ ସମ୍ମିଳିତ ହୋଇ ବହୁ ଛନ୍ଦ ବନ୍ଧ କାବ୍ୟ ରଚନା କରିଅଛନ୍ତି । ଅପହ୍ନୁତି ଅଳଙ୍କାରାଦି ବିଷୟ କୃତିତ୍ୱ ସହିତ ନିଜ କାବ୍ୟରେ ପ୍ରକାଶ କରି ସ୍ୱ ଶକ୍ତିର ପରିଚୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ 'ମହାକବି' ନାମରେ ଖ୍ୟାତି ଓ ପ୍ରତିଷ୍ଠା ଲଭ କରିଥିଲେ ହେଁ, ବିଦ୍ୟାବନ୍ତ ଜନମାନେ ଏଥିରେ ମୋହିତ ହେଉଥିଲେ ହେଁ ତହିଁରୁ ତାଙ୍କର ମନ ନିବୃତ୍ତ ହେଲା । ଶବ୍ଦ ଅର୍ଥରେ ଓ ଗୂଢ଼ ଅର୍ଥରେ ତାଙ୍କର ଆଉ ପ୍ରୟୋଜନ ନାହିଁ । କେବଳ କୃଷ୍ଣ ଭକ୍ତମାନେ ତାଙ୍କର ଏହି ନିଷ୍ଠାମାଳମଣି ଗ୍ରନ୍ଥ ବୁଝିଲେ ତାଙ୍କର ଶ୍ରମ ସାର୍ଥକ ହେବ । କବି ନିଷ୍ଠାମାଳମଣିକୁ 'ଅଳପ ଘଟଣା' କରି ରଚନା କରିଅଛନ୍ତି । ଏହି କାବ୍ୟର 'ଶେଷନିଷ୍ଠା ଛାନ୍ଦ' ବା ଶେଷ ଛାନ୍ଦରେ ଉଲ୍ଲେଖ କରିଛନ୍ତି ।

"ସେହି ରାଧିକାର, ସୁରଙ୍ଗ ପୟର
ଆଶ୍ରୟ ଅଟଇ ମୋହର ।
ସେ ସେବାକୁ ଯୋଗ୍ୟ ନାହିଁ ମୁଁ ଛାର ।
ଶ୍ରୀଗୁରୁ ଆଜ୍ଞାରେ ଲୋଭିତ ଜନ୍ମୁଛି
ଆୟତ୍ତ ନାହିଁ ଜୀବର ହେ, ମାନସ !

(ନିଷ୍ଠାମାଳମଣି ପୃ-୫୯)

---

(୨୫) ନିଷ୍ଠାମାଳମଣି- ପ୍ରକାଶକ ରାଧାକୃଷ୍ଣ ବସୁ ଏମ୍ ଏ., ପ୍ରଥମ ସଂସ୍କରଣ ଖ୍ରୀ: ଅ ୧୯୨୦ ପୃ-୧ ଓ ୨ ।

ଏହି ନିକୁଞ୍ଜକେଳିମଣି ଗ୍ରନ୍ଥରେ କବି ବାରମ୍ବାର 'ଏଠାରେ ସମସ୍ତ ନାହିଁ ମୋର' ଉକ୍ତିରୁ ପ୍ରତୀୟମାନ ହେଉଅଛି ଯେ, ଏହା କବିଙ୍କର ବାର୍ଦ୍ଧକ୍ୟ ଅବସ୍ଥାର ରଚନା । ବିଶେଷ କରି ଏହି କାବ୍ୟର ୪ର୍ଥ ଛାନ୍ଦରେ କବି ସ୍ପଷ୍ଟଭାବେ ନିଜର ବାର୍ଦ୍ଧକ୍ୟ ଅବସ୍ଥାର ସୂଚନା ଦେଇଅଛନ୍ତି ।

"ତଥାପି ପୁରାଣର ପ୍ରମାଣ ଦେଇ । ଗୁରୁ ଆଗେ ନ ପୂଜି କୃଷ୍ଣ ପୂଜଇ ଯେ ॥
ଦୁର୍ଗତି ପାଏ ପୂଜିବାର ନିଷ୍ଫଳ । ବହୁତ କହିବାକୁ ନାହିଁତ କାଳ ଯେ"॥

ତେଣୁ 'ନିକୁଞ୍ଜକେଳିମଣି' କାବ୍ୟଟି କବି ବାର୍ଦ୍ଧକ୍ୟ ଅବସ୍ଥାରେ ରଚନା କରିଥିଲେ ହେଁ ଏହା କବିଙ୍କର ଅଷ୍ଟମ ରଚନା । 'ମୋହନଲତା'ରେ ୪୬ ଛାନ୍ଦରେ ପ୍ରଦତ୍ତ ଗ୍ରନ୍ଥ ସୂଚୀରୁ ଜଣାଯାଏ, କବି ନିକୁଞ୍ଜକେଳିମଣି ପରେ ଆହୁରି ୧୫ ଗୋଟି କାବ୍ୟ ରଚନା କରିଅଛନ୍ତି ।

"ଶ୍ରୀ ଶ୍ରୀ ତତ୍ତ୍ୱତରଙ୍ଗିଣୀ ସିଦ୍ଧାନ୍ତର ସାର ।
ଉଦାହରଣ ସର୍ବ ପୁରାଣ ମାନଙ୍କର × × ॥ ୧୨ ॥
ଶ୍ରୀ ଶ୍ରୀ ପାଠରତ୍ନାବଳୀ ଯେ ଦ୍ୱାଦଶେ ସିଦ୍ଧ । × ×
ଶ୍ରୀ କୁଞ୍ଜବିହାର ନାମ ତାହାର ଅଟଇ ।
ଗୋବିନ୍ଦଗୁଣ କୀର୍ତ୍ତନମାଳା ନାମେ ଗୀତ । × ×
ଶ୍ରୀ ଶ୍ରୀ ବ୍ରଜଲୀଳାମୃତ ସମୁଦ୍ର ନାମ ଦେଲି × ×
ଶ୍ରୀ ଉଜ୍ଜ୍ୱଳ ନୀଳମଣି ଶ୍ରୀ ଗୋସାଇଁ ଗ୍ରନ୍ଥ ।
ବଙ୍ଗଳା ଭାଷା ପଦ୍ୟାରେ କରିଛି ତା ଗୀତ ॥ × ×
ପ୍ରେମ ଚିନ୍ତାମଣି ନାମେ ବଙ୍ଗଦେଶୀ ଭାଷେ । × ×
ବ୍ରତ ସୂର୍ଯ୍ୟୋଦୟ ନାମ ପଞ୍ଚ ଅଧ୍ୟା ସାର । × ×
ହରିଭକ୍ତି କଳ୍ପଲତା ଗ୍ରନ୍ଥ ସେ ପ୍ରକାଶି × ×
ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତ ସାର । × ×
ଶ୍ରୀ ବ୍ରହ୍ମାଣ୍ଡ ମଙ୍ଗଳ କେବଳ ପରିକୃତେ । × ×
ଶ୍ରୀ ବିଶ୍ୱମ୍ଭର ବିହାର ବିକାର ନିସ୍ତୁମ ।
ପ୍ରୀତି ଚିନ୍ତାମଣି ବିହୁମିଳନ ଜାଣିମ ॥

ସଙ୍ଗୀତ ସଦାନନ୍ଦ କହିଲି ଯେ ଛନ୍ଦରେ ।
ମୋହନ କଳ୍ପଲତା ନାମରେ ଏ ଗୀତ ପ୍ରକାଶ
ସମ୍ପୂର୍ଣ୍ଣ କଲି ହୋଇଲି ଛନ୍ଦ ଚଉୁାଳିଶ ॥ ॥ ୩୪ ॥

*(ମୋହନ କଳ୍ପଲତା ଛନ୍ଦ-୪୬)

କବିଙ୍କ ଦ୍ୱିତୀୟ ଗ୍ରନ୍ଥ 'ଯୁଗଳ ରସାମୃତ ଲହରୀ'ର ରଚନା କାଳ ଗଜପତି ବୀରକେଶରୀ ଦେବଙ୍କ ୫୫ ଅଙ୍କ ଅର୍ଥାତ୍ ୧୭୮୧ ଖ୍ରୀ:ଅ: । ସେ ସମୟକୁ କବିଙ୍କୁ ୪୩ ବର୍ଷ ହୋଇଥିବା କଥା ପୂର୍ବେ ବର୍ଣ୍ଣନା କରାଯାଇଅଛି । ତେଣୁ ଅଷ୍ଟମ ରଚନା ନିସ୍ତାରଳମଣି ସମୟକୁ କବି ବାର୍ଦ୍ଧକ୍ୟରେ ପଦାର୍ପଣ କରିଥିବା କଥା ଅଯୁକ୍ତିକର ନୁହେଁ । ପୁନଶ୍ଚ ଏହି କାବ୍ୟରଚନା କାଳବେଳକୁ କବି ମହାକବି ଭାବରେ ପ୍ରତିଷ୍ଠା ଲାଭ କରିଥିବା ବିଷୟ ଉଲ୍ଲେଖ କରି ଅଛନ୍ତି । ମାତ୍ର ଏହାପରେ କବି ଆହୁରି ୧୫ ଗୋଟି ଗ୍ରନ୍ଥ ରଚନା କରି-ଥିବାର ମଧ୍ୟ ପ୍ରମାଣ ମିଳେ । ଏହି ସମସ୍ତ ପର୍ଯ୍ୟାଲୋଚନା କଲେ ଜଣାପଡ଼େ କବି ଅତି ବାର୍ଦ୍ଧକ୍ୟ ଅବସ୍ଥାରେ ଇହଲୀଳା ସମ୍ବରଣ କରିଥିଲେ । କବିଙ୍କର ଅଧିକାଂଶ ଗ୍ରନ୍ଥ ତାଙ୍କର ପରିଣତ ବୟସର ରଚନା । କବି ୧୮ଶ ଶତାବ୍ଦୀର ଶେଷଭାଗରେ ଜୀବିତ ଥିବା କଥା 'ଜଗବନ୍ଧୁ ସିଂହ' ତାଙ୍କର 'ପ୍ରାଚୀନ ଉତ୍କଳ' ରେ ଉଲ୍ଲେଖ କରିଛନ୍ତି । କବି ଶେଷ ଜୀବନ ବ୍ରଜଧାମରେ ଅତି-ବାହିତ କରିଥିବା ଜଣାଯାଏ ।

"ହେ କୃଷ୍ଣ ଯେ ବ୍ରଜପୁରେ । ଏ ସ୍ନେହ ତୁମ ମନରେ ।
ଯେଣୁ ସେ ମୋ ନିଜସ୍ଥାନ । ଜାଣି କରୁଛି ସ୍ତବନ ॥ ୧ ॥

(ପ୍ରେମ କଳ୍ପଲତା ଛନ୍ଦ-୧୬)

ମାତ୍ର କବି କେଉଁଠାରେ ଇହଲୀଳା ସମ୍ବରଣ କରିଥିଲେ ତାହା ସଠିକ ଭାବରେ ଜଣାପଡ଼େ ନାହିଁ । ତେବେ କଟକ ଜିଲ୍ଲାର ଅସୁରେଶ୍ୱରସ୍ଥ ଦୀକ୍ଷିତ ପଡ଼ାଠାରେ ସଦାନନ୍ଦ ପ୍ରତିଷ୍ଠା କରିଥିବା "କବିସୂର୍ଯ୍ୟ ମଠ" ରେ କବିଙ୍କର ସମାଧି ଅବସ୍ଥିତ । ବର୍ତ୍ତମାନ ଉକ୍ତ ମଠର ଅଧିକାରୀ 'ଶ୍ରୀ ସର୍ବେଶ୍ୱର ଦାସ'ଙ୍କ ଠାରୁ ଜଣାଯାଏ ଯେ, କବିଙ୍କ ମୃତ୍ୟୁ ବ୍ରଜଧାମରେ

---

* ମୋହନ କଳ୍ପଲତା-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା-ଅପ୍ରକାଶିତ କାବ୍ୟ । ଏହି କାବ୍ୟର ପାଣ୍ଡୁଲିପିଟି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ନିକଟରୁ ପ୍ରାପ୍ତ ।

ହୋଇଥିଲା ଏବଂ ସେଠାରୁ ଅସ୍ଥି ସଂଗ୍ରହ କରାଯାଇ ଏହି ସମାଧି ନିର୍ମାଣ କରାଯାଇଛି । ଏହି ସମାଧି ଏଠାରେ ଏ ପର୍ଯ୍ୟନ୍ତ ପୂଜିତ ହେଉଅଛି ।

## ଦୀକ୍ଷାଗୁରୁ ପରମ୍ପରା ଓ ଶିଷ୍ୟାବଳୀ

ସଦାନନ୍ଦ ବା ସଦାଶିବ ଓଡ଼ିଆ ତାଙ୍କ ଶିକ୍ଷାଗୁରୁଙ୍କ ଠାରୁ ଆଜ୍ଞା ପାଇ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିଲେ ଏବଂ ଭଜ ରାଧା ହରି ବୋଲି ଶିକ୍ଷା-ଗୁରୁ ଯେଉଁ ଆଦେଶ ଦେଇଥିଲେ ତାହାକୁ ସେ ଅବଜ୍ଞା କରିନଥିଲେ ।

"ନାମ ଶ୍ରୀ ଲଡ୍ଡୁକେଶ୍ୱର କୁଳ ଇଷ୍ଟ ମୋର,
ଶିକ୍ଷାଗୁରୁ ଯେଣୁ କଲେ ଆଜ୍ଞା !
ବଇଷ୍ଣବ ଦୀକ୍ଷାକରି ଭଜ ରାଧାହରି,
ସେ କଥା ନ କଲି ଅବଜ୍ଞା ॥ ୩୯ ॥

(ମୋହନଲତା ଛାନ୍ଦ-୩୧)

ମାତ୍ର କବି ଶିକ୍ଷାଗୁରୁଙ୍କ ନାମ କେଉଁଠାରେ ଉଲ୍ଲେଖ କରିନାହାଁନ୍ତି । କବି 'ଲଳିତ ଲୋଚନା' ରଚନା ସମୟକୁ ବାବାଜୀ ଶ୍ରୀ କିଶୋର ଦାସ ଗୋସ୍ୱାମୀଙ୍କ ଦ୍ୱାରା ପ୍ରଭାବିତ ହୋଇ ତାଙ୍କୁ ଦୀକ୍ଷାଗୁରୁ କରିଥିଲେ ଓ ଦୀକ୍ଷାନାମ 'ସାଧୁଚରଣ ଦାସ' ଗ୍ରହଣ କରିଥିଲେ । କବି ନିଜ ଗୁରୁଙ୍କୁ ବିଶେଷ ସମ୍ମାନ ଦେଉଥିଲେ । ବୈଷ୍ଣବ ଦୀକ୍ଷ ।ଗ୍ରହଣ ପୂର୍ବରୁ ରାଧାଚରଣ ଦାସ ନାମକ ଜଣେ ପରମ ବୈଷ୍ଣବଙ୍କ ନିକଟରୁ ବୈଷ୍ଣବ ତତ୍ତ୍ୱ ଶିକ୍ଷା ପ୍ରାପ୍ତ ହୋଇଥିଲେ ।

"ସେ ଯେ ରାଧାଚରଣ ଦାସ ନାମେ ପ୍ରାଣବନ୍ଧୁ,
ମୋହର ସେ ଗଲେ କାହିଁ ?
ଯାଙ୍କ ସଙ୍ଗୁ ନିଷ୍ଠା ମୋର ଯେ ଦେବତାନ୍ତର,
ଭକ୍ତି ଛଡ଼ାଇଲେ ତତ୍ତ୍ୱ କହି" ॥ ॥ ୧୭ ॥

(ନିଷ୍ଠାମଣିମଣି ଛାନ୍ଦ-୬) (୨୭)

ଶ୍ରୀ କିଶୋର ଦାସ ଗୋସ୍ୱାମୀ କବିଙ୍କର ଦୀକ୍ଷାଗୁରୁ ଥିଲେ ।

---

(୨୭) ନିଷ୍ଠାମଣିମଣି-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବିରଚିତ, ଶ୍ରୀ ରାଧାକୃଷ୍ଣ ବସୁ ଏମ୍.ଏ. ଙ୍କ ଦ୍ୱାରା ସଂଶୋଧିତ ଓ ପ୍ରକାଶିତ ୧୯୨୦ ଖ୍ରୀ:ଅ ପୃ-୩୧

"ସେ ମୋହର କୁଳ ଗୁରୁ                ଯେ ମନ୍ତ୍ରମା ମହାମେରୁ
ତାଙ୍କ ଅଙ୍କରେ ମୋହର ଜନମ ଭୂମି ।
ତାହାଙ୍କ ଅଙ୍କରେ କବି,              ସେ ଅଙ୍କରେ ତତ୍ତ୍ୱ ଦ୍ରବି
ଆଶ୍ରେ ମୋର ଶ୍ରୀ କିଶୋର ଦାସ ଗୋସ୍ୱାମୀ" ॥
ହରିନାମ ଧନ ସେ ଦେଲେ ! ଦେହ ପ୍ରାଣ ସର୍ବସ୍ୱହିଁ ସେ ହସ୍ତୁ କଲେ" ॥୨୦

(ଲଳିତ ଲୋଚନା ଗ୍ରନ୍ଥ-୫୨) (୨୭)

ନିଜ ଗ୍ରନ୍ଥ ମାନଙ୍କରେ ସଦାନନ୍ଦ ବାରମ୍ବାର ଦୀକ୍ଷାଗୁରୁଙ୍କ ନାମୋଲ୍ଲେଖ କରିଅଛନ୍ତି—

"ଶ୍ରୀଗୁରୁ ଶ୍ରୀ କିଶୋର ଦାସ ଚରଣ ନାବ
ସାଧୁଚରଣ ଦାସ ତରିବ ଭବାର୍ଣ୍ଣବ ଯେ" ॥

(ଯୁଗଳ ରସାମୃତ ଲହରୀ ଗ୍ରନ୍ଥ-୨୨)

ସଦାନନ୍ଦ ନିଜ ଦୀକ୍ଷାଗୁରୁଙ୍କ ପରମ୍ପରାକୁ ବହୁବାର ନିଜ ଗ୍ରନ୍ଥ ମାନଙ୍କରେ ଉଲ୍ଲେଖ କରିଅଛନ୍ତି ।

"ମୋ ସ୍ୱାମୀ ଶ୍ରୀଯୁକ୍ତ ଶ୍ରୀଳ କିଶୋର ଦାସ ଯେ
ତାଙ୍କ ପ୍ରଭୁ ବନମାଳି ଦାସ ହି ଯେ ।
ତାଙ୍କ ଶ୍ରୀ ଗୁରୁ ଶ୍ରୀ ଗଙ୍ଗାମାତା ଠାକୁରାଣୀ
ତାଙ୍କ ଜୀବେଶ୍ୱରୀ ଲକ୍ଷ୍ମୀପ୍ରିୟା ଗୁଣମଣି ॥
ତାହାଙ୍କର ପ୍ରଭୁ ଶ୍ରୀ ଗୋପାଳ ଯେ ଗୋସାଇଁ
ତତ୍ ପ୍ରଭୁ ଅନନ୍ତାଚାର୍ଯ୍ୟ ବ୍ୟାସ ଯାଇ
ତାହାଙ୍କର ପ୍ରଭୁ ଶ୍ରୀ ଗଦାଧର ପଣ୍ଡିତ
ଯେ ଅକଥନୀୟ ତତ୍ତ୍ୱ ପରମ ବିଦିତ ।
ତାହାଙ୍କର ସ୍ୱାମୀ ଶ୍ରୀକୃଷ୍ଣ ଚଇତନ୍ୟ
ଯେଉଁ ଅବତାରେ ହେଲା କଳିଯୁଗ ଧନ୍ୟ" ॥

(ଯୁଗଳ ରସାମୃତ ଲହରୀ ଗ୍ରନ୍ଥ-୫୭)

---

(୨୭) ଲଳିତଲୋଚନା-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ।

ବୈଷ୍ଣବ କବି ସାଧୁଚରଣ ଚୈତନ୍ୟ ପନ୍ଥୀ ବୈଷ୍ଣବ ଥିଲେ ଓ 'ଇଷ୍ଟଗୋଷ୍ଠୀ'ର ପୃଷ୍ଠପୋଷକ ଥିଲେ । କବିଙ୍କ ଗୁରୁ ପରମ୍ପରାରୁ ଅନୁମାନ କରାଯାଏ ଯେ କବି 'ଗଦାଧର' ପରିବାର ଅନ୍ତର୍ଭୁକ୍ତ । ଗଦାଧର ବିନା ଗୌରଙ୍କୁ ଭଜିଲେ ସେହି ଭଜନ ନିଷ୍ଫଳ ହୁଏ ବୋଲି କବି 'ରସିକ ପ୍ରିୟା' ଗ୍ରନ୍ଥରୁ ପ୍ରମାଣ ଉଦ୍ଧାର କରି ନିଜ ଭାଷାରେ ଅନୁବାଦ କରିଅଛନ୍ତି—

"ଗଦାଧର ବିନା ଯେହୁ ଗୌରାଙ୍ଗ ଭଜଇ ।
ନିଷ୍ଫଳ ତା ଭଜନ ପାଇବ ଅବା କାହିଁ ଯେ" ॥ ୨୩

(ନିଷ୍ଠାମାଳମଣି-୩ୟ ଛାନ୍ଦ)

"ତଥାହି ରସିକ ପ୍ରିୟା ଯ୍ୱାଂ"—

"ଗଦାଧରଂ ବିନା ଯସ୍ତୁ ଗୌରଚନ୍ଦ୍ର ମୁପାସତେ ।
ନିଷ୍ଫଳଂ ଭଜନଂ ତସ୍ୟ ରସଭକ୍ତି ନ ଲଭ୍ୟତେ" ॥ (ଇତି)

(ରସିକ ପ୍ରିୟା)

ସଦାନନ୍ଦଙ୍କ ସମୟରେ ଗୁରୁଶିଷ୍ୟ ସମ୍ପର୍କ ଆଦର୍ଶଗ୍ରାହ୍ୟ ନଥିବାରୁ କବି ଏ ସମ୍ପର୍କରେ 'ନିଷ୍ଠାମାଳମଣି' କାବ୍ୟରେ କିଞ୍ଚିତ ପରିମାଣରେ ଆଲୋଚନା କରିଅଛନ୍ତି ଏବଂ ଦୀକ୍ଷା ଗ୍ରହଣର ଆବଶ୍ୟକତା, ଗୁରୁ ଓ ଶିଷ୍ୟଙ୍କର ପ୍ରକୃତ ସ୍ୱରୂପ ଆଦି ଯଥାଯଥ ଭାବରେ ବର୍ଣ୍ଣନା କରି ଅଛନ୍ତି ।

"ଦୀକ୍ଷା କରିବାର କର୍ତ୍ତବ୍ୟ ଜୀବର ।
ସେ ବିନା ଶୁଦ୍ଧ ନୁହେଁ ଜୀବ ଶରୀର ଯେ
ଦୀକ୍ଷାହୀନ ହୋଇଣ ଯେହୁ ମରଇ
ପଶୁ ଯୋନିରେ ନିଷ୍ଠା ଜନ୍ମ ଲଭଇ ଯେ" ॥ ୧

(ନିଷ୍ଠାମାଳମଣି-୪ର୍ଥ ଛାନ୍ଦ)

ପ୍ରକୃତ ଗୁରୁଙ୍କର ସ୍ୱରୂପ ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଯାଇ କବି ଲେଖିଛନ୍ତି;

"ସଦ୍‌ଗୁରୁ ବୁଝି କରିବାର ଉଚିତ ।
ଏଥିକୁ ଅଛି ବହୁ ଶାସ୍ତ୍ର ସମ୍ମତ ଯେ ॥

ବୋଇଲେ ଆଦ୍ୟେ ତାଙ୍କ ସ୍ୱଭାବ ଚହ୍ନି ।
ତଦନ୍ତେ ତାଙ୍କୁ ଗୁରୁ କରଣ ମାନ ଯେ ॥
ତେସନେ ଗୁରୁ ଜାଣି ଶିଷ୍ୟ ଲକ୍ଷଣ ।
କୃପାକରିବେ ପଛେ କହେ ପୁରାଣ ଯେ ॥ × ×
ଶବ୍ଦଜ୍ଞାନ ଥିବ ବୈଷ୍ଣବ ବ୍ରାହ୍ମଣ ।
ଗୁରୁ ସେ ରସାମୃତ ସିନ୍ଧୁ ପ୍ରମାଣ ଯେ ॥
ପଦ୍ମପୁରାଣରେ ହୋଇଛି ସମ୍ମତ ।
ଗୁରୁଙ୍କୁ ଯୋଗ୍ୟ ବ୍ରାହ୍ମଣହିଁ ଉଚିତ ଯେ ॥
ମହାକୁଳ ପ୍ରସୂତ ସର୍ବ ଯଜ୍ଞରେ ।
ଦୀକ୍ଷିତ ବହୁ ଶାଖା ବେଦ ପଢିଲେ ଯେ ॥
ଅବୈଷ୍ଣବ ଯେବେ ସେ ଗୁରୁ ନୋହିବ ।
ଶ୍ୱପଚ ଯଦି ଭକ୍ତ ଗୁରୁଟି ସେହି ଯେ ॥
କୃଷ୍ଣ ଭକ୍ତି ନଜାଣେ ଯେ ଅନ୍ୟ ଧର୍ମ ।
ଶିକ୍ଷା ଦିଅନ୍ତି ସେହୁ ଗୁରୁ ଅଧମ ଯେ ॥ × ×
ଶ୍ରୀକୃଷ୍ଣ ଭକ୍ତି ପ୍ରୟୋଜନ ଅଟଇ ।
ଯେ ଜାଣେ କୃପା କରେ ଗୁରୁଟି ସେହି ଯେ" ॥

(ନଷ୍ଟାମ୍ନାଳମଣି-୪ର୍ଥ ଛନ୍ଦ)

ପ୍ରକୃତ ଶିଷ୍ୟଙ୍କର ଲକ୍ଷଣ ସମ୍ପର୍କରେ ମଧ୍ୟ କବି ଉଲ୍ଲେଖ କରିଛନ୍ତି ।

"ଶିଷ୍ୟଲକ୍ଷଣ କହୁଥାଇଁ ଏଥର ।
ବିଶୁଦ୍ଧ କୁଳେ ଜନ୍ମ ଅଟେ ସୁନ୍ଦର ଯେ ॥
ପ୍ରୀତି ବିହ୍ୱଳ ସତ୍ୟବାଦୀ ପ୍ରବୀଣ ।
ଅତହିଁ କାମୀ, କ୍ରୋଧୀ ନୋହିବ ପୁଣ ଯେ ॥
ବିଶ୍ୱାସେ ସେବାକର ଗୁରୁ ଚରଣ ।
ବେଦ କହେ ନ ଦେଇ ତରି ପ୍ରମାଣ ଯେ ॥ × ×

(ନଷ୍ଟାମ୍ନାଳମଣି-୪ର୍ଥ ଛନ୍ଦ)

କବି ସଦାନନ୍ଦ ଦୀକ୍ଷା ଗୁରୁଙ୍କ ସହିତ ଆଜୀବନ ଜଡ଼ିତ ହୋଇ ରହିଥିଲେ ଓ ଦୀକ୍ଷାଗୁରୁଙ୍କୁ ଅତ୍ୟନ୍ତ ଭକ୍ତି ଓ ଶ୍ରଦ୍ଧା କରୁଥିଲେ ।

"ଶ୍ରଦ୍ଧା ଜନ୍ମିଲେ ଭାଗ୍ୟେ ଗୁରୁ ଚରଣ ।
ସେବଇ ସଦା କରେ ଗୁରୁ ସ୍ମରଣ ଯେ ॥
ଶିଷ୍ୟର ଶ୍ରଦ୍ଧା ଦେଖି ସନ୍ତୁଷ୍ଟ ଚିତ୍ତେ ।
ଆପଣା ମର୍ମ ଧନ ଦିଅନ୍ତି ହିତେ ଯେ ॥
ଗୁରୁ ପାଦାଶ୍ରୟଟି ଏହାର ନାମ ।
କୃଷ୍ଣ ଦୀକ୍ଷାକୁ ଶିକ୍ଷା କରେ ଉତ୍ତମ ଯେ" ॥

(ଚିନ୍ତାମଣି-୪ର୍ଥ ଛାନ୍ଦ)

ନିଜ ଦୀକ୍ଷାଗୁରୁଙ୍କ ସମ୍ପର୍କରେ ସେ ସ୍ୱରଚିତ କାବ୍ୟରେ ଉଲ୍ଲେଖ କରି ଅଛନ୍ତି । କବି ସଦାନନ୍ଦଙ୍କ ଗୁରୁ ପରମ୍ପରା କ୍ରମ ଏହିପରି ବର୍ଣ୍ଣିତ ହୋଇଅଛି ।

ଶ୍ରୀ ଚୈତନ୍ୟ→ଶ୍ରୀ ଗଦାଧର ଗୋସ୍ୱାମୀ→ଶ୍ରୀ ଅନନ୍ତାଚାର୍ଯ୍ୟ ଗୋସ୍ୱାମୀ→ଶ୍ରୀ ରଘୁଗୋପାଳ ଗୋସ୍ୱାମୀ→ଲକ୍ଷ୍ମୀପ୍ରିୟା ଠାକୁରାଣୀ→ଗଙ୍ଗାମାତା ଠାକୁରାଣୀ→ଶ୍ରୀ ବନମାଳୀ ଦାସ ଗୋସ୍ୱାମୀ→ଶ୍ରୀ କିଶୋର ଦାସ ଗୋସ୍ୱାମୀ→ଶ୍ରୀ ସାଧୁଚରଣ ଦାସ ବା ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ।

ସଦାନନ୍ଦ ନିଜ ଦୀକ୍ଷା ଗୁରୁଙ୍କ ବିଷୟ ପୁନଃ ପୁନଃ ଉଲ୍ଲେଖ କରିଥିଲେ ମଧ୍ୟ, ନିଜେ କାହାର ଦୀକ୍ଷାଗୁରୁ କିଛି ସୂଚନା କେଉଁଠି ଦେଇ ନାହାନ୍ତି । ମାତ୍ର ସେ ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ ଥିବାର ପ୍ରମାଣ ମିଳେ । କବି ଅଭିମନ୍ୟୁ ସ୍ୱରଚିତ କାବ୍ୟ 'ପ୍ରେମକଳା'ରେ ସଦାନନ୍ଦଙ୍କୁ ନିଜର ଗୁରୁ ବୋଲି ସ୍ପଷ୍ଟ ଭାବେ ଉଲ୍ଲେଖ କରି ଅଛନ୍ତି (୨୮) ।

---

(୨୮) ବିଦଗ୍ଧ ଚିନ୍ତାମଣି ମୁଖବନ୍ଧ- ୧ମ ଖଣ୍ଡ ପ୍ରାଚୀ ସଂସ୍କରଣ ପୃ-୪
(କ) ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍.ଏ.
(ଖ) ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ବିନାୟକ ମିଶ୍ର ପୃ-୧୧୭
(ଗ) ଓଡ଼ିଆ ସାହିତ୍ୟର ଇତିହାସ-୪ର୍ଥ ଭାଗ । ପୃ-୧୯୮
ଗ୍ରନ୍ଥମନ୍ଦିର, କଟକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍.ଏ.

ଓଡ଼ିଆ ସାହିତ୍ୟର ବହୁ ସମାଲୋଚକ ଯଥା ଡଃ ୰ଆର୍ତ୍ତବଲ୍ଲଭ ମହାନ୍ତି, ୰ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ବଙ୍ଗୀୟ ଲେଖକ ବିଜୟ ଚନ୍ଦ୍ର ମଜୁମଦାର ପ୍ରମୁଖ କବି ସଦାନନ୍ଦ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଦୀକ୍ଷା ଗୁରୁ ଓ ଶିକ୍ଷା ଗୁରୁ ଥିବା ବିଷୟ ଉଲ୍ଲେଖ କରି ଯାଇଛନ୍ତି । ଯେଉଁ କବି ସ୍ମରଣାମ୍ବ ଠାରୁ ଆରମ୍ଭ କରି ଦୁରୂହ ବୈଷ୍ଣବ ଗ୍ରନ୍ଥ ପଠନ କରିବା ସଙ୍ଗେ ସଙ୍ଗେ ନିଜ ମୌଳିକ ଜ୍ଞାନ ଦ୍ୱାରା କେତେକ ଦୁରୂହ ସଂସ୍କୃତ ଗ୍ରନ୍ଥର ଅନୁବାଦ କରିଯାଇ ପାରନ୍ତି, ସେ ନିଜର ଶିଷ୍ୟ-ମଣ୍ଡଳୀ କପରି ବା ଗଢି ନଥିବେ । କବିଙ୍କ ରଚିତ 'ପାଟରତ୍ନାବଳୀ' ପାଠକଲେ ଜଣାଯାଏ କବି ବିଭିନ୍ନ ପାଟ ପରିକ୍ରମା କରିବା ସମୟରେ ତାଙ୍କ ସହିତ ଗ୍ଦୃହିଜଣ ଶିଷ୍ୟ ଥିଲେ ।

"ଦ୍ୱାଦଶ ଶାଖାଙ୍କ ଶ୍ରୀପାଟ । ଦର୍ଶନେ ମାନସ ଉଚ୍ଚାଟ ॥ ୮୧ ॥
ଚଉଷଠି ମହନ୍ତଙ୍କର । ଶ୍ରୀ ପାଟ ଦର୍ଶନ ବିସ୍ତର ॥ ୮୨ ॥
ଉପଶାଖାଙ୍କ ପାଟ କିଛି । ଦେଖିବାକୁ ସେ ମନେ ଇଚ୍ଛି ॥ ୮୩ ॥
ଯେଉଁ ଶ୍ୱେତ ଦ୍ୱୀପ ମଣ୍ଡଳ । ଚିନ୍ତାମଣି ସେ ବ୍ରଜ ମଣ୍ଡଳ ॥ ୮୪ ॥
ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ସ୍ଥାନ । ଶ୍ରୀ ଶାନ୍ତିପୁର ବିଦ୍ୟମାନ ॥ ୮୫ ॥
ଏ ସବୁ ଦରଶନ ପାଇ । ହୃଦରେ ନିରତ ଭାବଇ ॥ ୮୬ ॥
ଏମନ୍ତେ ମନେକରି ପାଞ୍ଚ । ବାହାର ହେଲୁ ଜଣ ପାଞ୍ଚ ॥ ୮୭ ॥
ଯେ ନାମମାନ ଶୁଣ କହି । ସାଧୁଚରଣ ଦାସ ମୁହିଁ ॥ ୮୮ ॥
ହରି ଦାସ ବୋଲି ମୋହର । ଶିଷ୍ୟ ଯେ ହୋଇଲା ବାହାର ॥ ୮୯ ॥
ଭଗବାନ ଦାସ ବୋଲିଣ । ବାହାର ହେଲା ଏକ ଜଣ ॥ ୯୦ ॥
କରୁଣାକର ଦାସ ନାମ । ମାଧବ ଦାସ ବୋଲି ଯାନ ॥ ୯୧ ॥
ଶ୍ରୀମୂର୍ତ୍ତି ସେବା ସଙ୍ଗତେଣ । ବାହାର ହେଲୁ ପାଞ୍ଚଜଣ" ॥ ୯୨ ॥

(ପାଟରତ୍ନାବଳୀ-୧ମ ଅଧ୍ୟାୟ)

କବି ସଦାନନ୍ଦ ନିଜ ଦୀକ୍ଷା ଗୁରୁଙ୍କ ସମ୍ପର୍କରେ ବାରମ୍ବାର ଉଲ୍ଲେଖ କରିଥିଲେ ମଧ୍ୟ ନିଜ ଶିଷ୍ୟମାନଙ୍କ ପରିଚୟ କେବଳ ଏହି ପାଟରତ୍ନାବଳୀରେ ଉଲ୍ଲେଖ କରି ଯାଇଛନ୍ତି । କବି ନାନା ତୀର୍ଥ ଭ୍ରମଣ କରିବା ସମୟରେ ଯେଉଁ

ଗୃହିଜଣ ଶିଷ୍ୟ ଥିଲେ ସେମାନେ ହେଲେ 'ହରିଦାସ', 'ଭଗବାନ ଦାସ', 'କରୁଣାକର ଦାସ' ଓ 'ମାଧବ ଦାସ'। ଏହି ମାଧବ ଦାସ ଶିଷ୍ୟମଣ୍ଡଳୀର କନିଷ୍ଠ ଶିଷ୍ୟ ଥିବା କବି ନିଜେ ଉଲ୍ଲେଖ କରିଅଛନ୍ତି।

ଏହା ବ୍ୟତୀତ କବି ସ୍ୱ ଅନୂଦିତ ଗ୍ରନ୍ଥ 'କୀର୍ତ୍ତନ ଉଜ୍ଜ୍ୱଳ' ରେ 'ପୁରୁଷୋତ୍ତମ ଦାସ' ନାମକ ଜଣେ କରଣ ଶିଷ୍ୟଙ୍କୁ ନିଜର ବୈଷ୍ଣବ ତତ୍ତ୍ୱ ଶିକ୍ଷାଦେବା ବିଷୟ ଉଲ୍ଲେଖ କରିଛନ୍ତି।

"ଶୁଣିସ୍ତା ପ୍ରେମ ବାନ କବିସୂର୍ଯ୍ୟ ବ୍ରହ୍ମା କହି।
ତୁମି ମହା ବଇଷ୍ଣବ...... ନିଶ୍ଚୟି ॥ ୭ ॥
ଶିଷ୍ଟ କରଣେର କୁଲେ ହଇୟା ଜନମ।
କୁଲ ଉଦ୍ଧରିଲ ହୟା କୃଷ୍ଣ ପରାୟଣ ॥ ୮ ॥
କାଳ ହିସ୍ତା ଅବକାଶ ପୁଚ୍ଛିଲ ଆମାରେ।
ଆମି......ପଢିତ ଜାନି ମୁ କ କାଜରେ ॥ ୯ ॥
ଆମି ଜନ୍ମ ଅନ୍ଧ ମୋରେ ଦିଲେ ଚକ୍ଷୁଦାନ।
ତାରେ ବିକାଇଲୁ ଅମୋକ୍ଷ କଲୁ ପରାନ ॥ ୧୦ ॥
ଆମାର କଣ୍ଠେ ଥାକସ୍ତା କହିବେନ୍ ସ୍ୱାମୀ।
ପ୍ରଭୁ ଶ୍ରୀ କିଶୋର ଦାସ ପାଦେ ନମି ॥ ୧୧ ॥
ଶ୍ରବଣ ମଙ୍ଗଲ ଶ୍ଳୋକ ସୂତ୍ରେର ବିସ୍ତର।
ପ୍ରକାଶିବେ ସବଲୀଳା କରିସ୍ତେ ବିସ୍ତାର ॥ ୧୨ ॥
ଶୁନ ହେ ପୁରୁଷୋତ୍ତମ ଦାସ କହି ଆମି।
କହିବେ କିଶୋର ଦାସ ଯେ ପରିର ତୁମି ॥ ୧୩ ॥

❋ (କୀର୍ତ୍ତନ ଉଜ୍ଜ୍ୱଳ)

ତେଣୁ ଏହି ପୁରୁଷୋତ୍ତମ ଦାସ ଯେ କବିଙ୍କର ଅନ୍ୟ ଏକ ଶିଷ୍ୟ ଏହା ନିଃସନ୍ଦେହ। ଏହା ବ୍ୟତୀତ କବି ମଧୁପୁର ମଠରୁ ଆସି କଟକ ଜିଲ୍ଲା

---

❋ କୀର୍ତ୍ତନ ଉଜ୍ଜ୍ୱଳ-(ଅପ୍ରକାଶିତ) ଓଡ଼ିଶା ମ୍ୟୁଜିୟମ ପୃ-୧।

ଅସୁରେଶ୍ୱର ସ୍ଥିତ ତାବଲ ଗ୍ରାମ ମଠର 'ଅଧିକାରୀ' ପଦ ସେଠାର ଜମିଦାର କାନୁନ୍‌ଗୋଙ୍କ ଠାରୁ ପ୍ରାପ୍ତ ହୋଇ 'ମହନ୍ତାଇ' କଲେ । 'ସେଠାର ଘନ୍ତକରଣ ଜମିଦାରଙ୍କ ଆଦେଶ ଅନୁସାରେ କବିଙ୍କର ପ୍ରଥମ ଶିଷ୍ୟ ହେଲେ ଏବଂ ଗୁରୁଙ୍କ ଆଜ୍ଞା ଅନୁସାରେ କୁଳ ସାଙ୍ଗ 'ମହାନ୍ତି' ତ୍ୟାଗକରି ବୈଷ୍ଣବୋ-ଚିତ ସାଙ୍ଗ 'ଦାସ' ଗ୍ରହଣ କଲେ । ଏହି ଘନ୍ତକରଣ ବଂଶ ବର୍ତ୍ତମାନ ସୁଦ୍ଧା 'ଦାସ' ସାଙ୍ଗ ବ୍ୟବହାର କରୁଅଛନ୍ତି । ଏହାଙ୍କ ପରେ ଗୁଡ଼ିଆ, ଗଉଡ଼, ତେଲି ଓ ତନ୍ତୀ ଜାତିର ଲୋକେ ଶିଷ୍ୟତ୍ୱ ଗ୍ରହଣ କଲେ । ଏମାନେ କବିଙ୍କ ଜୀବିତାବସ୍ଥାର ଶିଷ୍ୟ ଥିଲେ (୨୯) । କବି ସଦାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ପାକ୍ଷିତପଡ଼ାର କବିସୂର୍ଯ୍ୟ ମଠରୁ ପ୍ରାପ୍ତ ତାଙ୍କ ପରବର୍ତ୍ତୀ ଅଧିକାରୀ ବା ଶିଷ୍ୟ ପରମ୍ପରା ଏହିପରି—

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା→ଧ୍ରୁବାନନ୍ଦ→ଗୋବିନ୍ଦ ଚନ୍ଦ୍ର→ଗୋପୀନାଥ→ ବ୍ରହ୍ମାନନ୍ଦ→ରାଧାଚରଣ→ପରମାନନ୍ଦ→ସାଧୁଚରଣ→ସର୍ବେଶ୍ୱର ।
(ବର୍ତ୍ତମାନ ଜୀବିତ) (୩୦)

## ଆଶ୍ରୟଦାତା, ଭ୍ରମଣ ଓ ବିଭିନ୍ନ ମଠ ସ୍ଥାପନ

ରୀତି ଯୁଗରେ ବହୁ କବି କେତେକ ରାଜଦରବାର ସହିତ ଘନିଷ୍ଠ ଥିଲେ । ଅଧିକାଂଶ ରୀତିକାଳୀନ କବି ନିଜର ବ୍ୟୟ ନିର୍ବାହ ପାଇଁ ଆଶ୍ରୟ-ଦାତାମାନଙ୍କ ଉପରେ ନିର୍ଭର କରୁଥିବା ଜଣାଯାଏ । ଏହିସମୟର କବି ସଦାନନ୍ଦ ମଧ୍ୟ ଏହିଭଳି କେତେକ ଆଶ୍ରୟଦାତାଙ୍କ ଉପରେହିଁ ନିର୍ଭର କରୁଥିବା ଅନୁମାନ କରାଯାଏ । ଏହାଙ୍କର ଆଶ୍ରୟଦାତାମାନଙ୍କ ମଧ୍ୟରେ ପ୍ରଥମତଃ ଗଜପତି ବୀରକେଶରୀ ଦେବ । ସେ କବିଙ୍କୁ କବିସୂର୍ଯ୍ୟ ଉପାଧିରେ ଭୂଷିତ କରିଥିଲେ । କିନ୍ତୁ କବି ନିଜର କେଉଁ କୃତି ଦ୍ୱାରା ଏ ପଦବୀ ପ୍ରାପ୍ତ-ହୋଇଥିଲେ ତାହାର ସ୍ପଷ୍ଟ ସୂଚନା କୌଣସିଠାରେ ଦେଇନାହାଁନ୍ତି ।

---

(୨୯) ଓଡ଼ିଆ ସାହିତ୍ୟର ଇତିହାସ- ୩ୟ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ- ପୃ-୩୪୦ ।

(୩୦) ଓଡ଼ିଆ ସାହିତ୍ୟର ଇତିହାସ-୩ୟ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ପୃ-୩୪୦ ।
ବର୍ତ୍ତମାନ ଜୀବିତ ଶ୍ରୀଯୁକ୍ତ ସର୍ବେଶ୍ୱର ଦାସ ମହନ୍ତ ମଧ୍ୟ ତାହା ସ୍ୱୀକାର କରନ୍ତି ।

କବିଙ୍କର ବିଶିଷ୍ଟ ଆଶ୍ରୟଦାତା ମଧୁପୁର ଗଡ଼ର ରାଜାଙ୍କ ବିଷୟ କବି ନିଜ କାବ୍ୟକୃତିରେ ଉଲ୍ଲେଖ କରି ଅଛନ୍ତି । ଏହି ରାଜାଙ୍କ ନାମ 'ଘନଶ୍ୟାମ ନରେନ୍ଦ୍ର' । ଏହି ରାଜାଙ୍କ ସାହଚର୍ଯ୍ୟରେ କବି ମଧୁପୁର ଠାରେ ଗୋଟିଏ ମଠ ପ୍ରତିଷ୍ଠାକରି ସେଠାରେ କିଛିଦିନ 'ମହନ୍ତାଇ' କରିଥିବା କଥା ଜଣାଯାଏ । ବର୍ତ୍ତମାନ ମଧ୍ୟ ସେଠାରେ ଉକ୍ତ ମଠ ବିଦ୍ୟମାନ ଅଛି । ମଧୁପୁରଠାରେ ଥିବା ଉକ୍ତ ମଠର ଜମିରୁ ଧାନ ଏବେ ମଧ୍ୟ ପାଣ୍ଡିତପଡ଼ା ମଠକୁ ଆସେ ।

କବି ନିଜ ଜନ୍ମସ୍ଥାନ ନୟାଗଡ଼ ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ପଡ଼ୋଶୀ ରାଜା ଯଥା :- ଘୁମୁସର, ଦଶପଲ୍ଲା, ଚକଟି ପ୍ରଭୃତି ରାଜ୍ୟର ଅଧିପ-ମାନଙ୍କ ଆଶ୍ରୟ ଲାଭ କରିଥିବାର କେତେକ ଗ୍ରନ୍ଥରେ ଉଲ୍ଲେଖ କରି ଅଛନ୍ତି । 'ଯୁଗଳ ରସାମୃତ ଲହରୀ' କାବ୍ୟର ୫୭ ଛାନ୍ଦରେ କବି ଏ ବିଷୟରେ ସୂଚନାଦେଇ ଲେଖିଛନ୍ତି ।

"ନୂଆଗଡ଼ ରାଜ୍ୟେ ପୂର୍ବାଶ୍ରମ ଯେ ମୋହର ।
କିଛିଦିନ ମାଧକ ରହିଲି ଘୁମୁସର ॥
ଦଶପଲ୍ଲୀ ଭଞ୍ଜରାଜା ସଖ୍ୟ ପ୍ରେମେ ମୋତେ ।
ବହୁ ସମ୍ଭାବନାରେ ରଖିଲେ ବର୍ଷ କେତେ ॥
କଟକ ନିକଟ ଦାମୋଦରପୁର ନାମେ ।
ଭୃଗବର୍ଷ ରହିଲି ମାଧକ ସେ ସ୍ଥାନେ ॥
ତଦୁତ୍ତରେ ମଧୁପୁର ରାଜ୍ୟେ ଅଛି ଏବେ ।
ବ୍ରହ୍ମଚର୍ଯ୍ୟ ଆଶ୍ରମତ ମୋହର ଦଇବେ" ॥

(ଯୁଗଳ ରସାମୃତ ଲହରୀ ଛାନ୍ଦ-୫୭)

ମଧୁପୁର ଅନ୍ତର୍ଗତ ଖରଳେ ଗ୍ରାମରେ ସଦାନନ୍ଦ ମଧୁପୁର ରାଜାଙ୍କ ପୃଷ୍ଠପୋଷକତାରେ ଏକ ମଠ ସ୍ଥାପନ କରିଥିଲେ ଓ ରାଜାଙ୍କଠାରୁ ମଠର ଖର୍ଚ୍ଚ ନିମନ୍ତେ ୪୦ ମାଣ ଜମି ଜାଗିର ସ୍ୱରୂପ ପ୍ରାପ୍ତ ହୋଇଥିଲେ । 'ରଣସିଂହବାଟି' ମୌଜାରେ ବର୍ତ୍ତମାନ ସୁଦ୍ଧା ଏହି ଜମି ରହିଅଛି । ସଦାନନ୍ଦ ପ୍ରତିବର୍ଷ କାର୍ତ୍ତିକ ପଞ୍ଚମୀକୁ ମଧୁପୁର ଯାଉଥିବା କିମ୍ବଦନ୍ତୀ ଅଛି । କବି

ମଧୁପୁରରେ "ଯୁଗଳ ରସାମୃତ ଲହରୀ" ଗ୍ରନ୍ଥ ରଚନା କରିବା ସମୟରେ ଅର୍ଥାତ୍ ଖ୍ରୀ:ଅ ୧୭୮୦ ରେ ଘନଶ୍ୟାମ ଧୀରନରେନ୍ଦ୍ର ମଧୁପୁରର ରାଜା ଥିଲେ । ସେ କଟକଠାରେ ମରହଟ୍ଟା ସୁବେଦାର ରାଜାରାମ ପଣ୍ଡିତ ଦ୍ୱାରା ଅଟକ ହୋଇଥିବାରୁ କବି ବ୍ୟାକୁଳ ହୃଦୟରେ ତାଙ୍କ ମୁକ୍ତି ନିମିତ୍ତ ନିଜ ଇଷ୍ଟଦେବଙ୍କୁ ପ୍ରାର୍ଥନା କରିଥିଲେ (୩୧) । କବି ମଧୁପୁରରେ ମହନ୍ତ ଭାବରେ ଥିବା ସମୟରେ ଉକ୍ତ ମଠରେ ଥିବା ଶ୍ରୀ ରସିକରାଜ ବିଗ୍ରହଙ୍କ ନିକଟରେ ଶ୍ରୀରାଧା ବିଗ୍ରହ ପ୍ରତିଷ୍ଠାକରିବା ପାଇଁ ବିଶେଷ ଉଦ୍ୟମ କରିଥିଲେ (୩୨) ।

"ମୋ ମଠ ଅଧିପ ସେ ଯେ ମୋହର ଠାକୁର,
ଶ୍ରୀରାଧା ବିଜେ କରାଇବା ନିକର ॥
ଏଣୁ ଯେଣି ଏ ଗ୍ରନ୍ଥରେ ବିହିତ ଆକଟ,
ସତେ କେବେ ଦେଖିବି ମୁଁ ପ୍ରଭୁଙ୍କ ସ୍ୱରୂପ ॥
ସତେ କେବେ ଦେଖିବି ସେ ହୋଇବେ ଯୁଗଳ,
ରାଧାକାନ୍ତ ନାମ ଯାର ସେହିତ ମୋ ମୂଳ ॥

(ଯୁଗଳ ରସାମୃତ ଲହରୀ-୫୭ ଛାନ୍ଦ)

ମଧୁପୁର ରାଜାଙ୍କ ପୃଷ୍ଠପୋଷକତାରେ ପ୍ରତିଷ୍ଠିତ ଏହି ମଧୁପୁର ମଠ ଓ ମନ୍ଦିରର ପରିଚାଳନା ଦାୟିତ୍ୱ ରାଜା ନିଜେ ନେବାକୁ ଚାହିଁବାରୁ କବି ଧୃତ୍ତରେ ଠାକୁର 'ରସିକରା' ମୂର୍ତ୍ତି ଧରି ଉକ୍ତ ରାଜ୍ୟ ତ୍ୟାଗ କରିଥିଲେ ଓ କବି ଅଭିମନ୍ୟୁଙ୍କ ଜନ୍ମସ୍ଥାନ ଯାଜପୁର ନିକଟସ୍ଥ 'ଗୋକଳକୁଣ୍ଡ' ଗ୍ରାମର 'ବାଲିଆ' ଜମିଦାରୀରେ ପ୍ରବେଶ କରିଥିଲେ (୩୩) । ଏହା କବି ଅଭିମନ୍ୟୁଙ୍କର ପୈତୃକ ଜମିଦାରୀ ଥିଲା ଓ ଏହା ହରିପୁର ବାଲିଆ ନାମରେ ପରିଚିତ ଥିଲା (୩୪) ।

---

(୩୧) ଯୁଗଳ ରସାମୃତ ଲହରୀ- ସଦାନନ୍ଦ- ୫୭ ଛାନ୍ଦ, ଓଡ଼ିଶା ମ୍ୟୁଜିୟମସ୍ଥ ପୋଥିବିଭାଗରୁ ସଂଗୃହୀତ Cy. 262 ।

(୩୨) ଭକ୍ତି ରସାମୃତ ଲହରୀ- ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଅପ୍ରକାଶିତ । ଓଡ଼ିଶା ମ୍ୟୁଜିୟମ OL/608 Cy. 92 ।

(୩୩) ଓଡ଼ିଆ ସାହିତ୍ୟର ଇତିହାସ- ୩ୟ ଭାଗ ପୃ-୩୩୯ ।

(୩୪) ଓଡ଼ିଆ ସାହିତ୍ୟର ଇତିହାସ- ୪ର୍ଥ ଭାଗ ପୃ-୧୯୭ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

କବି ସଦାନନ୍ଦ "ମହନ୍ତ ହୋଇ ସାଧୁଚରଣ ଦାସ ନାମ ଗ୍ରହଣ କରିଥିଲେ । ବାଲିଆରେ ରହି ଯଜ୍ଞାନୁଷ୍ଠାନ କରିବାରୁ ଖ୍ରୀ:ଅ ୧୭୫୭ ରେ ପ୍ରସିଦ୍ଧ କବି ଅଭିମନ୍ୟୁ ସାମନ୍ତସିଂହାର ଜନ୍ମଗ୍ରହଣ କରିଥିଲେ । ସଦାନନ୍ଦ, ଅଭିମନ୍ୟୁଙ୍କ ବାଲ୍ୟକାଳରେ ଶିକ୍ଷାଗୁରୁ ଓ ଯୌବନରେ ଦୀକ୍ଷାଗୁରୁ ଥିଲେ" (୩୫) । "ପରବର୍ତ୍ତୀ କାଳରେ ଅଭିମନ୍ୟୁଙ୍କ ସହିତ ମନୋମାଳିନ୍ୟ ଘଟିବାରୁ ସଦାନନ୍ଦ ବାଲିଆ ପରିତ୍ୟାଗ କରିଥିଲେ" (୩୬) ।

କବି 'ଭଗବତ୍ ଗୀତା'ର ଅନୁବାଦ ସମୟରେ ଗଞ୍ଜାମ ଜିଲ୍ଲାର ଚିକିଟିରେ ଥିଲେ (୩୭) । ତେଣୁ ଉକ୍ତ ଅନୁବାଦରେ ସେ ନିଜକୁ 'ଚିକିଟି କବିସୂର୍ଯ୍ୟ ବ୍ରହ୍ମା' ବୋଲି ପ୍ରକାଶ କରିଛନ୍ତି । କିଛି କାଳପରେ ବାଲିଆରୁ କଟକ ଜିଲ୍ଲା ଅନ୍ତର୍ଗତ ମହାନଦୀର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ବୃନ୍ଦୋଳ ଗ୍ରାମସ୍ଥ ପବନପଡ଼ାକୁ ଆସି ସେଠାରେ ସ୍ଥାନୀୟ ଜମିଦାର କାନୁନ୍‌ଗୋଙ୍କ ଆଶ୍ରୟରେ ରହିଥିଲେ । ପବନପଡ଼ା ନିକଟସ୍ଥ 'ଡ଼ାବଲ' ଗ୍ରାମର ଏକ ବିସ୍ତୃତ ପଡ଼ିଆରେ ଏକ କୁଟୀର ନିର୍ମାଣ କରି ସେଠାରେ ରସେଶ୍ୱରୀ ରସିକବିହାରୀଙ୍କୁ ପ୍ରତିଷ୍ଠା କଲେ । ଭିକ୍ଷାଦ୍ୱାରା ଏବଂ ଜମିଦାରଙ୍କ ସାହାଯ୍ୟ ଦ୍ୱାରା ମଠଟି ଚଳୁଥିଲା । ସେତେବେଳେ ଡ଼ାବଲ ଗ୍ରାମ ବେଛୁପରି ମୌଜା ଥିଲା । ପରେ କଣ୍ଡରା ପ୍ରଭୃତି ହରିଜନ ଜାତିର କେତେକ ଲୋକ ବସବାସ କରି ସେଠାରେ ରହିଲେ । ଜମିଦାରଙ୍କ ବଂଶ କ୍ରମେ ସଦାନନ୍ଦଙ୍କ ପ୍ରତି ଆକୃଷ୍ଟ ହୋଇ ଉକ୍ତ ବିସ୍ତୀର୍ଣ୍ଣ ପ୍ରାନ୍ତରଟିକୁ ମଠକୁ ଦାନକଲେ । ବିଗ୍ରହମାନଙ୍କ ସେବା ପୂଜା ଲାଗି କିଛି ଜମି ମଧ୍ୟ ଖଞ୍ଜିଦେଲେ । ମଠଟି ସଦାବ୍ରତ ମଠ ଥିବାରୁ ଓ ସଦାନନ୍ଦ ପଣ୍ଡିତ ଏବଂ କବି ଥିବାରୁ କ୍ରମେ ମଠକୁ ବହୁ ଭକ୍ତ ଓ ସାହିତ୍ୟ ରସିକ ଆସିବାକୁ ଲାଗିଲେ (୩୮) ।

---

(୩୫) ଖୁରୁଧା ଇତିହାସ-କେଦାରନାଥ ମହାପାତ୍ର ପୃ-୨୧୦ ।

(୩୬) ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ବିନାୟକ ମିଶ୍ର । ପୃ-୧୧୪

(୩୭) ଓଡ଼ିଆ ସାହିତ୍ୟର ଇତିହାସ-୩ୟ ଭାଗ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ପୃ-୩୩୭

(୩୮) ଓଡ଼ିଆ ସାହିତ୍ୟର ଇତିହାସ- ୩ୟ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । ପୃ-୩୪୦

ମଧୁପୁର ମଠରୁ ଆସିବା ପରେ ସଦାନନ୍ଦ ଡାବଲ ଗ୍ରାମସ୍ଥ ମଠର ଅଧିକାରୀ ପଦ ଜମିଦାର କାନୁନ୍‌ଗୋଙ୍କ ଠାରୁ ପ୍ରାପ୍ତ ହୋଇ 'ମହନ୍ତାଇ' କଲେ । ସେହିଦିନରୁ ସାଧୁଚରଣ ଦାସ 'ଅଧିକାରୀ ସାଧୁଚରଣ ଦାସ' ହୋଇଲେ (୩୯) । ମଠର ନାମ 'ରସେଶ୍ୱରୀ ରସିକରା ମଠ' ଏବେବି ବିଦ୍ୟମାନ । ରସେଶ୍ୱରୀ ରସିକାର (ରାଧାକୃଷ୍ଣ) ଯୁଗଳମୂର୍ତ୍ତି ମଧ୍ୟରୁ ରାମେଶ୍ୱରୀ ପାଷାଣ ବିଗ୍ରହ ଓ ରସିକରା ଧାତୁ ବିଗ୍ରହ । ଷଡ଼ଭୁଜ ଚୈତନ୍ୟ କାଷ୍ଠମୟ ବିଗ୍ରହ । ମଠରେ ସଦାନନ୍ଦ ଗୌର ଗଦାଧର ମୂର୍ତ୍ତି ମଧ୍ୟ ପ୍ରତିଷ୍ଠା କରି-ଅଛନ୍ତି । ଏହି ଯୁଗଳ ରାଧାକୃଷ୍ଣ ବିଗ୍ରହଙ୍କ ପ୍ରସଙ୍ଗରେ କବି 'ମୋହନ-କଳ୍ପଲତା' ରେ ବର୍ଣ୍ଣନା କରିଅଛନ୍ତି । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏ ସମ୍ପର୍କରେ ମଧ୍ୟ ଲେଖିଛନ୍ତି— 'ମୂର୍ତ୍ତି ଶାସ୍ତ୍ର ପ୍ରମାଣେ । ଦେଢହସ୍ତ' ଉଚ୍ଚରେ ବା ଉଚ୍ଚ । ଠାକୁରଙ୍କ 'ଭୋଗାବଶେଷ' ସେବାକରି ସେ ତୃପ୍ତି ଲାଭକରୁଥିଲେ (୪୦) ।

"ରସେଶ୍ୱରୀ ରସିକରା ମୋହର ସୁଖ ପସରା
ମୋ ମଠେ ବିଜୟେ ଧରି ମୋହନ ମୂର୍ତ୍ତି ।
ଉଚ୍ଚରେ ସେ ଦେଢ଼ହସ୍ତ ଶିଳ୍ପୀ ପ୍ରମାଣେ ପ୍ରଶସ୍ତ
ସେହି ଧନ ଜନ ସର୍ବ ସୁଖ ସମ୍ପତ୍ତି ॥
କବିସୂର୍ଯ୍ୟବ୍ରହ୍ମା ବଦନ୍ତି
ତାଙ୍କ ଭୋଗ ଅବଶେଷାଶନେ ମୁଁ ତୃପ୍ତି ॥ ୪୫
(ମୋହନକଳ୍ପଲତା-୩୭ ଛାନ୍ଦ) (୪୧)

ଉକ୍ତ ପବିତ୍ରପଡ଼ା ମଠରେ ଏବେ ମଧ୍ୟ କବିଙ୍କ ସମାଧି ଅବସ୍ଥିତ । ପ୍ରତିବର୍ଷ ପୌଷ ଅମାବାସ୍ୟା ବା ବକୁଳ ଅମାବାସ୍ୟାରେ ଏଠାରେ କବିଙ୍କ ତିରୋଧାନ ମହୋତ୍ସବ ପାଳିତ ହୋଇ ଆସୁଛି ।

ରସେଶ୍ୱରୀ ରସିକରାଙ୍କ ମଠରେ ଜନ୍ମାଷ୍ଟମୀ ଦିନ ନୂଆ ଚୂଡ଼ା ଓ ରାଧାଷ୍ଟମୀ ଦିନ ନବାନ୍ନ ଭୋଗ ଲାଗେ । ଦୋଳପର୍ବରେ ରସେଶ୍ୱରୀ-ରସିକରା

(୩୯) ଓ (୪୦) ଓଡ଼ିଆ ସାହିତ୍ୟ ଇତିହାସ - ୩ୟ ଭାଗ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । ପୃ-୩୪୦ ଓ ୩୪୧

(୪୧) ମୋହନ କଳ୍ପଲତା- ସଦାନନ୍ଦ (ଅପ୍ରକାଶିତ) ।

ବାହାର ହଜେ ହୁଅନ୍ତି । ରାମନବମୀ ଯାତ୍ରା ମଧ୍ୟ ମହା ଆଡ଼ମ୍ବରରେ ପାଳିତ ହୁଏ । ସ୍ୱୟଂ ସଦାନନ୍ଦ ରାମଲୀଳାର ନବଦିନ ଯାତ୍ରାରେ ବୋଲିହେବା ପାଇଁ ଦିନକୁ ପାଞ୍ଚଗଣ୍ଡା ବା କୋଡ଼ିଏଟି ଗୀତ ରଚନା କରିଥିଲେ । ନଅଦିନକୁ ୧୮୦ଟି ଗୀତ ପ୍ରତିଦିନ କୋଡ଼ିଏଟି ହିସାବରେ ବୋଲିଯାଏ । ଏହି ଗୀତ-ଗୁଡ଼ିକ ହିନ୍ଦୀ ଓ ଓଡ଼ିଆ ମିଶ୍ରିତ ଭାଷାରେ ରଚିତ ହୋଇଥିବା ଶୁଣାଯାଏ । ଏବେ ମଧ୍ୟ ଉକ୍ତ ଗୀତଗୁଡ଼ିକ ଶୁଣିବାକୁ ମିଳେ ।

କବି ତୀର୍ଥାଟନରେ ଯାଇ ନବଦ୍ୱୀପ, ବୃନ୍ଦାବନ ପ୍ରଭୃତି ବହୁ ତୀର୍ଥ ଦର୍ଶନ କରିଥିବା ବିଷୟ 'ପାଟରତ୍ନାବଳୀ'ରେ ସୁବିସ୍ତୃତ ଭାବରେ ବର୍ଣ୍ଣନା କରି ଯାଇ ଅଛନ୍ତି ।

କବିଙ୍କ ସମ୍ପର୍କରେ ଅଧିକ ତଥ୍ୟ ସଂଗ୍ରହ ନିମନ୍ତେ କବିଙ୍କ ପାକ୍ଷିତ-ପଡ଼ାକୁ ବ୍ୟକ୍ତିଗତ ଭାବରେ ଯିବା ସମୟରେ ସେଠାର ବର୍ତ୍ତମାନ ମହନ୍ତ ଓ ଗ୍ରାମବାସୀଙ୍କ ନିକଟରୁ ମିଳିଥିବା ତଥ୍ୟ ନିମ୍ନରେ ସୂଚିତ ହେଲା ।

"ଅସୁରେଶ୍ୱର ସ୍ଥିତ ପାକ୍ଷିତପଡ଼ା ଏହାର ରେଭିନିଉ ଗ୍ରାମ 'ଡାବଲ' ଅଟେ । ସଦାନନ୍ଦ ଏଠାକୁ ଆସି ପ୍ରଥମେ ଏକ ତମାଳଗଛ (ଏକ ଫଳବୃକ୍ଷ, ଯାହାର ଫଳ ଖଟାଳିଆଗେ) ମୂଳରେ ଗୋଟିଏ ଛୋଟ ଗୃହ-ଘର କରି ରହିଥିଲେ । ଏବେ ମଧ୍ୟ ଉକ୍ତ ତମାଳଗଛ ରହିଅଛି । କବି ଉକ୍ତ ଗୃହଘରେ ରାସେଶ୍ୱରୀ ରସିକରାୟଙ୍କୁ ସ୍ଥାପନ କରିଥିଲେ । 'ରସିକରାୟ' ମୂର୍ତ୍ତି ମୁଗୁନି ପଥରରେ ତିଆରି । ଉଚ୍ଚତା ଫୁ ୨-୩ଇଞ୍ଚ । ଦୁଇ ଭୁଜ, ମୁରଲୀଧାରୀ । ପାର୍ଶ୍ୱରେ ପିତଳନିର୍ମିତ ରାସେଶ୍ୱରୀ ବିଗ୍ରହ । ଏହାଛଡ଼ା କାଠନିର୍ମିତ ନିତାଇ-ଗୌର ମୂର୍ତ୍ତି ମଧ୍ୟ ଅଛନ୍ତି । କେବଳ ଦୋଳଉତ୍ସବରେ ଉକ୍ତ ରାସେଶ୍ୱରୀ ରସିକରାୟ ବାହାରକୁ ବାହାରନ୍ତି ନଚେତ୍ ଅନ୍ୟ ପର୍ବରେ କେବଳ ନିତାଇଗୌର ବାହାରନ୍ତି ।

ବର୍ତ୍ତମାନ ଉକ୍ତ ବିଗ୍ରହମାନ ଏକ ମନ୍ଦିର ମଧ୍ୟରେ ସ୍ଥାପନା କରା-ଯାଇଛନ୍ତି । ବର୍ତ୍ତମାନ ମହନ୍ତଙ୍କ ଗୁରୁ ଅଧିକାରୀ ସାଧୁଚରଣ ଦାସ ଏହି ଇଟାନିର୍ମିତ ମନ୍ଦିର କରିଥିବା ବିଷୟ ଉକ୍ତ ମହନ୍ତଙ୍କ ଠାରୁ ପ୍ରକାଶ । ବର୍ତ୍ତମାନ ଜୀବିତ ଶ୍ରୀ ସର୍ବେଶ୍ୱର ଦାସ ଏହି ମଠର ନବମ ମହନ୍ତ । ତାଙ୍କ ଉକ୍ତ ଅନୁଯାୟୀ ସେଠାରେ ଆଠଗୋଟି ସମାଧି ମଧ୍ୟ ଅଛି । ଉକ୍ତ ଆଠଗୋଟି

ସମାଧି ମଧ୍ୟରୁ ଅପେକ୍ଷାକୃତ ବଡ଼ ସମାଧିଟି କବି ସଦାନନ୍ଦଙ୍କର ବୋଲି ପ୍ରକାଶ ।

ଏହାଛଡ଼ା ବର୍ତ୍ତମାନ ମହନ୍ତଙ୍କ ପାଖରେ ଗଚ୍ଛିତ ଥିବା କାଗଜ ପତ୍ରରୁ ଜଣାଯାଏ, ମଧୁପୁର ରଜା 'ରସିକର ଠାକୁରଙ୍କ' ନାମରେ ୫୯ ଏକର ଭୂଷଜମି ଖଞ୍ଜାକରିଥିଲେ । ଏ ସହାନ୍ତରେ ପୂର୍ବତନ ମହନ୍ତ ରାଧାଚରଣ ଦାସଙ୍କ ନାମରେ ମଧ୍ୟ ଏକ ପଞ୍ଚା ସେଠାରେ ଗଚ୍ଛିତ ଅଛି (୪୨) । ପ୍ରତି ବହୁଳ ଅମାବାସ୍ୟା ଦିନ ପୂର୍ବରୁ ଅଷ୍ଟପ୍ରହରୀ ହେଉଥିଲା । କିନ୍ତୁ ଏବେ କେବଳ ମହୋତ୍ସବ ହେଉଅଛି । ମହନ୍ତ ସର୍ବେଶ୍ୱର ଦାସଙ୍କ ଠାରୁ ପ୍ରକାଶ ଯେ ଉକ୍ତଦିନ କବି ସଦାନନ୍ଦଙ୍କର ମହାପ୍ରୟାଣ ଘଟିଥିଲା । ସଦାନନ୍ଦଙ୍କର କାଷ୍ଠନିର୍ମିତ ଏକ ହଳ ପାଦୁକା ମଧ୍ୟ ଉକ୍ତ ମଠର ଅନ୍ୟ ଏକ ସ୍ଥାନରେ ପୂଜା ହେଉଛି । ବର୍ତ୍ତମାନ ଉକ୍ତ ମଠ 'କବିସୂର୍ଯ୍ୟ ମଠ' ନାମରେ ପରିଚିତ ।

ପୁନଶ୍ଚ ମହନ୍ତ ସର୍ବେଶ୍ୱରଙ୍କ ଠାରୁ ପ୍ରକାଶ ଯେ, ପୂର୍ବେ ସେଠାରେ କାନୁନ୍‌ଗୋଙ୍କ ବଂଶଧରମାନେ ପୁରୁଷାନୁକ୍ରମେ ବସବାସ କରୁଥିଲେ । କିନ୍ତୁ ବର୍ତ୍ତମାନ ସେମାନେ ଅନ୍ୟତ୍ର ଅବସ୍ଥାନ କରୁଅଛନ୍ତି ଓ ସେଠାକାର ବର୍ତ୍ତମାନ ଅଧିବାସୀ ହେଉଛନ୍ତି 'ତେଲି ଓ ଗୁଡ଼ିଆ' ଜାତିର ଲୋକେ ।

## କବିଙ୍କ ବ୍ୟକ୍ତି ଜୀବନର ବୈଶିଷ୍ଟ୍ୟ

ରୀତିକାଳୀନ କାବ୍ୟକାରଗଣଙ୍କ ଦୁଇଟି ପ୍ରବୃତ୍ତି ପରିଲକ୍ଷିତ ହୋଇଥାଏ । କେତେକ କବି ରୀତିବଦ୍ଧ ହୋଇ ରସ ଅଳଙ୍କାର, ନାୟିକା-ଭେଦ ନଖ ଶିଖ ବର୍ଣ୍ଣନକୁ ନିଜର କାବ୍ୟ ସର୍ବସ୍ୱରୂପେ ଗ୍ରହଣ କରି ନେଇଥିଲେ । ଦ୍ୱିତୀୟ ପ୍ରକାରର କବିବୃନ୍ଦ ଭକ୍ତିରସକୁ ନିଜର କାବ୍ୟତତ୍ତ୍ୱ ରୂପେ ଗ୍ରହଣକରି ନେଇଥିଲେ । କିନ୍ତୁ କବି ସଦାନନ୍ଦ ଏହି ଦୁଇପ୍ରକାର କବିବୃନ୍ଦଙ୍କ ଠାରୁ ଭିନ୍ନ ତଥା ବ୍ୟାପକ ପ୍ରଣାଳୀ ଗ୍ରହଣ କରିଥିଲେ । ଏହି କବି ରାଜ ପ୍ରଶଂସାତ୍ମକ କାବ୍ୟ, କାବ୍ୟଶାସ୍ତ୍ର ସମ୍ବନ୍ଧୀ ପଦ୍ୟଗ୍ରନ୍ଥ ଓ କୃଷ୍ଣ-ଚରିତ୍ର ଉପରେ ଆଧାରିତ କାବ୍ୟମାନ ରଚନା କରୁଥିଲେ ।

---

(୪୨) "Record of Rights finally framed and published U/S 103A (2) of the Bengal Tenancy Act VIII of 1885 on 1. 2. 1911 in favour of 'Rasikara Thakur bije Kadalipara, Sevak, Radhacharan Das.

## ବେଶ ଭୂଷା

ମୋଗଲ ମରହଟ୍ଟା ସମୟର ଅନ୍ୟ କାବ୍ୟକାରଙ୍କ ବେଶଭୂଷା ସହିତ ତୁଳନାକଲେ ଜଣାଯାଏ କବି ସଦାନନ୍ଦଙ୍କର ବେଶଭୂଷା ଥିଲି ସରଳ ଏବଂ ବୈରାଗୀ ସୁଲଭ । ନିଜର ବେଶଭୂଷା ସମ୍ପର୍କରେ ସେ 'ଯୁଗଳ ରସାମୃତ ଭଉଁରୀ' ର ୩୧ ଛାନ୍ଦସ୍ଥ ୩୪ ପଦରେ ଉଲ୍ଲେଖ କରିଅଛନ୍ତି—

"କଲି ତିଳକଆ କବିସୂର୍ଯ୍ୟ କଉପିନଆ ବାଳମୁକୁଳ ହେ" ୩୪ (୪୩) ।

କବି ସଦାନନ୍ଦ ଯେ ସମୟର ବେଶବିନ୍ୟାସ ଠାକୁର ରାଜା ବୀରକେଶରୀ ଦେବ, ଦଶପଲ୍ଲା ଭଞ୍ଜରାଜା ଓ ମଧୁପୁର ରାଜା ଘନଶ୍ୟାମ ନରେନ୍ଦ୍ର ପ୍ରଭୃତି ପ୍ରତିଷ୍ଠିତ ଆଶ୍ରୟଦାତାଙ୍କ ଠାରୁ ପାଇଥିବା ଅନୁମାନ କରାଯାଇ ପାରେ (୪୪) । କାରଣ ଏଥିପୂର୍ବରୁ ରାଜଦରବାରର ଚିତ୍ର ସ୍ୱତଃ ଆମର ସ୍ମୃତିପଟରେ ଉଦ୍‌ଭାସିତ ହୁଏ । କବିଙ୍କ ସମୟରେ ରାଜଦରବାର ଥିଲି ଏହିପରି - ରାଜା ଆଭରଣଯୁକ୍ତ ଆସନରେ ଉପବେଶନ ପୂର୍ବକ ନିଜର ଅର୍ଦ୍ଧ ବୃତ୍ତାକାର ଦରବାରୀ ଓ କବିଙ୍କର ପ୍ରଶଂସାରେ ଆତ୍ମବିସ୍ମୃତ ହେଉଥିଲେ । ରାଜକବିବୃନ୍ଦ ଶୁଦ୍ଧ ଶୃଙ୍ଗାରଯୁକ୍ତ ଗୀତ ଶୁଣାଇ ରାଜାଙ୍କର ବାସନା ଚରିତାର୍ଥ କରୁଥିଲେ । କବିତାର ବିଷୟବସ୍ତୁ ଥିଲି ନୃତ୍ୟରତା ନାୟିକାର ଅଙ୍ଗ ସୌଷ୍ଠବ ବର୍ଣ୍ଣନା କିମ୍ବା କୌଣସି ବିରହିଣୀ ନାୟିକାର ବିଚ୍ଛେଦକାଳୀନ କାତର ପ୍ରାର୍ଥନା । ରାଜନ୍ୟବର୍ଗ କବିଙ୍କର ଏଭଳି ପଦରଚନାରେ ବିହ୍ୱଳିତ ହୋଇ କବିମାନଙ୍କୁ ବସ୍ତ୍ର, ଭୂଷଣ, ପଦବୀ ତଥା ଗ୍ରାମ ପ୍ରଭୃତି ଦାନ କରୁଥିଲେ । ଏଭଳି ଦରବାର ମଧ୍ୟ କବି ସଦାନନ୍ଦଙ୍କ ଭାଗ୍ୟରେ ନିଶ୍ଚୟ ପଡ଼ିଥିବ । ଯାହାଫଳରେ ସେ କବିସୂର୍ଯ୍ୟ ବ୍ରହ୍ମା ପଦବୀ ପ୍ରାପ୍ତହୋଇ ପାରିଥାନ୍ତି । ମାତ୍ର ଉକ୍ତ ଉକ୍ତିର ଯଥାର୍ଥତା ଥିଲେ ମଧ୍ୟ ଓ କବିଙ୍କ କାବ୍ୟ ସମୂହରେ ଅଳଙ୍କାର ପ୍ରେମ, ଶୃଙ୍ଗାର, ଲୋଭ ଆଦିର ଚିତ୍ର ପ୍ରଦର୍ଶିତ ହୋଇଥିଲେ ହେଁ କବିଙ୍କର ବ୍ୟକ୍ତିଗତ ବେଶଭୂଷାରେ ଏ ସବୁର ପ୍ରତିଫଳନ ଘଟିନାହିଁ । କବି ସ୍ୱକୃତ 'ଯୁଗଳ ରସାମୃତ ଭଉଁରୀ'ରେ ନିଜକୁ 'କଲିତିଳକଆ',

---

(୪୩) ଯୁଗଳ ରସାମୃତ ଭଉଁରୀ- ଅପ୍ରକାଶିତ କାବ୍ୟ । ଓଡ଼ିଶା ମ୍ୟୁଜିୟମସ୍ଥ ପୋଥିବିଭାଗରୁ ସଂଗୃହୀତ No Cy-1006

(୪୪) ଯୁଗଳ ରସାମୃତ ଲହରୀ- ଓଡ଼ିଶା ମ୍ୟୁଜିୟମସ୍ଥ ପୋଥିବିଭାଗରୁ ପ୍ରାପ୍ତ Cy-262

'କଉପୁଚିଆ', 'ବାଳମୁକୁନ୍ଦ' ପ୍ରଭୃତି ଆଖ୍ୟା ଦେଇଥିବା ହେତୁ ସେ ବାଲ୍ୟାବସ୍ଥାରେ ବହୁଦୂରରେ ଥିବା ଅନୁମାନ କରିବା ସ୍ୱାଭାବିକ । ଅବଶ୍ୟ କବି ଶୈଶବରୁ ବୈଷ୍ଣବ ଧର୍ମ ଗ୍ରହଣ କରି ଏଭଳି ବେଶଭୂଷାରେ କାଳାତିପାତ କରୁଥିବାର ଉଲ୍ଲେଖ ନାହିଁ । ଏଣୁ କବି ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲାପରେହିଁ ସନ୍ନ୍ୟାସୀ ବେଶରେ ଭୂଷିତ ହୋଇଥିବା ମନେହୁଏ ।

## ପ୍ରକୃତି ଓ ସ୍ୱଭାବ

କବି ସଦାନନ୍ଦ ସ୍ଥଳବିଶେଷରେ ନିଜର ପ୍ରକୃତିର ସାମାନ୍ୟ ସୂଚନା ଦେଇଅଛନ୍ତି । ନିଜକୁ କୋପୀ, ଗୁମାନୀ, 'ପେଟବିକଳ', ପୂର୍ବଜନ୍ମରେ ମୁଁ ପଠାଣ' ଆଦି ଉଲ୍ଲେଖ କରିଅଛନ୍ତି (୪୫) । ମାତ୍ର କବିଙ୍କର ଏହା ଯଥାର୍ଥ ସ୍ୱଭାବ ନୁହେଁ । ସେ ଥିଲେ ରସିକ, ପଣ୍ଡିତ, ବନ୍ଧୁପ୍ରିୟ ଭକ୍ତକବି, କବିଙ୍କର ରସିକତା, ପାଣ୍ଡିତ୍ୟ ଓ ଭକ୍ତିଭାବ ତାଙ୍କର ସ୍ୱକୃତ ଗ୍ରନ୍ଥର ସ୍ତରେ ସ୍ତରେ ବିଦ୍ୟମାନ । ମଧୁପୁର ରାଜା ଘନଶ୍ୟାମ ନରେନ୍ଦ୍ର ବନ୍ଦୀଥିବା ବେଳେ କବିଙ୍କର ବ୍ୟାକୁଳତାରୁ ତାଙ୍କ ବନ୍ଧୁପ୍ରୀତିର ସ୍ପଷ୍ଟ ପ୍ରମାଣ ମିଳେ । ସଦାନନ୍ଦଙ୍କ ମିତ୍ରମଣ୍ଡଳୀ ଖୁବ୍ ବିସ୍ତୃତ ଥିଲା । 'ପାଠରତ୍ନାବଳୀ' ରେ ଓ୍ୱାର୍ଥାଟନ (୪୬) ସମ୍ପର୍କରେ ନିଜ ସହପାଠୀଙ୍କ ବିଷୟରେ କବି ଯାହା ଉଲ୍ଲେଖ କରିଅଛନ୍ତି ସେଥିରୁ ଏହାର ସୁସ୍ପଷ୍ଟ ପ୍ରମାଣ ମିଳେ ।

---

(୪୫) "ଭୂଗୀର୍ବାଣ କୁଳକଞ୍ଜ ଆଦିତ୍ୟ- କୋପୀ କବିସୂର୍ଯ୍ୟ ବ୍ରହ୍ମା କଥିତ" ॥ ୧୭ ॥ ଛାନ୍ଦ-୧୧

ମୁଁ ଆଳସ୍ୟେ ନ ଭଜଇ ହେ । ପୁଣି କବିସୂର୍ଯ୍ୟ ବ୍ରହ୍ମା ଗୁମାନ କହି ॥ ୧୯ ॥ ଛାନ୍ଦ-୪୭, (ଯୁଗଳ ରସାମୃତ ଲହରୀ) ।

'କଳିରେ ଭୁବନ ଭରିଲେ ମୋ ପ୍ରଭୁ ।
କବିସୂର୍ଯ୍ୟ ମୁଁ ପେଟବିକଳ ହେ" ॥ ୧୮ ॥ ଛାନ୍ଦ-୪୯
"ଭୂଗୀର୍ବାଣ ଏ କବିସୂର୍ଯ୍ୟ ବ୍ରହ୍ମା ବଦନ୍ତି
ପୂର୍ବ ଜନ୍ମରେ ମୁଁ ପଠାଣ ହେ" ॥ ୧୧ ॥ ଛାନ୍ଦ-୫୨
(ଯୁଗଳ ରସାମୃତ ଲହରୀ- କବି ସଦାନନ୍ଦ)

(୪୬) ପାଠରତ୍ନାବଳୀ- ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା (ଅପ୍ରକାଶିତ କାବ୍ୟ), ବାଣୀବିହାର ପୋଥିବିଭାଗରୁ ସଂଗୃହୀତ No. Cy/344 ପୃ-୪

କବି ନିର୍ଭୀକ ଓ ନୈଷ୍ଠିକ ବୈଷ୍ଣବ ଥିବାରୁ ସବୁ ବିଷୟରେ ଆପଣାର ସାଂପ୍ରଦାୟିକ ମାନଦଣ୍ଡ ପ୍ରୟୋଗ କରି ଭଲ ମନ୍ଦ ବିଚାର କରିଅଛନ୍ତି । ବ୍ରଜଲୀଳା ବା ବ୍ରଜରସ ଭିନ୍ନ କୌଣସି ରସକୁ ସେ ପସନ୍ଦ କରିନାହାନ୍ତି । 'ଯୁଗଳ ରସାମୃତ ଭଉଁରୀ' ରେ କବି ଉପେନ୍ଦ୍ର ଭଞ୍ଜ, ଲୋକନାଥ ବିଦ୍ୟାଧର, କୃଷ୍ଣ ଦାସ (କବି ଦୀନକୃଷ୍ଣ ଦାସ) ଭୂପତି ପଣ୍ଡିତ, ରାଜକବି ଦୀନବନ୍ଧୁ ପ୍ରଭୃତିଙ୍କୁ ଅତି ନିର୍ଭୀକ ଓ ସ୍ପଷ୍ଟ ଭାବରେ ସମାଲୋଚନା କରିଛନ୍ତି । ଉପେନ୍ଦ୍ର କୃଷ୍ଣ ଉପାସକ ନଥିବାରୁ କବି ତାଙ୍କୁ ପସନ୍ଦ କରିନାହାଁନ୍ତି । ଲୋକନାଥ ବିଦ୍ୟାଧରଙ୍କୁ 'ସଂସ୍କୃତପ୍ରେତ' ଉପାଧି ଦେଇ ନିନ୍ଦା କରିଅଛନ୍ତି । ତା'ଛଡ଼ା କୃଷ୍ଣ ଦାସ ଭଲ କବି ହେଲେ ମଧ୍ୟ କୃଷ୍ଣରସ ନ ଜାଣି ଥିବାରୁ କବିଙ୍କଦ୍ୱାରା ପ୍ରଶଂସିତ ହୋଇନାହାଁନ୍ତି । ଭୂପତି ପଣ୍ଡିତ ରସଆକରରେ ଭ୍ରମର ପରି ଉପରେ ବୁଲୁଛନ୍ତି କିନ୍ତୁ ଭିତରେ ମଜ୍ଜି ପାରିନାହାଁନ୍ତି । 'ବ୍ରଜେନ୍ଦ୍ର କୁମାର ରାଗ ହୃଦୟରେ ଦାଗ' ସ୍ୱରୂପ ଲାଗିଥିବାରୁ ଦୀନବନ୍ଧୁ ରାଜଙ୍କୁ 'ସୁକବିଗୁଣରତନ' ବୋଲି ଆଖ୍ୟା ଦେଇଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ସମସ୍ତ ରଚନା କୃଷ୍ଣରସାଶ୍ରିତ ହୋଇନଥିବାରୁ ସେ ସୁକବି ହେଲେ ମଧ୍ୟ ତାଙ୍କ ଶ୍ରମ ନିଷ୍ଫଳ ବୋଲି କହନ୍ତି (୪୭) ।

"ଉପଇନ୍ଦ୍ର ସୁକବି ନିତ୍ୟରସ ଅନୁଭବି ।
କୃଷ୍ଣ ଉପାସକ ନୋହି କି କାର୍ଯ୍ୟ ଏହି ଯେ ॥ ୫୪ ॥
କୁଞ୍ଜବନ ଆଦି ଠିକ ଦେଖାଦେବ ଉପାସକ ।
ଲୋକନାଥ ବିଦ୍ୟାଧର ସଂସ୍କୃତପ୍ରେତ ପ୍ରାୟେ ॥ ୫୫ ॥
କବି ଭଲି କୃଷ୍ଣଦାସ ନ ଜାଣଇ କୃଷ୍ଣ ରସ ।
ଭୂପତି ରସଆକର ମାତ୍ର ଭ୍ରମର ପ୍ରାୟେ ॥ ୫୬ ॥
କବି ଗୁଣରତନ ଦୀନବନ୍ଧୁ ରାଜ ଧନ୍ୟ ।
ବ୍ରଜେନ୍ଦ୍ର କୁମାର ରାଗ ଯା ହୃଦେ ଦାଗ ଯେ ॥ ୫୭ ॥
ଆଉ ଯେ ଯହିଁ ଅଛନ୍ତି ଯୋଡ଼ାଯୋଡ଼ି କରିଥାନ୍ତି ।
ବ୍ରହ୍ମା ସଙ୍ଗରେ କୁମାର ବାଦ ଲଗାଇ ଯେ ॥ ୫୮ ॥

---

(୪୭) ଯୁଗଳ ରସାମୃତ ଭଉଁରୀ- ଛାନ୍ଦ-୫୮, ଅପ୍ରକାଶିତ କାବ୍ୟ । ଛତିଶଗଡ଼ସ୍ଥିତ ଶ୍ରୀ ବନମାଳି ବିଶ୍ୱାଳଙ୍କ ନିକଟରୁ ଏହି ତାଳପତ୍ର ପୋଥି ସଂଗୃହୀତ ଓ ଅନ୍ୟ ଏକ ନକଲ ଓଡ଼ିଶା ମ୍ୟୁଜିୟମରେ ସୁରକ୍ଷିତ । Cy-1006

## ଶିକ୍ଷା ଓ ଅଧ୍ୟୟନ

ଉକ୍ତ ବ୍ରାହ୍ମଣ ବଂଶଜ କବିଙ୍କ ପୂର୍ବପୁରୁଷମାନେ ପଣ୍ଡିତ ଓ ଶାସ୍ତ୍ରଜ୍ଞ ଥିଲେ । ଅନୁକୂଳ ବାତାବରଣ ତାଙ୍କୁ ବାଲ୍ୟାବସ୍ଥାରେ ସୁଶିକ୍ଷା ଲାଭର ସୁବିଧା ଦେବା ସଙ୍ଗେ ସଙ୍ଗେ ଯୌବନାବସ୍ଥାରେ ମାତୃଭାଷା ଓ ସଂସ୍କୃତ ଭାଷାରେ ଉଚ୍ଚ ଶିକ୍ଷାଲାଭ ତଥା ବେଦ ପୁରାଣାଦିରେ ଅଧ୍ୟୟନ ପାଇଁ ସୁବିଧା ଦେଇଥିବା ଅନୁମାନ କରାଯାଏ । ଉତ୍କଳର ପ୍ରାଚୀନ ସାହିତ୍ୟ ତଥା ପୂର୍ବ ପ୍ରସିଦ୍ଧ କବି ମାନଙ୍କର କାବ୍ୟକବିତା ବିଶେଷତଃ ଭଞ୍ଜକାବ୍ୟ, ଭାଗବତ, ବ୍ରହ୍ମବୈବର୍ତ୍ତ, ପଦ୍ମ ଆଦି ବୈଷ୍ଣବ ପୁରାଣ, ବେଦ ଉପନିଷଦ ବ୍ରହ୍ମସଂହିତା, ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥ ଯଥା ବୈଷ୍ଣବ ଆଚାର୍ଯ୍ୟ ଓ ଗୋସ୍ୱାମୀମାନଙ୍କ ସଂସ୍କୃତ ଲିଖିତ ବହୁ ଗ୍ରନ୍ଥ କାବ୍ୟ ନାଟକ ଅଳଙ୍କାରାଦି, ବିଦ୍ୟାପତି ଚଣ୍ଡିଦାସ ଆଦିଙ୍କ କୃତିରେ ସେ ପାରଦର୍ଶୀ ଥିଲେ । ଏହା ବ୍ୟତୀତ ବଙ୍ଗଳା, ହିନ୍ଦୀ, ମରାଠୀ ଓ ପାର୍ଶୀ ଭାଷାରେ ଏବଂ ଯୁଦ୍ଧବିଦ୍ୟା ଓ ଆନୁଷଙ୍ଗିକ କଳାବିଦ୍ୟାରେ ମଧ୍ୟ ତାଙ୍କର ପ୍ରବେଶ ଥିବା ତାଙ୍କ କାବ୍ୟ-ସମୂହର ବିଦ୍‌ବିସ୍ତୁରୁ ପ୍ରମାଣିତ ହୁଏ ।

କବିଙ୍କ ଶିକ୍ଷା ଉଚ୍ଚଧରଣର ଥିଲା । ସଂସ୍କୃତରେ ଉଚ୍ଚଜ୍ଞାନ ଥିଲେ ମଧ୍ୟ ମହାଜନ ସୁଲଭ ଦୈନ୍ୟ ଦେଖାଇ କବି 'ସଂସ୍କୃତଜ୍ଞାନ ମୋର ନାହିଁ' ବୋଲି 'ବ୍ରଜଲୀଳାମୃତ ସମୁଦ୍ର'ରେ କହିଅଛନ୍ତି ।

"ସମସ୍ତ ଗୋସାଇଁ ମିଳିଲେ । ଦୈନ୍ୟ ଭଣ୍ଡାର ଲୁଟିନେଲେ ॥
ମୋହ ପାଇଁତ କିଛି ନାହିଁ । କି ଅବା କହିବଟି ମୁହିଁ ॥
ଯେବେ ବୋଲିବି ମୁଁ ପଣ୍ଡିତ । ଯେ କଥା ଅଟଇତ ସତ ॥
ଯେବେ ବୋଲିବି ମୁଁ ମୂରୁଖ । ସେ ଜଣା ଯାଉଛି ପ୍ରତ୍ୟକ୍ଷ ॥
ସଂସ୍କୃତ ଜ୍ଞାନ ମୋର ନାହିଁ । ପରାକୃତ ଗୀତ ବୋଲଇଁ ॥
ଯାହା ବୋଲିବି ସେ ଘଟିବ । କି ଦୈନ୍ୟ ମୋର ଯେ ସ୍ୱଭାବ ॥
ବିଷ୍ଠା କୃମିରୁ ମୁଁ ଯେ ହୀନ । ପାପୀମାନଙ୍କ ମୁଁ ରାଜନ ॥
କଳା ବସନ ବାନା ମୋର । ଉଡୁଛି ଅଛି ଘର ଘର ॥
ଏ ସଦାନନ୍ଦ କବିସୂର୍ଯ୍ୟ । ବ୍ରହ୍ମାର ନାହିଁ କେଉଁ କାର୍ଯ୍ୟ" ॥

(ବ୍ରଜଲୀଳାମୃତ ସମୁଦ୍ର, ଛାନ୍ଦ-୩୮)

ସଂସ୍କୃତ ଓ ଓଡ଼ିଆ ଭିନ୍ନ କବି ବଙ୍ଗଳା ଭାଷାରେ ମଧ୍ୟ କାବ୍ୟ-କବିତା ରଚନା କରିଥିବା ଦେଖାଯାଏ । 'କୀର୍ତ୍ତନଉଜ୍ଜଳ' କାବ୍ୟଟିକୁ କବି ବ୍ରଜବୋଲି ଭାଷାରେ ରଚନା କରିଅଛନ୍ତି । 'ସଙ୍ଗୀତ ସଦାନନ୍ଦ' ରେ କବି ସଂସ୍କୃତକୁ ପ୍ରାକୃତ ବନ୍ଧରେ ପ୍ରକାଶ କରିଥିବା ଚତୁର୍ଥ ଛାନ୍ଦର ୧୫ ପଦରେ ବର୍ଣ୍ଣିତ । କବି ତାଙ୍କ ଶିକ୍ଷା ଓ ଅଧ୍ୟୟନ ସମ୍ପର୍କରେ କେତେକ ଗ୍ରନ୍ଥରେ ସୂଚନା ଦେଇଅଛନ୍ତି (୪୮) ।

କବି ଶ୍ରୀକୃଷ୍ଣଙ୍କର ଅନନ୍ୟ ଭକ୍ତ ଥିଲେ । ଏହି ଭକ୍ତି ଫଳରେ କବି କୃଷ୍ଣ ଚରିତ ଉପରେ ଅଧିକାଂଶ କାବ୍ୟ ରଚନା ତଥା ଅନୁବାଦ କରି ପାରିଥିଲେ । ଯଦିଓ ସଦାନନ୍ଦ ପୂର୍ଣ୍ଣ ଭକ୍ତିମୟ କୃଷ୍ଣକାବ୍ୟ ରଚନା କରି-ନାହାଁନ୍ତି ଏହାର କାରଣ ହେଲା ଏହାଙ୍କର ବ୍ୟବହାରିକ ଜୀବନର ସ୍ୱରୂପ ତଥା ଶୁଦ୍ଧ ସାହିତ୍ୟିକ ରୁଚି । ପ୍ରାୟ ସମସ୍ତ ସମାଲୋଚକ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ସଦାନନ୍ଦ ଜଣେ ପଣ୍ଡିତ ଓ ଶାସ୍ତ୍ରଜ୍ଞ ଥିଲେ । ତାଙ୍କର ଅଧ୍ୟୟନ ଓ ଅଧ୍ୟାପନ ସୁଦୂର ପ୍ରସାରୀ ଥିଲା । ଏହା ତାଙ୍କର କାବ୍ୟ ସମୂହର ମୌଳିକ ରଚନା ତଥା ଅନୁବାଦ ଗ୍ରନ୍ଥାଦିରୁ ଉତ୍ତମ ରୂପେ ଜାଣି ହୁଏ । କବି ସଦାନନ୍ଦ କେତେକ ଦୁରୂହ ସଂସ୍କୃତ ଭକ୍ତି କାବ୍ୟକୁ ଅଧ୍ୟୟନ କରି ତାହା ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । ତାଙ୍କର ବ୍ରଜଲୀଳାମୃତ ସମୁଦ୍ର, ପାଠରତ୍ନାବଳୀ, ତତ୍ତ୍ୱତରଙ୍ଗିଣୀ, କୀର୍ତ୍ତନଉଜ୍ଜଳ, ବିଶ୍ୱମ୍ଭର ବିହାର ଉତ୍କୃଷ୍ଟ ସଂସ୍କୃତ ଭକ୍ତି କାବ୍ୟର ଅନୁବାଦ ମାତ୍ର । ସେ ଅନୁବାଦରେ ଯେଉଁ ମୌଳିକତା ପ୍ରଦର୍ଶନ କରିଅଛନ୍ତି ତାହା ପାଣ୍ଡିତ୍ୟ ନଥିଲେ ସମ୍ଭବ ହୋଇନ୍ଥାନ୍ତା । କବି ସଦାନନ୍ଦଙ୍କ ରଚିତ ସ୍ମରଦୀପିକା, ବାଳବୋଧିନୀ, ସଙ୍ଗୀତ ସଦାନନ୍ଦ ପାଠକଲେ ଜଣାଯାଏ କବି କାମଶାସ୍ତ୍ର, ସଙ୍ଗୀତଶାସ୍ତ୍ର ଆଦି ଉତ୍ତମ ରୂପେ ଅଧ୍ୟୟନ କରିଥିଲେ । 'ଯୁଗଳ ରସାମୃତ ଭଉଁରୀ' କବିଙ୍କ ଭାଷାତାତ୍ତ୍ୱିକ ଜ୍ଞାନର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

---

(୪୮) ଯୁଗଳ ରସାମୃତ ଲହରୀ- ଛାନ୍ଦ ୫୮, ପଦ ୭୪

(କ) ଯୁଗଳ ରସାମୃତ ଭଉଁରୀ- ଛାନ୍ଦ ୪୮, ପଦ ୫୪-୫୮ (ଅପ୍ରକାଶିତ)

(ଖ) ବ୍ରଜଲୀଳାମୃତ ସମୁଦ୍ର- ଛାନ୍ଦ ୩୮, ପଦ ୧୮୨-୧୮୮ (ଅପ୍ରକାଶିତ)

(ଗ) ତତ୍ତ୍ୱତରଙ୍ଗିଣୀ- (ଉତ୍ତରଖଣ୍ଡ) ପ୍ରଥମ ତରଙ୍ଗ (ଅପ୍ରକାଶିତ) ବାଣୀବିହାର ପୋଥିବିଭାଗରୁ ପ୍ରାପ୍ତ ।

କବି ସଦାନନ୍ଦଙ୍କୁ ଶୃଙ୍ଗାରୀ କବି କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ । 'ଲଳିତଲୋଚନା' 'ମୋହନଲତା' ପ୍ରଭୃତି କାବ୍ୟରେ ଶୃଙ୍ଗାର ରସ ଏବଂ ଶୃଙ୍ଗାରୀ ନାୟକ ନାୟିକାଙ୍କର ବର୍ଣ୍ଣନା ଏହାର ଏକ କାରଣ ରୂପେ ଗ୍ରହଣ କରାଯାଇପାରେ । କୃଷ୍ଣ କାବ୍ୟଗୁଡ଼ିକରେ ମଧ୍ୟ ଗୋପୀ ପ୍ରଭୃତିଙ୍କ ଜଳବିହାର ବନବିହାର ତଥା ଗୋପାଙ୍ଗନାଙ୍କ ସହ କୃଷ୍ଣଚନ୍ଦ୍ରଙ୍କର ଉକ୍ତି ପ୍ରତ୍ୟୁକ୍ତି ବର୍ଣ୍ଣନ ଏହି ନିଷ୍କର୍ଷର ଅନୁକୂଳ ମନେକରାଯାଏ । ଦାର୍ଶନିକ ମନୋବୃତ୍ତି ଏବଂ ଭକ୍ତି-ଭାବନା ଏହାଙ୍କର ପ୍ରିୟ ଥିଲା । ମାନବ ମନଗହନରେ ଏହି ଭାବର ବ୍ୟାପକ ପ୍ରଭାବ ପକାଇବା କ୍ଷମତା କବିଙ୍କର ପ୍ରଦତ୍ତ ଉଦାହରଣରୁ ଜଣାଯାଏ । ଏହି ଉଦାହରଣରୁ ଏହା ମଧ୍ୟ ପ୍ରମାଣ କରାଯାଇ ପାରେ ଯେ, ଉଦାହରଣର ପ୍ରତ୍ୟୁଦାହରଣ ପ୍ରକାଶ କରିବା ପାଇଁ ତାଙ୍କର ଶକ୍ତି ଥିଲା । ନିର୍ଭୀକ ସମାଲୋଚନାର ପ୍ରମାଣ ତାଙ୍କର ବହୁ ଗ୍ରନ୍ଥାଦିରୁ ଜଣାଯାଏ । କାରଣ ପ୍ରତି ଗ୍ରନ୍ଥର ସମାପ୍ତି ଛାନ୍ଦରେ କବି ନିଜର କବିସୂର୍ଯ୍ୟ ପଦବୀ ଯୋଗୁଁ ଲାଞ୍ଛିତ ହେବାକୁ ପଡ଼ିଥିବା କଥା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେ ଏହି ପଦବୀ ସହିତ ଅନ୍ୟାନ୍ୟ କେତେକ ନାମ ସଂଯୋଗକରି ସମାଲୋଚକଙ୍କ ମୁଖ ବନ୍ଦ କରିବାକୁ ଚାହିଁଥିଲେ ।

କବିଙ୍କର ପରମ ଶୃଙ୍ଗାରିକତା ସହିତ ରାଜାନୁଗତ୍ୟ ଓ ବ୍ରାହ୍ମଣ-ଭକ୍ତିର ଗର୍ବ ମଧ୍ୟ ଥିଲା । ସେ ନିଜର କାବ୍ୟସମୂହରେ ନୂଆ ନୂଆ ପ୍ରସଙ୍ଗ ଯୋଗକରି ନିଜର ବ୍ରାହ୍ମଣଭକ୍ତିର ପ୍ରଶଂସା କରିଅଛନ୍ତି । ଏହି ପ୍ରଶଂସା ନିଜର ଜାତିଧର୍ମ ପ୍ରତି ମୋହର ପ୍ରମାଣ ବୋଲି କୁହାଯାଇ ପାରେ ।

କବିଙ୍କର ସହଜାତ ପ୍ରକୃତି ତାଙ୍କର ପ୍ରକୃତି ବର୍ଣ୍ଣନ ଓ ଅନ୍ୟ ବର୍ଣ୍ଣନରେ ଦେଖିବାକୁ ମିଳେ । ଶ୍ଳେଷାଦି କାବ୍ୟଶୃଙ୍ଖଳା ଦେଖାଇବା ନିମିତ୍ତ ପ୍ରାକୃତିକ ନଦନଦୀ ବୃକ୍ଷାଦି ତଥା ଉପବନ ପ୍ରଭୃତିକୁ ସେ ବାଛି ନେଇଛନ୍ତି । ସ୍ଥାନେ ସ୍ଥାନେ ସେ ଜ୍ୟୋତିଷ ଭଳି ବିଭିନ୍ନ ଶାସ୍ତ୍ର ଜ୍ଞାନର ପ୍ରମାଣ ମଧ୍ୟ ଦେଇଅଛନ୍ତି ।

## କବିଙ୍କ ସମ୍ବନ୍ଧୀୟ କିମ୍ବଦନ୍ତୀ

କବିଙ୍କ ସମ୍ବନ୍ଧରେ କବିଙ୍କର କେତେକ ମଠ ଓ ପୂର୍ବତନ ବାସ-ସ୍ଥାନମାନଙ୍କରୁ ନାନା କିମ୍ବଦନ୍ତୀ ଶୁଣିବାକୁ ମିଳେ । ସଦାନନ୍ଦ ଗଜପତି ବୀରକେଶରୀ ପ୍ରଦତ୍ତ କବିସୂର୍ଯ୍ୟ ଉପାଧି ପାଇଁ ବୀରକେଶରୀଙ୍କ ସିଂହାସନରୁ ବିତାଡନ ସମୟରେ ସ୍ୱରାଜ୍ୟରେ ରାଜାଙ୍କର ଆଶ୍ରୟଦାନ ପାଇଁ ଏଭଳି

କାର୍ଯ୍ୟକଲେ ଯାହାଫଳରେ ଅନ୍ୟକେତେକ ରଜାଙ୍କ ଦ୍ୱାରା ବୀରକେଶରୀଙ୍କୁ ବିତାଡ଼ିତ କରିଥିବା ରଜା ପଦ୍ମନାଭ ଦେବଙ୍କୁ ହଟାଇ ଗଜପତିଙ୍କୁ ପୁନଃ ଗାଦି ଆସୀନ କରିଥିଲେ (୪୯)। ବିଶେଷତଃ ସଦାନନ୍ଦ ଯେତେବେଳେ ମଧୁପୁର ଗଡ଼ରେ ଥିଲେ ଉକ୍ତ ସମୟରେ ବୀରକେଶରୀ ପାଗଳହୋଇ ନିଜର ଦୁଇ ପୁତ୍ରଙ୍କୁ ହତ୍ୟାକରିବା ଫଳରେ ମରହଟ୍ଟାଙ୍କ ଦ୍ୱାରା ଗାଦିରୁ ବିତାଡ଼ିତ ହୋଇଥିଲେ (୫୦)। ସେ ସମୟରେ ସଦାନନ୍ଦ ମଧୁପୁର ରଜାଙ୍କ ସହାୟତାରେ ବୀରକେଶରୀଙ୍କୁ ଲୁଚାଇ ରଖିଥିଲେ। ପରେ ଘଟଣା ଜଣାପଡ଼ିବାରୁ ଆଶ୍ରୟଦାତା ଓ ଆଶ୍ରିତଙ୍କୁ ବନ୍ଦୀ ହେବାକୁ ପଡ଼ିଥିଲା।

ବୈଷ୍ଣବ ଧର୍ମର ତତ୍ତ୍ୱକୁ କବି ପଠନ ପାଠନ ତଥା ଅନୁବାଦ କରିଥିଲେ। ସମ୍ଭବତଃ ଏହା ଫଳରେ ଅନେକ ଅଲୌକିକ କାର୍ଯ୍ୟ ସେ ସମ୍ପାଦନ କରିପାରୁଥିଲେ। ଯଦି ସେ ବିଦଗ୍ଧ କବି ଅଭିମନ୍ୟୁଙ୍କ ଜନ୍ମସ୍ଥାନ ବାଲିଆକୁ ଯାଇ ଇନ୍ଦ୍ରଜିତ ସାମନ୍ତସିଂହାରଙ୍କର ପୁତ୍ରେଷ୍ଟି ଯଜ୍ଞ ସମ୍ପାଦନ କରିନଥାନ୍ତେ ତେବେ ଇନ୍ଦ୍ରଜିତ ଜୀବଦ୍ଦଶା ଭିତରେ ପୁତ୍ର ମୁଖ ଦର୍ଶନ କରିପାରିନଥାନ୍ତେ (୫୧)।

---

(୪୯) (କ) Orissa Historical Research Journal, Part-III 1954, P. 40-43 ରେ ପ୍ରକାଶିତ 'ସୁଶୀଲ୍ ଚନ୍ଦ୍ର ଦେଙ୍କ ଲିଖିତ ପ୍ରବନ୍ଧ।

(ଖ) ଝଙ୍କାର-୧୧ ସଂଖ୍ୟା, ଫେବୃୟାରୀ ୧୯୭୯ରେ ପ୍ରକାଶିତ 'ରାଜ୍ୟ ବିହୀନ ରାଜାଗଣ'। ଖୋରଧାର ରାଜବଂଶ ଓ ଜଗନ୍ନାଥ'- ମୂଳରଚନା- ହର୍ମନ କୁଲକ,-ଭାଷାନ୍ତର ଶ୍ରୀ ଶତଦାନନ୍ଦ ମିଶ୍ର, ପୃ-୯୩୯ "ପ୍ରାୟ ଖ୍ରୀ: ୧୭୩୬ରେ ମୋଗଲମାନେ ପଟିଆର ପଦ୍ମନାଭଦେବଙ୍କୁ ରାଜାକରିଥିଲେ। × × ରାମଚନ୍ଦ୍ରଙ୍କ ପୁଅ ବୀରକେଶରୀ ଦେବ ତାଙ୍କର ସାମନ୍ତ ରାଜାମାନଙ୍କ ସହାୟତାରେ ପ୍ରାୟ ୧୭୩୯ରେ ଖୋରଧା ରାଜଗାଦିକୁ ଫେରିପାଇବାକୁ କୃତକାର୍ଯ୍ୟ ହୋଇଥିଲେ"।

(୫୦) 'ସମାଜ'- ତା ୧୨।୨।୧୯୭୯, ପୃ-୨ରେ ପ୍ରକାଶିତ ପ୍ରବନ୍ଧ 'ବୀରକେଶରୀ ଦେବ' (ମାଦଳାପାଞ୍ଜି ଅନୁଯାୟୀ) 'ରାଜାରାମଙ୍କ ସମୟରେ ବୀରକେଶରୀ ଦେବ ପାଗଳ ହୋଇ ମରହଟ୍ଟାମାନଙ୍କ ଦ୍ୱାରା ବନ୍ଦୀହେଲେ'।

(୫୧) ଖୁରୁଧା ଇତିହାସ- କେଦାରନାଥ ମହାପାତ୍ର, ପୃ-୨୧୦।



# ଦ୍ୱିତୀୟ ପରିଚ୍ଛେଦ

## ସଦାନନ୍ଦଙ୍କ ଗ୍ରନ୍ଥରାଜି

### ସଦାନନ୍ଦଙ୍କ ଗ୍ରନ୍ଥର ଆଧାର ଓ ଶ୍ରେଣୀବିଭାଗ

ଓଡ଼ିଆ ସାହିତ୍ୟ ସାରଳାଦାସଙ୍କଠାରୁ ଆରମ୍ଭକରି ପଞ୍ଚସଖା ଯୁଗର କବିମାନଙ୍କ ସୃଷ୍ଟି ପର୍ଯ୍ୟନ୍ତ ମୁଖ୍ୟତଃ ବିଭିନ୍ନ ଧର୍ମମାର୍ଗର ସାଧନାଶ୍ରୟୀ ଥିଲା । ଜ୍ଞାନଯୋଗ ମାର୍ଗର ବୈଷ୍ଣବକବିଗଣ ସେମାନଙ୍କ କାବ୍ୟ କବିତାରେ କେବଳ ପାରମାର୍ଥିକ ତତ୍ତ୍ୱ ପରିବେଷଣ କରିବାକୁ ଚେଷ୍ଟିତ ହୋଇ-ପଡ଼ିଥିଲେ । ସେମାନଙ୍କର ବିଶ୍ୱାସଥିଲା ଏହି ପ୍ରକାର ତତ୍ତ୍ୱ ପରିବେଷଣ କରି ସେମାନେ ସାଧାରଣ ମାନବର ଜୀବନକୁ ସୁସଙ୍ଗଠିତ କରି ଏକ ପାରମାର୍ଥିକ ସମାଜ ଗଠନ କରିପାରିବେ ମାତ୍ର ତାହା ସମ୍ଭବ ହୋଇ ପାରିଲା ନାହିଁ । ସାହିତ୍ୟ ପଠନରେ ରସ ପିପାସାର ଚରିତାର୍ଥତା ଏକ ଅପରିହାର୍ଯ୍ୟ ଆବଶ୍ୟକତା ରୂପେ ଅନୁଭୂତ ହେଲା । ଦେବଦେବୀଙ୍କର ଅଲୌକିକ ଲୀଳା ବର୍ଣ୍ଣନା ପାଠକ ସମାଜକୁ ବହୁକାଳ ଧରି ସନ୍ତୁଷ୍ଟ କରି ରଖିପାରିଲା ନାହିଁ । ଅଦ୍ଭୁତ ପ୍ରତିଭାସମ୍ପନ୍ନ କବି ସଦାନନ୍ଦ ପାଠକମାନଙ୍କର ଏହି ମନୋବୃତ୍ତିକୁ ଅତି ସତର୍କତାର ସହିତ ଲକ୍ଷ୍ୟ କରିଥିଲେ । ତେଣୁ କବି ପରମ ବୈଷ୍ଣବ ହୋଇ ମଧ୍ୟ ଲୋକରୁଚିକୁ ବିକ୍ଷୁବ୍ଧ ନକରି ପରମ୍ପରାକୁ ଅସ୍ୱୀକାର ନକରି ସ୍ୱକୃତ ଧର୍ମଗ୍ରନ୍ଥ ଗୁଡ଼ିକୁ ରସପିପାସୁ ପାଠକମାନଙ୍କର ମନୋବୃତ୍ତି ଅନୁସାରେ ରୂପଦାନ କରିବାକୁ ସଚେଷ୍ଟ ହୋଇଥିଲେ ।

ଓଡ଼ିଆ ସାହିତ୍ୟର ଉନ୍ମେଷ କାଳରୁ ଦେଖାଯାଇଛି ଯେ, କାବ୍ୟ-କବିତା ମୁଖ୍ୟତଃ ପୌରାଣିକ କଥାବସ୍ତୁ ଉପରେ ଆଧାରିତ । କାବ୍ୟ କବିତାର ନାୟକ ନାୟିକାଙ୍କୁ ପୌରାଣିକ ସୂତ୍ରରୁ ଆହରଣ ନ କରି ବାସ୍ତବ ଜୀବନରୁ ଗ୍ରହଣ କରିବା ସେତେବେଳର କବି ପକ୍ଷରେ ଅସମ୍ଭବ ଥିଲା ।

ମାତ୍ର ଦୂରଦ୍ରଷ୍ଟା କବି ସଦାନନ୍ଦ ଦେବଦେବୀ ଚରିତକୁ ତାଙ୍କ କାବ୍ୟରେ ପ୍ରତ୍ୟକ୍ଷ ଭାବରେ ସ୍ଥାନ ଦେଇଥିଲେ ମଧ୍ୟ "ଲଳିତଲୋଚନା", "ମୋହନଲତା" ଆଦି କେତେକ କାବ୍ୟରେ କାବ୍ୟନାୟକ ଓ ନାୟିକାଙ୍କୁ ସ୍ୱର୍ଗଚ୍ୟୁତ ଅଭିଶାପଗ୍ରସ୍ତ ଦେବ-ଅଂଶୀ ମାନବ ଭାବରେ ବର୍ଣ୍ଣନା କରିଅଛନ୍ତି ।

ଓଡ଼ିଶାରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ପରମ୍ପରା ସୁଦୀର୍ଘ । ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଶାର ବିଭିନ୍ନ ରାଜସଭାମାନଙ୍କରେ ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ଶାସ୍ତ୍ରଚର୍ଚ୍ଚା ସେ ସମୟର କବିମାନଙ୍କର ଚିତ୍ତରେ ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ସେ ସମୟର ବିଶିଷ୍ଟ କବି ଉପେନ୍ଦ୍ର ଭଞ୍ଜ, ଲୋକନାଥ ପଣ୍ଡିତ, ଘନକୃଷ୍ଣ ପ୍ରଭୃତି ସଂସ୍କୃତ କାବ୍ୟାଦର୍ଶ ଅନୁସାରେ ଓଡ଼ିଆ କାବ୍ୟ ରଚନାରେ ପ୍ରୟାସୀ ହୋଇଥିଲେ । କବି ସଦାନନ୍ଦ ମଧ୍ୟ ଏହି ଭାବଧାରାକୁ ସ୍ୱୀକାର କରିଅଛନ୍ତି । ତାଙ୍କ କାବ୍ୟମାନଙ୍କରେ ସେ ଯେଉଁ ଚମତ୍କାରିତା ପ୍ରଦର୍ଶନ କରିଅଛନ୍ତି, ତାହା ତାଙ୍କର ପାଣ୍ଡିତ୍ୟ ପରାକାଷ୍ଠାର ସୂଚନା ଦିଏ ।

ସଦାନନ୍ଦ ବା ସାଧୁଚରଣ କେବଳ ପରମ ବୈଷ୍ଣବ ନଥିଲେ । ସେ ଥିଲେ ପ୍ରସିଦ୍ଧ କବି । ତାଙ୍କ ରଚିତ "ଲଳିତ ଲୋଚନା", "ଯୁଗଳ-ରସାମୃତ ଲହରୀ", "ଯୁଗଳ ରସାମୃତ-ଭଙ୍ଗୀ", "ପ୍ରେମତରଙ୍ଗିଣୀ", "ପାଟରତ୍ନାବଳୀ", "ବ୍ରଜଲୀଳାମୃତ-ସମୁଦ୍ର", "ବିଶ୍ୱମ୍ଭର-ବିହାର", "ପ୍ରୀତି-ଚିନ୍ତାମଣି", "ସଙ୍ଗୀତ-ସଦାନନ୍ଦ", "ମୋହନଲତା" ପ୍ରଭୃତି ଗ୍ରନ୍ଥ-ମାନ ପାଠକଲେ ଜଣାଯାଏ, ତାଙ୍କର କବିତ୍ୱ ଅତି ଉଚ୍ଚଧରଣର ଏବଂ ତାହା ଭାବସମ୍ପଦ, କୋମଳତା, ରସମାଧୁର୍ଯ୍ୟ ଓ ଉପେନ୍ଦ୍ର ଭଞ୍ଜୀୟ କାବ୍ୟ-ଛଟାର ଚମତ୍କାରିତା- ଏ ସମସ୍ତର ଅପୂର୍ବ ସମନ୍ୱିତ ବିକାଶ । କବି ଗୋସ୍ୱାମୀମାନଙ୍କ ବୈଷ୍ଣବଗ୍ରନ୍ଥ, ବ୍ରହ୍ମବୈବର୍ତ୍ତପୁରାଣ, ବିଷ୍ଣୁପୁରାଣାଦି ସହିତ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥମାନଙ୍କ ଅନୁକରଣରେ ବା ଅବଲମ୍ବନରେ ନିଜର ଗ୍ରନ୍ଥମାନ ରଚନା କରିଅଛନ୍ତି ସତ୍ୟ, କିନ୍ତୁ ନିଜର ଅଗାଧ ପାଣ୍ଡିତ୍ୟ ଓ ଅସାମାନ୍ୟ ପ୍ରତିଭା ବଳରେ ଅପୂର୍ବ ଅଭିନବ ମନୋହର ଭକ୍ତିରସାତ୍ମକ କାବ୍ୟରାଜ୍ୟ ନିର୍ମାଣ କରି ଉତ୍କଳ ଭାରତୀଙ୍କୁ ଅଳଙ୍କୃତ କରିଅଛନ୍ତି ।

ଓଡ଼ିଆ ସାହିତ୍ୟରେ ୧୭୫୦ ରୁ ୧୮୫୦ ଖ୍ରୀଷ୍ଟାବ୍ଦ ମଧ୍ୟବର୍ତ୍ତୀ ସମୟକୁ ରୀତିଯୁଗ କୁହାଯାଏ । ଏହି ସମୟରେ ରଚିତ ହୋଇଥିବା କାବ୍ୟକୁ

ବିଷୟବସ୍ତୁ ଦୃଷ୍ଟିରୁ ପାଞ୍ଚଭାଗରେ ବିଭକ୍ତ କରାଯାଇପାରେ ।

୧- ପୁରାଣ କଥାଶ୍ରୟୀ

୨- ରାମ କଥାଶ୍ରୟୀ

୩- କୃଷ୍ଣ କଥାଶ୍ରୟୀ

୪- ଐତିହାସିକ

୫- କାଳ୍ପନିକ

ପୁନଶ୍ଚ ଏହି କୃଷ୍ଣ କଥାଶ୍ରୟୀ କାବ୍ୟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯଥା- ରୀତିବଦ୍ଧ-କାବ୍ୟ ଓ ରୀତିମୁକ୍ତ କାବ୍ୟ । ଏହା ବ୍ୟତୀତ ଅନ୍ୟ ଏକ ଧାରାର ମୁକ୍ତକ କାବ୍ୟ ମଧ୍ୟ ଥିଲା ।

ସଦାନନ୍ଦଙ୍କର କବି ପ୍ରତିଭା ବହୁମୁଖୀ । ତେଣୁ ତାଙ୍କୁ ରୀତିକାଳ ବ୍ୟତୀତ ଭକ୍ତିକାଳ ପ୍ରସଙ୍ଗରେ ମଧ୍ୟ ସ୍ଥାନ ଦିଆଯାଇପାରେ । ଏହାଙ୍କୁ ସନ୍ଧିକ୍ରାନ୍ତିକାଳର କବି ଆଖ୍ୟା ଦିଆଯାଇପାରେ । କାରଣ ସେ କୃଷ୍ଣଙ୍କର ଭକ୍ତିକଥାକୁ ବିଭିନ୍ନ କାବ୍ୟର ବିଷୟବସ୍ତୁ ରୂପେ ଗ୍ରହଣକରି ତାକୁ ରୀତିକାଳର ଶୃଙ୍ଗାରିଭାବନା ତଥା ଶାସ୍ତ୍ର ସମ୍ମତ କାବ୍ୟିକ ବେଶଭୂଷାରେ ସଜ୍ଜିତ କରିଥିବା ମନେହୁଏ । ବାମନ, ଦଣ୍ଡୀ, ଭାମହ, ବିଶ୍ୱନାଥ ଆଦି ଆଳଙ୍କାରିକମାନେ ରସ, ଗୁଣ, ଅଳଙ୍କାର ତଥା ରୀତି ପ୍ରଭୃତି କାବ୍ୟାଙ୍ଗମାନଙ୍କ ମଧ୍ୟରୁ କୌଣସି ଗୋଟିକର ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥାଆନ୍ତି । ପ୍ରସିଦ୍ଧ କବି ନିଜର ରଚନାରେ ଏହି ସବୁ କାବ୍ୟାଦର୍ଶମାନଙ୍କୁ ସମ୍ୟକ୍ ରୂପରେ ଉପସ୍ଥାପିତ କରିଥାଆନ୍ତି । ସଦାନନ୍ଦଙ୍କ କାବ୍ୟ ସମୂହକୁ ସମୀକ୍ଷାକଲେ ଜଣାଯାଏ, କବି ରସ, ଗୁଣ, ଅଳଙ୍କାର ଆଦି କାବ୍ୟାଦର୍ଶମାନଙ୍କର ସଂଯୋଜନା ବହୁଭାବରେ ନିଜ ରଚନାରେ ସନ୍ନିବିଷ୍ଟ କରିଅଛନ୍ତି । ଶୃଙ୍ଗାର ରସର ଉଦାହରଣ ସ୍ୱକୃତ ଗ୍ରନ୍ଥ 'ସ୍ମରଦୀପିକା'ରୁ ହିଁ ମିଳିଥାଏ । ଏତଦ୍‌ବ୍ୟତୀତ କବି ଅନ୍ୟାନ୍ୟ ମୌଳିକଗ୍ରନ୍ଥ ତଥା ଅନୂଦିତ ଗ୍ରନ୍ଥରେ ଯେ ଭାବରେ ନାୟିକାର ନଖରୁ ଶିଖା ପର୍ଯ୍ୟନ୍ତ ବର୍ଣ୍ଣନା କରିଅଛନ୍ତି, ସେଥିରୁ ଅନୁମିତ ହୁଏ, କବିଙ୍କର ଶୃଙ୍ଗାର-ଶାସ୍ତ୍ର ତଥା କାମଶାସ୍ତ୍ର ଉପରେ ଯଥେଷ୍ଟ ପାରଦର୍ଶିତା ଥିଲା । ସଦାନନ୍ଦ ଶରୀରସ୍ଥ ଶୃଙ୍ଗାର ବର୍ଣ୍ଣନା ଓ ପ୍ରେମର ମାନସିକ ପ୍ରତିକ୍ରିୟାର ବିଶଦ୍ ଚିତ୍ର

ଦେବା ବଦଳରେ ଅନୁଭବ, ସଞ୍ଚାରଭାବର ପ୍ରକଟନରେ ଅଧିକ ମହତ୍ତ୍ୱ ଦେଇଥିବା ମନେହୁଏ । ଆହୁରି ମଧ୍ୟ କବି ଶୃଙ୍ଗାରରସ ପ୍ରସଙ୍ଗରେ ସମ୍ଭୋଗ-ଶୃଙ୍ଗାରରସ ବର୍ଣ୍ଣନା ଅତ୍ୟଧିକ କରିଅଛନ୍ତି । ବୀର ରସର ଆଲୋଚନାରେ ମଧ୍ୟ କବି କୁଣ୍ଠିତ ଥିବା ପରି ମନେହୁଏ । ଆଜନ୍ମ ସାତ୍ତ୍ୱିକ ବିପ୍ର ହେଲେ ମଧ୍ୟ ରାଜଦରବାର ମାନଙ୍କର ସମ୍ପର୍କ ହେତୁ ବୀର ରସର ଆଲୋଚନା କବି ତାଙ୍କ ମୌଳିକ କାବ୍ୟ ତଥା ଅନୂଦିତ ଗ୍ରନ୍ଥମାନଙ୍କରେ ସଂଯୋଜନା କରିଥିବା ଦେଖାଯାଏ ।

ସଦାନନ୍ଦଙ୍କର କାବ୍ୟ ସମ୍ପଦ ଅତ୍ୟନ୍ତ ରୁଚିପୂର୍ଣ୍ଣ ହେଲେହେଁ ସେଥିରେ କରୁଣ ରସର ପ୍ରସଙ୍ଗ ବିଶେଷ ଥିଲାପରି ମନେହୁଏ ନାହିଁ । ତାଙ୍କ କାବ୍ୟ ସମୂହରେ କରୁଣ ରସର ଅଭିବ୍ୟଞ୍ଜନା ସମ୍ୟକ ଥିଲେ ମଧ୍ୟ କବି ତାହା ମୁଖ୍ୟ ଭାବରେ ସଂଯୋଜନା କରିଥିବା ମନେହୁଏ ନାହିଁ ।

ଶାନ୍ତରସର ଉଦାହରଣ ସଦାନନ୍ଦଙ୍କର କେତେକ ଅନୂଦିତ ଗ୍ରନ୍ଥରେ ଦୃଷ୍ଟିଗୋଚର ହୁଏ । ଏଥିସହ ଅଦ୍ଭୁତ, ହାସ୍ୟ, ରୌଦ୍ର ଓ ବୀଭତ୍ସ ରସର ବର୍ଣ୍ଣନା କାବ୍ୟମାନଙ୍କରେ ସ୍ଥଳବିଶେଷରେ ରହିଅଛି ।

କାବ୍ୟଗତ ଗୁଣମାନଙ୍କର ବିଚାର ପ୍ରାଚୀନ ଭାରତୀୟ କାବ୍ୟର, ସମୀକ୍ଷା ପ୍ରଣାଳୀର ଅଙ୍ଗରୂପେ ଥିଲା । ଗୁଣ ସିଦ୍ଧାନ୍ତର ସମର୍ଥକ ମାନେ ମୁଖ୍ୟରୂପରେ ଓଜ, ପ୍ରସାଦ ଏବଂ ମାଧୁର୍ଯ୍ୟ ନାମକ ତିନିଗୁଣର ଅସ୍ତିତ୍ୱର ଆବଶ୍ୟକତା ମାନିଅଛନ୍ତି । କୌଣସି କୌଣସି କବିଙ୍କ ରଚନାରେ କୌଣସି ବିଶେଷ ଗୁଣର ଆଧିକ୍ୟ ମଧ୍ୟ ପରିଲକ୍ଷିତ ହୁଏ । ଯଥା- ତୁଳସୀ ଦାସଙ୍କ ରଚନାରେ ପ୍ରସାଦ ଗୁଣର ଏବଂ ସୁରଦାସ ଓ ମୀରାବାଈଙ୍କ ରଚନାରେ ମାଧୁର୍ଯ୍ୟ ଗୁଣର ଆଧିକ୍ୟ ଦେଖାଯାଏ । ଶୃଙ୍ଗାର ଏବଂ କରୁଣ ରସ-ପ୍ରଧାନ ରଚନାରେ ପ୍ରସାଦ ଓ ମାଧୁର୍ଯ୍ୟଗୁଣ ଅଧିକ ପରିମାଣରେ ଥାଏ । ବୀରରୌଦ୍ରରସପ୍ରଧାନ ରଚନାରେ ଓଜ ଗୁଣର ଆଧିକ୍ୟ ପରିଲକ୍ଷିତ ହୁଏ । ସଦାନନ୍ଦ ନିଜ ଗ୍ରନ୍ଥମାନଙ୍କରେ ଉଚିତ ଗୁଣର ନିର୍ବାହ ଉଚିତ ପ୍ରସଙ୍ଗରେ କରିଅଛନ୍ତି ।

ଅଳଙ୍କାର ପ୍ରୟୋଗ କ୍ଷେତ୍ରରେ ସଦାନନ୍ଦ ସିଦ୍ଧହସ୍ତ ଥିଲେ । ସେ ତାଙ୍କ ମୌଳିକ ଲେଖାବଳୀର ପଦେପଦେ ଅଳଙ୍କାର ସଂଯୋଜନା

କରୁଥିଲେ । ଏଥିପାଇଁ ତାଙ୍କୁ ଅଳଙ୍କାରବାଦୀ କବିରୂପେ ଅଭିହିତ କରାଯାଇପାରେ । ଶବ୍ଦାଳଙ୍କାରରେ ଯମକ ଓ ଶ୍ଳେଷ ତାଙ୍କର ପ୍ରିୟ ଥିଲା । ସେ ତାଙ୍କ କାବ୍ୟରେ ଏହି ଦୁଇ ଅଳଙ୍କାରର ଅନେକ ଭେଦ ଉପଭେଦ ଦର୍ଶାଇଛନ୍ତି । ତାଙ୍କ କାବ୍ୟରେ ଉପମା, ଉତ୍ପ୍ରେକ୍ଷା, ସନ୍ଦେହ, ପରିସଂଖ୍ୟା, ଅତିଶୟୋକ୍ତି, ବିରୋଧାଭାସ ଏବଂ ରୂପକ ପ୍ରଭୃତି ପ୍ରଭୂତ ଭାବରେ ସଂଯୋଜିତ ହୋଇଥିବା ଦେଖାଯାଏ । କବି ଏବଂ ଚିତ୍ରକାର ମଧ୍ୟରେ ବହୁ ସାମ୍ୟ ଦେଖାଯାଇଥାଏ । ସଦାନନ୍ଦ ନିଜ କାବ୍ୟ ସମୂହରେ ଶବ୍ଦଚିତ୍ରର ବିଶେଷତ୍ୱ ଦର୍ଶାଇଛନ୍ତି । ରାଧାକୃଷ୍ଣ ତଥା ଅନ୍ୟାନ୍ୟ ପାତ୍ରପାତ୍ରୀଙ୍କର ବର୍ଣ୍ଣନାରେ ଶବ୍ଦ-ଚିତ୍ର ବ୍ୟତୀତ ବର୍ଷା, ଶରତ ଆଦି ଋତୁ, ବନ, ନଦନଦୀ ପ୍ରଭୃତି ପ୍ରାକୃତିକ ଦୃଶ୍ୟର ଚିତ୍ର ମଧ୍ୟ ପ୍ରସ୍ତୁତ କରାଯାଇଅଛନ୍ତି ।

କାବ୍ୟ କବି ହୃଦୟର ଦର୍ପଣ ସଦୃଶ । କବିର ମନ ଏବଂ ପ୍ରବୃତ୍ତି ତାର ରଚନାରେ ପ୍ରତିବିମ୍ବିତ ହୋଇଥାଏ । କବି ନିଜ କଳ୍ପନା ଅନୁଯାୟୀ ଅନୁକୂଳ ପ୍ରସଙ୍ଗ ବାଛିନିଏ ଏବଂ ବର୍ଣ୍ଣନାକରେ । ଭକ୍ତକବି ତୁଳସୀଦାସଙ୍କର ଭକ୍ତିଭରା ମନ ଭଗବାନଙ୍କର ରୂପ ଗୁଣ ପ୍ରଚୁର ପରିମାଣରେ କୀର୍ତ୍ତନ କରି ସନ୍ତୁଷ୍ଟ ହୋଇ ପାରି ନ ଥିଲା । ସେହିଭଳି ଭକ୍ତ ସଦାନନ୍ଦ ନିଜ ମନୋ-ବୃତ୍ତିର ଅନୁକୂଳ ପ୍ରସଙ୍ଗ ବର୍ଣ୍ଣନା କରି ମଧ୍ୟ ସନ୍ତୁଷ୍ଟନହୋଇ ଅନ୍ୟାନ୍ୟ ପ୍ରସଙ୍ଗର ଅବତାରଣା କରିଯାଇଅଛନ୍ତି । ସେ କୃଷ୍ଣ ବିଷୟକ ରଚନା କଲେ ମଧ୍ୟ ବୀତରାଗ ଭକ୍ତ ନଥିଲେ । ସେ ଗୌଡ଼ୀୟ ବୈଷ୍ଣବର ରୀତି ବା ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ମଧ୍ୟ ଭକ୍ତି ରସାତ୍ମକ କାବ୍ୟ ସହିତ ଶୃଙ୍ଗାର ରସାଶ୍ରିତ କାବ୍ୟ ମଧ୍ୟ ସୃଷ୍ଟି କରିଛନ୍ତି । ଏଥିପାଇଁ ତାଙ୍କୁ ଦୋଷାରୋପ କରାଯାଇ ନ ପାରେ । କାରଣ ସମସାମୟିକ ରୁଚି, ମତି ତଥା ଆଶ୍ରୟଦାତା ଓ ପୃଷ୍ଠପୋଷକ ରାଜନ୍ୟବର୍ଗଙ୍କ ସନ୍ତୋଷବିଧାନ ତାତ୍କାଳିକ କବିମାନଙ୍କର ଲକ୍ଷ୍ୟ ଥିଲା । ଉଦାହରଣ ସ୍ୱରୂପ କବିଙ୍କ 'ଲଳିତଲୋଚନା' କାବ୍ୟକୁ ଗ୍ରହଣ କରାଯାଇପାରେ । କବି ସ୍ୱ କାବ୍ୟ 'ଲଳିତଲୋଚନା' 'ନାଗରୀନାରୀ' ପ୍ରକାରେ ହେଉ - ଏହି ଆଶା ପୋଷଣ କରିଅଛନ୍ତି । ଏହି ପ୍ରସଙ୍ଗରେ ନିମ୍ନଲିଖିତ ପଂକ୍ତି ଗୁଡ଼ିକ ଉଦ୍ଧାର କରାଯାଇପାରେ ।

"ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ,
ଅଳଙ୍କାରେ ଯୁକ୍ତ ବିଶି ଉକ୍ତି ଯେଣୁ ଥିବ ॥ ୧୭ ॥
ରସ ଭାବ ନିଷ୍ଠାଗୁପ୍ତି ଉପମା କଳିବ,
ଆଶ୍ରୟରେ କେଉଁଠାରେ ଧ୍ୱନି ପ୍ରକାଶିବ ॥ ୧୮ ॥

ଦର୍ଶନେ ଶ୍ରବଣେ ନେତ୍ର କର୍ଣ୍ଣ ମାନସରେ,

ସାରସ ପରାଏ ବାସ କରିବ ସନ୍ତରେ ॥ ୧୯ ॥

ନବ ବିଧ ହୋଇ ରସ ହେବନ୍ତି ବର୍ଣ୍ଣନ,

ତଥାପି ଏ ଗ୍ରନ୍ଥ ଅଟେ ଉଜ୍ଜ୍ୱଳ ପ୍ରଧାନ" ॥ ୨୦ ॥

("ଲଳିତଲୋଚନା"- ଅପ୍ରକାଶିତ କାବ୍ୟ, ଛାନ୍ଦ-୧, ପଦ ୧୭ ରୁ ୨୦, ସଦାନନ୍ଦ - କବିସୂର୍ଯ୍ୟ ବ୍ରହ୍ମା ବିରଚିତ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ଠାରୁ ସଂଗୃହୀତ)

କବିଙ୍କର ବକ୍ତବ୍ୟ ହେଲା, ଚତୁରା ନାଗରୀ ନାରୀ ଯେପରି ସର୍ବାଳଙ୍କାରଭୂଷିତା ହୋଇ ବିବିଧ ଉକ୍ତିଦ୍ୱାରା ନିଜ ଜୀବନକୁ ସରସ କରି ଜନମନ ହରଣକରେ, ସେହିପରି ଏହି କାବ୍ୟଶାସ୍ତ୍ରୀୟ କାବ୍ୟ-ବେଶଭୂଷାରେ ମଣ୍ଡିତ ହୋଇ ଆକର୍ଷଣୀୟ ହେଉ । ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଧିକାଂଶ ଯଶସ୍ୱୀ ସାଧକ ପ୍ରତ୍ୟେକ ସଂସ୍କୃତ ସାହିତ୍ୟର ମର୍ମଜ୍ଞଥିଲେ । ଓଡ଼ିଆ ସାହିତ୍ୟର ଅଧିକାଂଶ କବି ନିଜ କାବ୍ୟର ବିଷୟବସ୍ତୁ ସଂସ୍କୃତରୁ ଗ୍ରହଣ କରିଥିବା ଜଣାଯାଏ । ସେ କେବଳ ସଂସ୍କୃତ ଅଳଙ୍କାର ଗ୍ରନ୍ଥ ବା କାବ୍ୟଶାସ୍ତ୍ରରେ ସୁପଣ୍ଡିତ ନ ଥିଲେ, ସେ ଉଣା ଅଧିକେ ସଂସ୍କୃତ ସାହିତ୍ୟ ଜଗତର ପ୍ରାୟ ପ୍ରତ୍ୟେକ ବିଭାଗର ଅନୁଶୀଳନ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ କବିଙ୍କର ଯେଉଁ ଅନୁବାଦ ଗ୍ରନ୍ଥ ସମୂହ ମିଳୁଅଛି, ତାହା ସଂସ୍କୃତ ଭାଷାରେ ଗଭୀର ଜ୍ଞାନ ବ୍ୟତିରେକେ ସମ୍ଭବ ହୋଇପାରନ୍ତା ନାହିଁ ।

ସଦାନନ୍ଦ ବିଭିନ୍ନ ପ୍ରକାର ଲୋକବ୍ୟବହାରିକ ଶବ୍ଦାବଳୀ ସହିତ ସୁପରିଚିତ ଥିଲେ । ଏଣୁ ତାଙ୍କର ଭାଷାରେ ସମସାମୟିକ ମରହଟି, ବ୍ରଜବୋଲି, ମିଶ୍ରିତ ବଙ୍ଗଳା ପ୍ରଭୃତି ଭାଷାର ବ୍ୟବହାର ହୋଇଥିବା ଦେଖାଯାଏ । ସଦାନନ୍ଦ ନିଜ ମାତୃଭାଷାର ମହତ୍ତ୍ୱ ପ୍ରତିପାଦନ ପାଇଁ ଅନ୍ୟ ଭାଷାର ଶବ୍ଦ ସମୂହକୁ ସଂଯୋଜନା କରୁଥିଲେ । ଦୃଷ୍ଟାନ୍ତ ସ୍ୱରୂପ ତାଙ୍କର "କାର୍ତ୍ତିକଉଜ୍ଜ୍ୱଳ" ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । "କାର୍ତ୍ତିକଉଜ୍ଜ୍ୱଳ" ମୁଖ୍ୟତଃ ସଂସ୍କୃତ "ସ୍ମରଣ-ମଙ୍ଗଳ" ଗ୍ରନ୍ଥର ଅନୁବାଦ ହୋଇଥିଲେ ମଧ୍ୟ ତାହା ବଙ୍ଗଳାରେ ଅନୂଦିତ ହୋଇ ଯଥେଷ୍ଟ ଲୋକପ୍ରିୟ ହୋଇ ପାରିଥିଲା

ଏବଂ ଓଡ଼ିଶାବାସୀ ପ୍ରେମଭକ୍ତିରସାଶ୍ରିତ ବୈଷ୍ଣବଗଣ କୀର୍ତ୍ତନ ମାଧ୍ୟମରେ ଏହାକୁ ଉତ୍ତମରୂପେ ହୃଦୟଙ୍ଗମ କରିପାରିବେ ବୋଲି ଚିନ୍ତାକରି କବି ମିଶ୍ରିତ ବଙ୍ଗଳା ବା ବ୍ରଜବୋଲି ଭାଷାରେ ତାହା ଅନୁବାଦ କରିଥିଲେ ।

## ଶ୍ରେଣୀ ବିଭାଗ

ସଦାନନ୍ଦଙ୍କ ରଚିତ କାବ୍ୟକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯଥା- ମୌଳିକ କାବ୍ୟ ଓ ଅନୂଦିତ କାବ୍ୟ । ମୌଳିକ କାବ୍ୟ ମଧ୍ୟରେ ନିମ୍ନବର୍ଣ୍ଣିତ କାବ୍ୟ ସମୂହ ଅନ୍ତର୍ଭୁକ୍ତ ।

(୧) ଲଳିତଲୋଚନା
(୨) ଯୁଗଳ ରସାମୃତ ଲହରୀ
(୩) ଯୁଗଳ ରସାମୃତ ଭଉଁରୀ
(୪) ପ୍ରେମ ତରଙ୍ଗିଣୀ
(୫) ପ୍ରେମ କଳ୍ପଲତା
(୬) ଚିତାଜ ଚନ୍ଦ୍ରୋଦୟ
(୭) ନାମ ଚିନ୍ତାମଣି
(୮) ପାଠରତ୍ନାବଳୀ
(୯) କୁଞ୍ଜ ବିହାର
(୧୦) ଗୋବିନ୍ଦଗୁଣକୀର୍ତ୍ତନମାଳା
(୧୧) ବ୍ରଜ ସୂର୍ଯ୍ୟୋଦୟ
(୧୨) ବିଶ୍ୱମ୍ଭର ବିହାର
(୧୩) ପ୍ରୀତି ଚିନ୍ତାମଣି
(୧୪) ସଂଗୀତ ସଦାନନ୍ଦ
(୧୫) ତତ୍ତ୍ୱ ତରଙ୍ଗିଣୀ
(୧୬) ନିଷ୍କାମନୀଳମଣି
(୧୭) ମୋହନଲତା
(୧୮) ବାଳବୋଧିନୀ
(୧୯) ଚଉପଦୀ
(୨୦) ଚଉତିଶା
(୨୧) ଜଣାଣ

ସେହିପରି ଅନୂଦିତ କାବ୍ୟ ରୂପେ ନିମ୍ନଲିଖିତ କାବ୍ୟଗୁଡ଼ିକ ଗ୍ରହଣ କରାଯାଇପାରେ—

(୧) ବ୍ରଜଲୀଳାମୃତ ସମୁଦ୍ର (ବିଦଗ୍ଧ ମାଧବ)
(୨) ଉଜ୍ଜ୍ୱଳ ନୀଳମଣି
(୩) କୀର୍ତ୍ତନ ଉଜ୍ଜ୍ୱଳ (ସ୍ମରଣମଙ୍ଗଳ)
(୪) ପ୍ରେମ ଚିନ୍ତାମଣି

(୫) ହରିଭକ୍ତି କଳ୍ପଲତା (ପ୍ରବୋଧାନନ୍ଦ ସରସ୍ୱତୀନ୍ୟାସ)

(୬) ଚୈତନ୍ୟ ଚରିତାମୃତ ସାର

(୭) ବ୍ରହ୍ମାଣ୍ଡ ମଙ୍ଗଳ

(୮) ଭଗବଦ୍ ଗୀତା ଟୀକା

(୯) ସ୍ମରଣଦୀପିକା

'ମୋହନଲତା' ବା 'ମୋହନକଳ୍ପଲତା' ଗ୍ରନ୍ଥ ଶେଷରେ ଦିଆଯାଇଥିବା କାବ୍ୟାଦିର ନାମସୂଚୀରେ ସେ ଅନୁବାଦ ସାହିତ୍ୟ ସମ୍ବନ୍ଧରେ ସୂଚନା ଦେଇଥିଲେ ମଧ୍ୟ ଅନ୍ୟ ଏକ କାବ୍ୟ 'ପ୍ରେମକଳ୍ପଲତା', ରୂପଗୋସ୍ୱାମୀ କୃତ "ଉଦ୍ଧବ ସନ୍ଦେଶ" ସହ ତୁଳନୀୟ; ହେଲେ ମଧ୍ୟ କବି ସଦାନନ୍ଦ ସେ ସମ୍ବନ୍ଧରେ ନୀରବ ରହିଛନ୍ତି ।

ପୁନଶ୍ଚ ସ୍ୱକୃତ ଗ୍ରନ୍ଥ ତାଲିକା ଉଲ୍ଲେଖ ସମୟରେ କବି ଶେଷରେ କହିଛନ୍ତି—

"ମୋ କବିତ୍ୱ ଗ୍ରାହକ ହୋଇବେ ଯେଉଁମାନେ ।
ନାମ ଜାଣିଲେ ସମ୍ବାଦ ରଖିବେ ଯତନେ ॥
ଏହି ହେନ ସବୁ ଗ୍ରନ୍ଥ ଆଖ୍ୟା କହି ଏଥି ।
ଗ୍ରାହକମାନଙ୍କ ଠାରେ ଏତଦର୍ଥେ ଅର୍ଥୀ ॥"

କବି ପ୍ରଦତ୍ତ ଏହି ସୂଚନା ବାହାରେ କୀର୍ତ୍ତନଉଜ୍ଜ୍ୱଳ, ଭଗବଦ୍‌ଗୀତା, ସ୍ମରଣଦୀପିକା, ବାଳବୋଧିନୀ ପ୍ରଭୃତି ଅନ୍ୟ କେତେକ ଗ୍ରନ୍ଥ ଥିବା ଜଣାଯାଏ ।

## ସଦାନନ୍ଦଙ୍କ ନାମରେ ଉପଲବ୍ଧ ଗ୍ରନ୍ଥର ନାମ ଓ ସଂଖ୍ୟା

ପଣ୍ଡିତ- ବିନାୟକ ମିଶ୍ରଙ୍କ ଲିଖିତ "ଓଡ଼ିଆ ସାହିତ୍ୟର ଇତିହାସ" (ପ୍ରଥମ ମୁଦ୍ରଣ ୧୯୭୨ ମସିହା) ୧୧୪ ପୃଷ୍ଠାରେ ଉଲ୍ଲେଖ ଅଛି, "ସ୍ୱର୍ଗୀୟ ମନମୋହନ ଚକ୍ରବର୍ତ୍ତୀ ସାଧୁ କବି ସଦାନନ୍ଦଙ୍କ ପରିଚୟ ପ୍ରଥମେ ସଂଗ୍ରହ କରିଥିଲେ । ଓଡ଼ିଶାରେ ଇତିହାସ ଗବେଷଣାରେ ଚକ୍ରବର୍ତ୍ତୀ ମହାଶୟ ପଥ ପ୍ରଦର୍ଶକ ଅଟନ୍ତି" । ଉକ୍ତ ମନମୋହନ ଚକ୍ରବର୍ତ୍ତୀ କବିଙ୍କ ଗ୍ରନ୍ଥ ଗୁଡ଼ିକର

ନିମ୍ନଲିଖିତ ତାଲିକା ପ୍ରଦାନ କରିଯାଇଅଛନ୍ତି (୧), ଯଥା—

"The present Adhikari has supplied me with the following list of his works"—

(1) Lahari (2) Bhauri (3) Chauri
(4) Tattwatarangini Part I—III
(5) Prematarangini (6) Namachintamani
(7) Nistha Nilamani (୮) Premakalpalata
(9) Samudra (10) Mohanlata (11) Bisvambhara Bihara (12) Pataratanabali (13) Chaitanya Bhagabata (14) Churi Chintamani

ପଣ୍ଡିତ-ବିନାୟକ ମିଶ୍ର ସ୍ୱଲିଖିତ 'ଓଡ଼ିଆ-ସାହିତ୍ୟର ଇତିହାସ'ର ୧୧୫ ପୃଷ୍ଠାରେ କବିଙ୍କର ନିମ୍ନୋକ୍ତ ଗ୍ରନ୍ଥସୂଚୀ ପ୍ରଦାନ କରିଅଛନ୍ତି । "ସଦାନନ୍ଦ" ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ପ୍ରେମ କଳ୍ପଲତା, ମୋହନଲତା, ପ୍ରେମଲହରୀ, ପ୍ରେମ ଭଉଁରୀ, ପ୍ରେମ-ତରଙ୍ଗିଣୀ, ନିସ୍ତାର ନୀଳମଣି, ବିଶ୍ୱମ୍ଭର ବିହାର, ସମୁଦ୍ର, ଚୈତନ୍ୟ ଭାଗବତ, ନାମଚିନ୍ତାମଣି, ଚୋରି ଚିନ୍ତାମଣି ଓ ପ୍ରେମ ପଞ୍ଚାମୃତ ରଚନା କରିଥିଲେ (୨)" ।

ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ଲିଖିତ ଏବଂ ଝଙ୍କାର ୧୦ମ ବର୍ଷ ୩ୟ ସଂଖ୍ୟା ୨୯୭ ପୃଷ୍ଠାରେ ପ୍ରକାଶିତ "ଗଜପତି ବୀରକେଶରୀ ଦେବ" ପ୍ରବନ୍ଧରେ ସଦାନନ୍ଦଙ୍କ ରଚିତ ଗ୍ରନ୍ଥ ତାଲିକା ପ୍ରଦାନ କରାଯାଇ-ଥିଲା । ସ୍ୱର୍ଗୀୟ ମନମୋହନ ଚକ୍ରବର୍ତ୍ତୀ ପକ୍ଷିତପଡ଼ାରୁ କେତେକ ରଚନା ହସ୍ତଗତ କରିଥିବାର ସେ ସେଥିରେ ଉଲ୍ଲେଖ କରିଛନ୍ତି ।

---

(୧) Language and Literature of Orissa" P.371, Vol. No. 4 of 1898".

(୨) "ଓଡ଼ିଆ ସାହିତ୍ୟର ଇତିହାସ"- ପଣ୍ଡିତ ବିନାୟକ ମିଶ୍ର ପୃ-୧୧୫ ।

"ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ଅନୁଯାୟୀ ସଦାନନ୍ଦ ନାମ ଚିନ୍ତାମଣି, ପ୍ରେମ ପଞ୍ଚାମୃତ ଓ ପ୍ରେମଲହରୀ ପ୍ରଭୃତି ଗ୍ରନ୍ଥର ପ୍ରଣେତା ଅଟନ୍ତି ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ସ୍ୱକୃତ ଓଡ଼ିଆ ସାହିତ୍ୟର ଇତିହାସ ୩ୟ ଭାଗରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଦ୍ୱାରା ଲିଖିତ ଗ୍ରନ୍ଥମାନଙ୍କର ତାଲିକା ନିମ୍ନୋକ୍ତ ମତେ ଦେଇଛନ୍ତି ।

(୧) ଲଳିତଲୋଚନା-୫୨ ଛାନ୍ଦ କାଳ୍ପନିକ କାବ୍ୟ

(୨) ଯୁଗଳ ରସାମୃତ ଲହରୀ- ୫୮ ଛାନ୍ଦ, ରାଧାକୃଷ୍ଣ ପୂର୍ବରାଗ

(୩) ଯୁଗଳ ରସାମୃତ ଭଉଁରୀ- ୪୮ ଛାନ୍ଦ

(୪) ପ୍ରେମତରଙ୍ଗିଣୀ - ୩୬ ଛାନ୍ଦ ଚମତ୍କାର ରସ

(୫) ପ୍ରେମକଳ୍ପଲତା- ୧୮ ଛାନ୍ଦ ମଥୁରାଗମନ ବୃତ୍ତାନ୍ତ

(୬) ଚଉତିଶା ଚନ୍ଦ୍ରୋଦୟ - ୧୬ ଛାନ୍ଦ ବୈଷ୍ଣବ ରଚିତ ଗୋଟିଏ ଗୋଟିଏ ଚଉତିଶା

(୭) ନାମଚିନ୍ତାମଣି - ୧୨ ଛାନ୍ଦ

(୮) ନିଷ୍କାମଲମଣି - ୧୨ ଛାନ୍ଦ

(୯) ତତ୍ତ୍ୱତରଙ୍ଗିଣୀ - ୨୨ ଛାନ୍ଦ

(୧୦) ପାଠରତ୍ନାବଳୀ - ୧୨ ଛାନ୍ଦ

(୧୧) କୁଞ୍ଜବିହାର - ୮ ଛାନ୍ଦ ଅଷ୍ଟନାୟିକା ଲକ୍ଷଣ

(୧୨) ଗୋବିନ୍ଦ ଗୁଣ କୀର୍ତ୍ତନମାଳା - ୨୭ ଛାନ୍ଦ

(୧୩) ବ୍ରଜଲୀଳାମୃତ - ୫୬ ଛାନ୍ଦ ଶ୍ରୀମତ୍ ରୂପଗୋସ୍ୱାମୀଙ୍କ ରଚିତ ବିଦଗ୍ଧମାଧବ ନାମକ ସଂସ୍କୃତ ନାଟକର ଅନୁବାଦ

(୧୪) ଉଜ୍ଜ୍ୱଳ ନୀଳମଣି - ଗୋସ୍ୱାମୀଙ୍କର ସଂସ୍କୃତ ଗ୍ରନ୍ଥକୁ ବଙ୍ଗଳାରେ ଅନୁବାଦ କରିଛନ୍ତି

(୧୫) ପ୍ରେମଚିନ୍ତାମଣି - ବଙ୍ଗଳାରେ ଅନୁବାଦ

(୧୬) ବ୍ରଜସୂର୍ଯ୍ୟୋଦୟ - ୫ ଅଧ୍ୟାୟ

(୧୭) ହରିଭକ୍ତି କଳ୍ପଲତା - ଭାଗବତ ବୃତ୍ତିରେ ୧୦ ଅଧ୍ୟାୟ

(୧୮) ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତସାର – ଭାଗବତ ବୃତ୍ତରେ ବା ୯ ଅକ୍ଷରୀ; ଶ୍ରୀକୃଷ୍ଣଦାସ ଗୋସ୍ୱାମୀଙ୍କ ରଚିତ ବଙ୍ଗଭାଷାର ଚୈତନ୍ୟ ଚରିତାମୃତ ଗ୍ରନ୍ଥର ଅନୁବାଦ

(୧୯) ବ୍ରହ୍ମାଣ୍ଡ ମଙ୍ଗଳ – ଚୈତନ୍ୟ ବାଲ୍ୟଲୀଳା ରାମାୟଣ ରାଗରେ ଅର୍ଥାତ ୧୪ ଅକ୍ଷରୀ ବୃତ୍ତରେ ଲିଖିତ

(୨୦) ବିଶ୍ୱମ୍ଭର ବିହାର – 'ବ' ଅକ୍ଷର ନିୟମ (ଅସମ୍ପୂର୍ଣ୍ଣ)

(୨୧) ପ୍ରୀତି ଚିନ୍ତାମଣି – ଅସମ୍ପୂର୍ଣ୍ଣ

(୨୨) ସଙ୍ଗୀତ ସଦାନନ୍ଦ

(୨୩) ମୋହନଲତା – ୪୬ ଛାନ୍ଦ । କେବଳ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଭିନ୍ନ ଅନ୍ୟ ସମାଲୋଚକମାନଙ୍କର ତାଲିକାରେ କେତେକ ତ୍ରୁଟି ପରିଲକ୍ଷିତ ହୁଏ ।

କବି ସଦାନନ୍ଦ ସ୍ୱକୃତ 'ମୋହନଲତା' କାବ୍ୟର ୪୬ ଛାନ୍ଦରେ ସ୍ୱଲିଖିତ ଗ୍ରନ୍ଥ ପ୍ରଭୃତିର ନାମ ତାଲିକା ମଧ୍ୟ ନିମ୍ନାନ୍ୱୟରେ ଏହିପରି ସୂଚାଇ ଦେଇଅଛନ୍ତି ।

"ଆହେ ଶ୍ରୋତାମାନେ ଏବେ ଶୁଣ ଦେଇ କର୍ଣ୍ଣ,
ଗୁମାନ ନୁହଇ କହି ଗୋଚରି ବିଧାନ ॥ ୧ ॥

ଉତ୍କଳ ବଙ୍ଗଳା ଖୁରୁଠାଦି ଭାଷାମାନ,
ଏ ପ୍ରକାର କିଛି କିଛି କରିଛି ବର୍ଣ୍ଣନ ॥ ୨ ॥

ଚଉପଦୀ ଚଉତିଶା ବୋଲି ଅଛି ଯେତେ,
କେଉଁଦେଶେ କେଉଁଠାରେ ପ୍ରକାଶ ଜଗତେ ॥ ୩ ॥

ଲଳିତଲୋଚନା ଗ୍ରନ୍ଥ ବାଉନ ଛାନ୍ଦରେ,
ସମ୍ପୂର୍ଣ୍ଣ ହୋଇଛି ଜାଣ କଳ୍ପନା ବେଭାରେ ॥ ୪ ॥

ଶ୍ରୀଯୁଗଳ ରସାମୃତ ଲହରୀ ପ୍ରବନ୍ଧ,
ଶ୍ରୀ ରାଧାକୃଷ୍ଣ ପୂର୍ବରାଗ ଅଠାବନ ଛାନ୍ଦ ॥ ୫ ॥

ତାହା ସଙ୍ଗ ମାନ ରସେ ଭଉଁରୀ କଠିନ,
ଅଷ୍ଟଚଳିଶ ଛାନ୍ଦରେ ହୋଇଛି ସମ୍ପୂର୍ଣ୍ଣ ॥ ୬ ॥

ଶ୍ରୀ ପ୍ରେମତରଙ୍ଗିଣୀ ଯେ ଚମତ୍କାର ରସ,
ଛତିଶ ଛନ୍ଦରେ ସେହୁ ହୋଇଅଛୁ ଶେଷ ॥ ୭ ॥

ଶ୍ରୀଳ ପ୍ରେମକଳ୍ପଲତା ମଥୁରା ଗମନେ,
ବର୍ଣ୍ଣିତ ହୋଇଛୁ ଷଠଦଶ ଛନ୍ଦେ ତେହ୍ନେ ॥ ୮ ॥

ଶ୍ରୀ ଚଠାଣ୍ଡ ଚନ୍ଦ୍ରୋଦୟ ଷଠଦଶ ଛନ୍ଦ,
ଧନକ ଚରିତ ସବ ଚଠାଉ ନିବନ୍ଧ ॥ ୯ ॥

ଶ୍ରୀ ଶ୍ରୀ ନାମଚିନ୍ତାମଣି ଅଟେ ଛନ୍ଦ ବାର,
ଶ୍ରୀ ଶ୍ରୀ ନିସ୍ତାମାଳମଣି ତେମନ୍ତ ପ୍ରକାର ॥ ୧୦ ॥

ଉଦାହରଣ ଏଥିରେ ବହୁତ ଶାସ୍ତ୍ରରୁ,
ତତ୍ତ୍ୱ ସିଦ୍ଧାନ୍ତ ବର୍ଣ୍ଣର ନିସ୍ତା କରିବାରୁ ॥ ୧୧ ॥

ଶ୍ରୀ ଶ୍ରୀ ତତ୍ତ୍ୱତରଙ୍ଗିଣୀ ସିଦ୍ଧାନ୍ତର ସାର,
ଉଦାହରଣ ସବ ପୁରାଣମାନଙ୍କର ॥ ୧୨ ॥

ଏଣୁ ଘର୍ଘ ହୋଇ ହେଲା ସେ ଦ୍ୱାବିଂଶ ଛନ୍ଦ,
ଶ୍ରୀ ଶ୍ରୀ ପାଠରତ୍ନାବଳୀ ଯେ ଦ୍ୱାଦଶେ ସିଦ୍ଧ ॥ ୧୩ ॥

ଅଷ୍ଟନାୟିକା ଲକ୍ଷଣ ଅଷ୍ଟଛନ୍ଦ ହୋଇ,
ଶ୍ରୀ କୁଞ୍ଜବିହାର ନାମ ତାହାର ଅଟଇ ॥ ୧୪ ॥

ଗୋବିନ୍ଦଗୁଣ କୀର୍ତ୍ତନମାଳା ନାମେ ଗୀତ,
ସତାଇଶ ଛନ୍ଦରେ ହୋଇଛୁ ସମାପତ ॥ ୧୫ ॥

ଶ୍ରୀ ଶ୍ରୀ ବିଦଗ୍ଧମାଧବ ନାଟକ ସଂସ୍କୃତ,
ଶ୍ରୀ ଶ୍ରୀ ରୂପଗୋସ୍ୱାମୀଙ୍କ କୃତ ସେ ବିଦିତ ॥ ୧୬ ॥

ପୟାରେ ତାହା ମୁଁ ଛନ୍ଦବନ୍ଧରେ କହିଲି,
ଶ୍ରୀ ବ୍ରଜଲୀଳାମୃତ ସମୁଦ୍ର ନାମ ଦେଲି ॥ ୧୭ ॥

ଛପନ ଛନ୍ଦେ କହିଲି ମୁଁ ସେ କବ ନୋହି,
ମାନବ ଉତ୍କଳଲୋକେ ବୁଝିବାର ପାଇଁ ॥ ୧୮ ॥

ଶ୍ରୀ ଉଜ୍ଜ୍ୱଳନୀଳମଣି ଶ୍ରୀଗୋସାଇଁ ଗ୍ରନ୍ଥ,
ବଙ୍ଗଳା ଭାଷା ପୟାରେ କରିଛୁ ତା ଗୀତ ॥ ୧୯ ॥

ପ୍ରେମଚିନ୍ତାମଣି ନାମେ ବଙ୍ଗଦେଶୀ ଭାଷେ,
ବିନ୍ଦୁ କରଣ କଣିକା ଆଦ୍ଧ ଅର୍ଥ ଯେ ସେ ॥ ୨୦ ॥

ବ୍ରତ ସୂର୍ଯ୍ୟୋଦୟ ନାମ ପଞ୍ଚଅଧ୍ୟା ସାର,
ଅଷ୍ଟ ମହାଦ୍ୱାଦଶୀ ପର ବିଧି ନିର୍ଦ୍ଧାର ॥ ୨୧ ॥

ଶ୍ରୀ ପ୍ରବୋଧାନନ୍ଦ ସରସ୍ୱତୀ ନାମେ ନ୍ୟାସୀ,
ହରିଭକ୍ତି କଳ୍ପଲତା ଗ୍ରନ୍ଥ ସେ ପ୍ରକାଶି ॥ ୨୨ ॥

ଶ୍ରୀ ଭାଗବତ ଗୀତରେ ଉତ୍କଳ ଭାଷାରେ,
ତାହା ବର୍ଣ୍ଣନ ହୋଇଛି ଦଶ ଅଧ୍ୟାୟରେ ॥ ୨୩ ॥

ଶ୍ରୀ ଶ୍ରୀ କୃଷ୍ଣଦାସ କବିରାଜ ଗୋସ୍ୱାମୀର,
ଶ୍ରୀକୃଷ୍ଣ ଚଇତନ୍ୟ ଚରିତାମୃତ ସାର ॥ ୨୪ ॥

ନବାକ୍ଷରୀ ଗୀତେ ତାହା ଉତ୍କଳ ଭାଷାରେ,
ଆଦ୍ୟ ମଧ୍ୟ ଅନ୍ତ ତିନି ଲୀଳା ସେ ପ୍ରକାରେ ॥ ୨୫ ॥

ଭାଷା ପାଲଟି ଏ ଗ୍ରନ୍ଥେ ମୁଁ ଯେ କହି ନୋହି,
ଶ୍ରୀଗୋସାଇଁ କୃପାରୁ ତହିଁରେ ଅବଗାହି ॥ ୨୬ ॥

ଏଥିରେ କେହି କେହି ସଂସ୍କୃତ ସମ୍ମିଳିତ,
ଛନ୍ଦ ଶ୍ଳେଷ ବିରୋଧାଭାସ ଆଶ୍ରୟ ସ୍ଥିତ ॥ ୨୭ ॥

ଶ୍ରୀ ବ୍ରହ୍ମାଣ୍ଡ ମଙ୍ଗଳ କେବଳ ପରାକୃତେ,
ଶ୍ରୀକୃଷ୍ଣ ଚଇତନ୍ୟ ବାଲ୍ଲୀଳା ବିଧିମତେ ॥ ୨୮ ॥

ରାମାୟଣ ଗୀତେ ସେ ରୂପେ ଏକଖଣ୍ଡ,
ଇତ୍ୟାଦି ଗ୍ରନ୍ଥର ନାମ କଲୁ ଏଥି ରଣ୍ଡ ॥ ୨୯ ॥

ଶ୍ରୀ ବିଶ୍ୱମ୍ଭର ବିହାର 'ବି'କାର ନିୟମ,
ପ୍ରୀତି ଚିନ୍ତାମଣି ବିହୁ ମିଳନ ଜାଣିମ ॥ ୩୦ ॥

ଏ ଦୁଇ ଗ୍ରନ୍ଥ ସମ୍ପୂର୍ଣ୍ଣ ହୋଇତ ନାହାଁନ୍ତି,
ବିଘ୍ନନାଶ ବିଘ୍ନରାଜ ହୋଉ ଏ ସମାପ୍ତି ॥ ୩୧ ॥

ବହୁତ ଗ୍ରନ୍ଥରୁ ଆଣି ତୋଳାକରି ଧୀରେ,
ସଙ୍ଗୀତ ସଦାନନ୍ଦ କହିଲି ଯେ ଛନ୍ଦରେ ॥ ୩୨ ॥

ଗୀତ ବାଦ୍ୟ ତାଳ ନୃତ୍ୟ ଇତ୍ୟାଦି ଲକ୍ଷଣ,
ଦଶ ଛନ୍ଦରେ ବର୍ଣ୍ଣନ ପୁରାଣ ପ୍ରମାଣ ॥ ୩୩ ॥

ମୋହନଲତା ନାମରେ ଏ ଗୀତ ପ୍ରକାଶ,
ସମ୍ପୂର୍ଣ୍ଣକଲ ହୋଇଲା ଛାନ୍ଦ ଛୟାଳିଶ ।। ୩୪ ।।

କବି ବିନା ଏ ଶ୍ରମ କେ କରିବ ଗୋଚର,
ରସିକ ବିନା କେ ବୁଝେ ଏ ରସ ସାଗର ।। ୩୫ ।।

ପଶୁ ପ୍ରାୟେ ସମ୍ଭୋଗ ମାତ୍ରକ ମୂଳ ଯାର,
ସ୍ନେହ ନ ଜାଣଇ ଏଥି କି କାର୍ଯ୍ୟ ତାହାର ।। ୩୬ ।।

ରସ ଚର୍ବ୍ୟମାଣ ନୋହେ ଅମୃତ ଯା ତୁଲ,
ସକଳ ସାହିତ୍ୟେ ଏହି କଥା ଅଟେ ମୂଳ ।। ୩୭ ।।

ମୋ କବିତ୍ୱ ଗ୍ରାହକ ହୋଇବେ ଯେଉଁମାନେ,
ନାମ ଜାଣିଲେ ସମ୍ବାଦ ରଖିବେ ଯତନେ ।। ୩୮ ।।

ଏହି ଯେନ ସବୁ ଗ୍ରନ୍ଥ ଆଖ୍ୟା କହି ଏଥି,
ଗ୍ରାହକମାନଙ୍କ ଠାରେ ଏତଦର୍ଥେ ଅର୍ଥୀ ।। ୩୯ ।।

ଏ ମୋହନ କଳ୍ପଲତା ହୋଇଲା ସମ୍ପୂର୍ଣ୍ଣ,
ଆନନ୍ଦରେ ହରି ହରି ବୋଲ ସର୍ବ ଜନ ।। ୪୦ ।।

କବିସୂର୍ଯ୍ୟ ବ୍ରହ୍ମା କହେ କର ଯୋଡ଼ି କରି,
ସର୍ବେବୋଲ ମିଳନ୍ତୁ ତୁମ୍ଭଙ୍କୁ ରାଧା ହରି ।। ୪୧ ।। ※

'ମୋହନଲତା'ର ଉକ୍ତ ଛାନ୍ଦରୁ ଜଣାଯାଏ ଯେ, କବି ତେଇଶ-ଗୋଟି ଗ୍ରନ୍ଥ ରଚନା କରିବା ସଙ୍ଗେ ସଙ୍ଗେ ଓଡ଼ିଆ, ବଙ୍ଗଳା, ଖୁରୁଟି ଭାଷା ମାନଙ୍କରେ ଗ୍ରନ୍ଥରଚନା କରିଯାଇଛନ୍ତି । ଏହା ବ୍ୟତୀତ କବି ଚଉତିଶା, ଚଉପଦୀ ଓ ଜଣାଣ ଆଦି ମଧ୍ୟ ରଚନା କରିଅଛନ୍ତି । କବିଙ୍କ ସ୍ୱକୃତ ଗ୍ରନ୍ଥ-ତାଲିକା ଅନ୍ତର୍ଭୁକ୍ତ ସମସ୍ତ ଗ୍ରନ୍ଥ ହସ୍ତଗତ ହୋଇପାରି ନଥିଲେ ମଧ୍ୟ

---

ଛାନ୍ଦ – ୪୭

※ ଉପରୋକ୍ତ ମୋହନଲତା କାବ୍ୟଟି ଅପ୍ରକାଶିତ । ଏହାର ଏକ ପାଣ୍ଡୁଲିପି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍ : ଏ ଙ୍କ ନିକଟରୁ ପ୍ରାପ୍ତ ଓ ଅନ୍ୟ ଏକ ନକଲ ବାର୍ଣ୍ଣାବିହାର ପୋଥି ବିଭାଗରେ ସୁରକ୍ଷିତ । Ref.Cy 273

ତନ୍ମଧ୍ୟରୁ ଅନେକ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ ତାଲିକା ବହିର୍ଭୁକ୍ତ କେତେକ ଗ୍ରନ୍ଥ ଚଉତିଶା ଜଣାଣ ଆଦି ହସ୍ତଗତ ହୋଇଅଛି । କବିଙ୍କର ଅଧିକାଂଶ ଗ୍ରନ୍ଥ ବାଣୀବିହାରସ୍ଥ ପୋଥିବିଭାଗ ଓ ଓଡ଼ିଶା ମ୍ୟୁଜିୟମରୁ ସଂଗୃହୀତ ହୋଇଅଛି । ଉତ୍କଳ ବାଣୀବିହାରସ୍ଥ ପାଠାଗାରର ପୋଥି ବିଭାଗରୁ କବିଙ୍କର ନିମ୍ନସୂଚିତ କେତେକ ଅପ୍ରକାଶିତ କାବ୍ୟ ମିଳିଅଛି । (୧) ଯୁଗଳ ରସାମୃତ ଭଉଁରୀ, (୨) ଲଳିତଲୋଚନା, (୩) ମୋହନଲତା ବା ମୋହନ କଳ୍ପଲତା (୪) ତତ୍ତ୍ୱତରଙ୍ଗିଣୀ ଉତ୍ତରଖଣ୍ଡ (୫) ପ୍ରେମତରଙ୍ଗିଣୀ (୬) ପାଠରତ୍ନାବଳୀ (୭) ବ୍ରଜଲୀଳାମୃତ ସମୁଦ୍ର (୮) ପ୍ରେମକଳ୍ପଲତା (୯) ଯୁଗଳରସାମୃତ ଲହରୀ (୧୦) ଭଗବଦ୍‌ଗୀତାନୁବାଦ (୧୧) ନାମ-ଚିନ୍ତାମଣି (୧୨) ବିଦଗ୍‌ଧମାଧବ ଛାନ୍ଦ (୧୩) ସ୍ମରଦୀପିକା (୧୪) ସଙ୍ଗୀତ-ସଦାନନ୍ଦ ।

## କବି ତାଲିକା ବହିର୍ଭୂତ ଉପଲବ୍ଧ ଗ୍ରନ୍ଥ

(୧) ଖଞ୍ଜନ ଉଜ୍ଜ୍ୱଳ (୨) ବାଳବୋଧିନୀ (୩) ସ୍ମରଦୀପିକା ବା ସ୍ମରଶାସ୍ତ୍ର (୪) ଚୌର ଚିନ୍ତାମଣି (୫) ଭଗବଦ୍ ଗୀତାନୁବାଦ ।

**ଜଣାଣ :—**

(କ) ନୂଆଗଡ଼ ଲିଙ୍ଗୁକେଶ୍ୱରଙ୍କ ଜଣାଣ (ଖ) ଶ୍ରୀ ଚୈତନ୍ୟ ଜଣାଣ (ଗ) ମନଃ ଶିକ୍ଷା (ଘ) ଶ୍ରୀ ନୀଳାଦ୍ରିନାଥ ମହିମା ଜଣାଣ ।

**ଚଉପଦୀ :—**

(କ) "ମନମୋହନାରେ......" (ଖ) "ତୋହରିଆଡ଼ରୁ ଛାଡ଼ିଲୁ ମୋତେ" (ଗ) "ଆରେ ହରିଚନ୍ଦନା......" ଇତ୍ୟାଦି କବିତା ।

**ଚଉତିଶା :—**

(କ) ଦୁର୍ଲ୍ଲଭ ଚଉତିଶା (ଖ) କୋଇଲି ଚଉତିଶା (ଗ) ସଙ୍ଗିନୀ-ଚଉତିଶା (ଘ) ଚଉତିଶା ।

ଏ ପର୍ଯ୍ୟନ୍ତ କବି ସଦାନନ୍ଦ କବିସୂର୍ଯ୍ୟଙ୍କ କୃତ ୨୧ଟି କାବ୍ୟ, ୪ଟି ଜଣାଣ, ୪ଟି ଚଉତିଶା ଓ କେତେକ ଚୌପଦୀ ଓ କବିତା ହସ୍ତଗତ ହୋଇଅଛି ।

# ଉପଲବ୍ଧ ସମ୍ପାଦିତ ଗ୍ରନ୍ଥର ପ୍ରାମାଣିକତା

କବିଙ୍କ ଲିଖିତ ମାତ୍ର ଅଳ୍ପ କେତେଗୋଟି ପ୍ରକାଶିତ ଗ୍ରନ୍ଥକୁ ଛାଡ଼ିଦେଲେ ଆଜି ପ୍ରାପ୍ୟ ସମସ୍ତ କାବ୍ୟ ଏ ପର୍ଯ୍ୟନ୍ତ ତାଳପତ୍ର ପୋଥି ମଧ୍ୟରେ ସୀମାବଦ୍ଧ । ଉକ୍ତ ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ ଯୁଗଳ ରସାମୃତ ଲହରୀ, ପ୍ରେମ-ତରଙ୍ଗିଣୀ, ପ୍ରେମ କଳ୍ପଲତା, ନାମ ଚିନ୍ତାମଣି, ନିଷ୍ଠା ମାଳମଣି ପ୍ରଭୃତି ପାଞ୍ଚଗୋଟି ପୁସ୍ତକ ହସ୍ତଗତ ହୋଇଅଛି । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ 'ସ୍ମୃତି ଚିନ୍ତାମଣି' ଓ 'ଚୌର ଚିନ୍ତାମଣି' ନାମକ ଦୁଇଟି କାବ୍ୟ ପ୍ରକାଶିତ ହୋଇଥିବା କଥା ଉଲ୍ଲେଖ କରିଥିଲେ ମଧ୍ୟ ତାହା ଅଦ୍ୟାବଧି ହସ୍ତଗତ ହୋଇ ପାରିନାହିଁ । କବି କିନ୍ତୁ 'ମୋହନଲତା' କାବ୍ୟର ୪୬ ଛାନ୍ଦରେ ଉଲ୍ଲେଖ କରିଥିବା ସମସ୍ତ କାବ୍ୟକୃତି ମଧ୍ୟରେ ଉକ୍ତ ଦୁଇଟି କାବ୍ୟ ବିଷୟ ଉଲ୍ଲେଖ କରି ନାହାନ୍ତି । ମାତ୍ର ସ୍ୱର୍ଗୀୟ ମନମୋହନ ଚକ୍ରବର୍ତ୍ତୀ, ପଣ୍ଡିତ ବିନାୟକ ମିଶ୍ର ଓ ଶ୍ରୀ କେଦାରନାଥ ମହାପାତ୍ର ପ୍ରଭୃତି ବିଶିଷ୍ଟ ସମାଲୋଚକ-ମାନେ କବି ସଦାନନ୍ଦଙ୍କର ରଚିତ ଗ୍ରନ୍ଥ ତାଲିକା ମଧ୍ୟରେ 'ଚୌରଚିନ୍ତାମଣି' କାବ୍ୟର ନାମ ଉଲ୍ଲେଖ କରିଅଛନ୍ତି । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମଧ୍ୟ ଉକ୍ତ 'ଚୌରଚିନ୍ତାମଣି' କାବ୍ୟ ଉପରେ ଦୀର୍ଘ ତିନିପୃଷ୍ଠା ବ୍ୟାପୀ ଆଲୋଚନା କରିଅଛନ୍ତି । ମାତ୍ର କବିଙ୍କ ସମ୍ପାଦିତ କାବ୍ୟମାନଙ୍କ ମଧ୍ୟରେ ଯେଉଁ 'ସ୍ମୃତିଚିନ୍ତାମଣି' କାବ୍ୟର ନାମ ପଣ୍ଡିତ ମହାଶୟ ଉଲ୍ଲେଖ କରିଛନ୍ତି, ତାହା ତ୍ରୁଟିପୂର୍ଣ୍ଣ ମନେହୁଏ । କାରଣ କବି ସଦାନନ୍ଦ ନିଜେ ବା ଅନ୍ୟ କୌଣସି ସମାଲୋଚକ ଉକ୍ତ କାବ୍ୟର ଅସ୍ତିତ୍ୱ ବିଷୟରେ ସୂଚନା ଦେଇନାହାନ୍ତି । ଏହା ବ୍ୟତୀତ ଏହି ନାମରେ କୌଣସିଠାରେ ତାଳପତ୍ରପୋଥି ମଧ୍ୟ ଦୃଷ୍ଟି-ଗୋଚର ହୋଇନାହିଁ ।

(୧) **ସମ୍ପାଦିତ ଗ୍ରନ୍ଥ 'ଯୁଗଳ ରସାମୃତ ଲହରୀ'** :— ଭକ୍ତକବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ବିରଚିତ ଉକ୍ତ ଗ୍ରନ୍ଥଟି ଦୁଇଥର ମୁଦ୍ରିତ ହୋଇଅଛି । ପ୍ରଥମଥର କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରଧାନ ପଣ୍ଡିତ ଶ୍ରୀ ସର୍ବେଶ୍ୱର ଆଚାର୍ଯ୍ୟଙ୍କ ଦ୍ୱାରା ସଂଶୋଧିତ ହୋଇ ପ୍ରକାଶିତ ହୋଇଥିଲା । ଦ୍ୱିତୀୟଥର ୧୯୬୪ ମସିହାରେ ପଣ୍ଡିତ ଶ୍ୟାମସୁନ୍ଦର ନାୟକଙ୍କ ଦ୍ୱାରା ସଂଶୋଧିତ ହୋଇ ଶ୍ରୀ ଅଜୟକୁମାର ଘୋଷ (ଶ୍ରୀ ହରନାଥ ପ୍ରେସ, କଟକ-୨)ଙ୍କ ଦ୍ୱାରା ମୁଦ୍ରିତ ହୋଇଅଛି । ଏହି ପୁସ୍ତକଟି ୧୮୧ ପୃଷ୍ଠା ବିଶିଷ୍ଟ

ଓ ୫୮ ଛାନ୍ଦରେ ପୁସ୍ତକଟି ସମାପ୍ତ ହୋଇଛି । ଉକ୍ତ ୫୮ ଛାନ୍ଦ ବା ଶେଷଛାନ୍ଦ ୭୯ ପଦ ବିଶିଷ୍ଟ ।

କିନ୍ତୁ ଓଡ଼ିଶା ମ୍ୟୁଜିୟମସ୍ଥ ପୋଥିବିଭାଗରୁ ମିଳିଥିବା ଏକ ପୋଥି ସହିତ ମୁଦ୍ରିତ ପୁସ୍ତକର କେତେକ ଛାନ୍ଦ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଯଥା-ପୋଥିରେ ୫୭ ଛାନ୍ଦ ହେଉଛି ଶେଷ ଛାନ୍ଦ ମାତ୍ର ଏବଂ ୫୭ ଛାନ୍ଦ ମୁଦ୍ରିତ ୫୭ ଛାନ୍ଦ ଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏହି ୫୭ ଛାନ୍ଦରେ କିନ୍ତୁ କବିଙ୍କ ଜୀବନୀ ସମ୍ପର୍କରେ ବହୁ ମୂଲ୍ୟବାନ ତଥ୍ୟ ଅନ୍ୟ ପୋଥି ଅପେକ୍ଷା ଅଧିକ ଦର୍ଶା-ଯାଇଅଛି ।

ମ୍ୟୁଜିୟମରୁ ମିଳିଥିବା ଅନ୍ୟ ଏକ ତାଳପତ୍ର ପୋଥିର ସମସ୍ତ ଛାନ୍ଦ ଓ ପଦ ଆଦି ପ୍ରକାଶିତ ପୁସ୍ତକ ସହ ମିଳିଯାଉଅଛି, କିନ୍ତୁ ନାମକରଣ ଭିନ୍ନ କରାଯାଇଅଛି । ଯଥା 'ଭକ୍ତିରସ ଲହରୀ' ବା 'ଭକ୍ତି ରସାମୃତ ଲହରୀ' । ଏତଦ୍‌ଭିନ୍ନ ମୁଦ୍ରିତ ପୁସ୍ତକର ୫୮ ଛାନ୍ଦ ୭୯ ପଦରେ ସମାପ୍ତ ହୋଇଥିବା ସ୍ଥଳେ ଏହା ୮୨ ପଦରେ ଶେଷ ହୋଇଅଛି । ଯୁଗଳ ରସାମୃତ ଲହରୀ କୃଷ୍ଣ ବିଷୟକ ଏକ ଭକ୍ତି ରସାତ୍ମକ କାବ୍ୟ । ଏହି କାବ୍ୟର ପ୍ରଥମ ଛାନ୍ଦରେ କବି ନିଜର ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ ମଙ୍ଗଳାଚରଣ କରି ରାଧା, ଚନ୍ଦ୍ରାବଳୀ ପ୍ରଭୃତି ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣନା କରିଅଛନ୍ତି । ତୃତୀୟ ଛାନ୍ଦଠାରୁ ୧୭ଶ ଛାନ୍ଦ ପର୍ଯ୍ୟନ୍ତ ଚନ୍ଦ୍ରାବଳୀ ଓ କୃଷ୍ଣଙ୍କ ପ୍ରେମଲୀଳା ଏବଂ ୧୭ଶ ଛାନ୍ଦଠାରୁ ଶେଷ ଛାନ୍ଦ ପର୍ଯ୍ୟନ୍ତ ରାଧା ଓ କୃଷ୍ଣଙ୍କ ପ୍ରେମଲୀଳା ହେଉଛି ସମଗ୍ର କାବ୍ୟଟିର ବିଷୟବସ୍ତୁ । ଏଥିରେ ନାୟକ ନାୟିକାଙ୍କ ଉତ୍କଣ୍ଠା, ବିରହ, ଚାଟୁ ବିନମୟ, ବିହାର ପ୍ରଭୃତିର ଭାବ ସୁନ୍ଦର ରୂପରେ ବର୍ଣ୍ଣିତ ହୋଇଅଛି । ଏହି କାବ୍ୟରେ ରାଧାକୃଷ୍ଣ ଚନ୍ଦ୍ରାବଳୀ ପ୍ରଭୃତିଙ୍କ ବାଲ୍ୟଲୀଳା ବର୍ଣ୍ଣିତ ହୋଇନାହିଁ । କେବଳ ପୌଗଣ୍ଡ ଓ କୈଶୋର ଅବସ୍ଥାର ଲୀଳା ବର୍ଣ୍ଣିତ ହୋଇଅଛି । ଏହି ହେତୁ ବିଷୟଟି ଅସମ୍ପୂର୍ଣ୍ଣ ବୋଲି ଯାହା କବି କହିଛନ୍ତି, ତାହା ସମ୍ଭବ ମନେ ହୁଏ ।

କବିଙ୍କର ମଧୁପୁର ଅବସ୍ଥାନ ସମୟରେ ଏହି କାବ୍ୟଟି ରଚିତ ହୋଇଥିଲା । ଆଉମଧ୍ୟ ଏଥିରେ କବି ଲେଖିଅଛନ୍ତି :

"ଶ୍ରୀବୀରକେଶରୀ ଦେବ ପଞ୍ଚାବନ ଅଙ୍କରେ ।
ଗ୍ରନ୍ଥ ଆରମ୍ଭ ବାହୁଡ଼ା ଗୁଣ୍ଡିଚାରେ ॥"

ଗଣନା ଅନୁସାରେ ବୀରକେଶରୀ ଦେବଙ୍କ ୫୫ ଅଙ୍କ ଖ୍ରୀ:ଅ ୧୭୮୧ରେ ପଡ଼ୁଅଛି । ତେଣୁ ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ 'ଯୁଗଳରସାମୃତ ଲହରୀ' କାବ୍ୟଟି ୧୭୮୧ ଖ୍ରୀ:ଅ ରେ ରଚିତ ହୋଇଅଛି । (କବିଙ୍କ କାଳ-ନିରୂପଣ ପ୍ରସଙ୍ଗରେ ଏ ବିଷୟରେ ସୁବିସ୍ତୃତ ଆଲୋଚନା କରାଯାଇଅଛି ।)

'ମୋହନଲତା' କାବ୍ୟରେ କବି ପ୍ରଦତ୍ତ ଗ୍ରନ୍ଥସୂଚୀ ଅନୁଯାୟୀ 'ଯୁଗଳରସାମୃତ ଲହରୀ' କବିଙ୍କ ଦ୍ୱିତୀୟ ରଚିତ କାବ୍ୟ । ଏହା ପୂର୍ବରୁ 'ଲଳିତଲୋଚନା' ରଚିତ ହୋଇ ସାରିଥିବାର ପ୍ରମାଣ ମିଳେ । କାରଣ ଏହି 'ଯୁଗଳରସାମୃତ ଲହରୀ' ର ୩୪ ଛାନ୍ଦକୁ 'ଲଳିତଲୋଚନା' 'ନୟନମିଳନ' ବାଣୀରେ ଗାଇବା ନିମନ୍ତେ ଓ ୫୧ ଛାନ୍ଦକୁ 'ଲଳିତ-ଲୋଚନା ନାୟକ ଚଟାଉ ବାଣୀ' ରେ ଗାଇବାକୁ ନିର୍ଦ୍ଦେଶ ଥିବାରୁ ଏହା ସୁସ୍ପଷ୍ଟ । 'ଯୁଗଳରସାମୃତ ଲହରୀ' ବ୍ୟତୀତ କବିଙ୍କ ଅନ୍ୟ ରଚନାର ସଠିକ ସମୟ ନିରୂପଣ କରିବା ସମ୍ଭବ ନୁହେଁ ।

## (୨) ସମ୍ପାଦିତ ଗ୍ରନ୍ଥ 'ପ୍ରେମତରଙ୍ଗିଣୀ' :

ଉକ୍ତ ଗ୍ରନ୍ଥଟିର ପ୍ରଥମ ମୁଦ୍ରଣ ସନ ୧୯୩୧ ମସିହାରେ କଟକସ୍ଥ ଶ୍ରୀରାସବିହାରୀ ମଠ ଦ୍ୱାରା ହୋଇଥିଲା ଓ ଶ୍ରୀ ରାଧାକୃଷ୍ଣ ବସୁ ଏମ୍.ଏ ଏହାର ପ୍ରକାଶକ ଥିଲେ । ତତ୍କାଳୀନ କଟକ ପ୍ରିଣ୍ଟିଂ କମ୍ପାନୀ ଲିମିଟେଡ଼ଙ୍କ ମୁଦ୍ରଣାଳୟରେ ୨୮୦ ପୃଷ୍ଠାର ଏ ପୁସ୍ତକଟି ମୁଦ୍ରିତ ହୋଇଥିଲା ।

ଓଡ଼ିଶା ମ୍ୟୁଜିୟମସ୍ଥ ପୋଥି ବିଭାଗରୁ ମଧ୍ୟ ଏହି ନାମରେ ଦୁଇଟୋଟି ତାଳପତ୍ର ପୋଥି ଅଛି । ପ୍ରକାଶିତ ପୁସ୍ତକଟି ଉକ୍ତ ଦୁଇ ତାଳପତ୍ର ପୋଥି ସହିତ ପ୍ରାୟ ମିଳିଯାଉଅଛି । ୩୭ ଛାନ୍ଦ ବିଶିଷ୍ଟ ଏହି ପୁସ୍ତକଟିରେ କବି ସଦାନନ୍ଦ କୃଷ୍ଣଙ୍କ ମାଧୁର୍ଯ୍ୟ ରସପୂର୍ଣ୍ଣ ଯୁଗଳପ୍ରେମର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଗୌରାଙ୍ଗ ଅବତାରର ମାହାତ୍ମ୍ୟ ଓ ଆବଶ୍ୟକତା ସମ୍ବନ୍ଧରେ ତାତ୍ତ୍ୱିକ ବ୍ୟାଖ୍ୟା କରିଅଛନ୍ତି । ରାଧାକୃଷ୍ଣଙ୍କ ରେକାୟା ପ୍ରୀତି 'ରସଅନୁଭବୀ' ମାନଙ୍କୁ ଆସ୍ୱାଦନ କରାଇବା ଲକ୍ଷ୍ୟରେ କବି ଏହି ଗ୍ରନ୍ଥରେ ଏହି ରସର ଏକ ଏକ ଦିନର ଘଟଣାକୁ ବିଷୟବସ୍ତୁ ରୂପେ ଗ୍ରହଣ କରିଛନ୍ତି ।

## ପ୍ରଥମ ଛାନ୍ଦ :

### 'ମଙ୍ଗଳା ଚରଣ'

ଅପ୍ରାକୃତ ଅନଙ୍ଗରେ ପୀଡ଼ିତ ହୃଦୟ ।
ମହାଭାବ ରୂପା ରସରାଜ ଜୟ ଜୟ ହେ ॥ ୫ ॥

ଅନର୍ପିତୋଜ୍ଜ୍ୱଳ ରସ ଯେ ସମ୍ପଦ ସାର ।
ଚିରକାଳୁ ତାହା ଏବେ କଲେ ଯେ ବିସ୍ତାର ॥ ୯ ॥

ଯେବେ ରାଧାକୃଷ୍ଣ ଏକା ଦେହରେ ଭଜିଲେ ।
ଆମ୍ଭେ ଐଶ୍ୱର୍ଯ୍ୟ ନମାନୁ ମାଧୁର୍ଯ୍ୟ ସେ ବୋଲେ ॥ ୧୭ ॥

ଏହା ଶୁଣି ହସ ନମାଡ଼ିବଟି କାହାକୁ ।
ବ୍ରଜ ପରକୀୟା ରସ ଛୁଇଁନାହିଁ ବୁକୁ ଯେ ॥ ୧୮ ॥

ଯେଣୁ ସ୍ୱୟଂ ଭଗବାନ ସର୍ବଘଟେ ତହିଁ ।
ତଥାପି ରସିକର ଏ ତତ୍ତ୍ୱ ଗ୍ରାହ୍ୟ ନୋହି ଯେ ॥ ୧୯ ॥

× × ×

## ଦ୍ୱିତୀୟ ଛାନ୍ଦ :

ଉପମେୟଙ୍କ ସାର ବା ଏକତ୍ର କରି ।
ପୁଷ୍ପବନ୍ତ ଚକରେ ପେଷିଲ କି କରି ॥ ୮ ॥

ଲବଣୀ ମିଶାଇ ଦଳି କଲା ଚିକ୍କଣ ।
ଘନ ଶିଳେ ରସାଣିଲା କରି ନିର୍ମାଣ ॥ ୯ ॥

ଜୀବନ୍ୟାସ କରି ଜଗନ୍ମୋହନ ମନ୍ତ୍ରେ ।
ମହୀକି ଆଣିଛି ବାମା ବଧିବା ଯନ୍ତ୍ରେ ॥ ୧୦ ॥

ଲଳିତାଦି ସଖୀଗଣ ଯାଉଛ ସର୍ବେ ।
ଅଘାଟକୁ ଯିବୁ ଯହିଁ କେହି ନ ଥିବେ ॥ ୩୫ ॥

× × ×

## ତୃତୀୟ ଛାନ୍ଦ :

"ଘନ କୋଳେ କି ଚଞ୍ଚଳା ଅବା ଚଳେ ଗୋ ।
କସେ ସ୍ୱର୍ଣ୍ଣ ପ୍ରାଚୀର ମର୍କତ ଆଳ ଗୋ ॥

ଜବା କେତକୀ ବେତ୍ର ତମାଳ-ଦଳେ ଗୋ ।
ଦେଖା ହେଲା ବେଳୁଁ ଲେଖା ହେଲା ଡୋଳେ ଗୋ ।।

ସତେ ମିଳିବକି ହେ ପୁଣ୍ୟ ଫଳ ଗୋ" ।।

**ଚତୁର୍ଥ ଛାନ୍ଦ :**

"ଲଳିତା ବିଶାଖା ଯେତେକ କରି କଉତୁକ ।
କାଞ୍ଚିଲି ଫିଟା ଉରେ ସଜନୀ ପଡ଼ିଲେ ସମ୍ପୁଟକ ।। ୨୩ ।।

ତାଙ୍କୁ ମୋତେ ଏକାନ୍ତେ ମଧ୍ୟରେ ସଖୀଗଣ ।
ମିଳାଇଲେ ନେଇରେ ସଜନୀ କି କହିବି ତା ଗୁଣ ।। ୨୪ ।।

ଏବେ ବୈଦ୍ୟ ହୋଇଣ ଅଇଲେ ଦାମୋଦର ।
କର ଦେଖୁଁ ଦେଖୁଁରେ ସଜନୀ ଉରଜେ ଦେଲେ କର ।। ୨୫ ।।"

**ପଞ୍ଚମ ଛାନ୍ଦ :**

**"ଶ୍ରୀରାଧାଙ୍କ ପ୍ରେମାନୁରାଗ"**

"ପ୍ରୀତି ହୋଇ ମାତ୍ର ବେନି ଅକ୍ଷର, କାହୁଁ ଜନ୍ମିଲା କାହିଁ ତାର ଘର ।
ମୋ ହୃଦ ମଧ୍ୟେ ପଶିଲା କି କରି, ନିରତେ ନେତ୍ରୁ ବୁହାଇଲା ବାରି ।
ସେ ଛାଡ଼ି ନଗଲା, ମୋ ସୁନା ଦେହ ଚୂନା କରି ଦେଲା ।। ୫ ।।

ଦହନ ନୋହେ ଦହୁଅଛି ଚିତ୍ତ, ସେ ପ୍ରୀତି ଜାଣି ନୁହଇ କେମନ୍ତ ।
ବିଷ ନୁହଇ ଅଙ୍ଗ ହୁଏ ଧାରି, ଅମୃତ ନୁହେଁ ସ୍ୱାଦୁ ସର୍ବୋପରି ।
ନୋହେତ କତୁରୀ, ହୃଦ କାଟୁଛି ଠିକ ଠିକ କରି ।। ୬ ।।

× × ×

**ଷଷ୍ଠ ଛାନ୍ଦ**—'ଶ୍ରୀକୃଷ୍ଣଙ୍କ ଅନୁକୂଳ ନାୟକ ଲକ୍ଷଣ'
**ସପ୍ତମ ଛାନ୍ଦ**—'ଚନ୍ଦ୍ରାବଳୀଙ୍କ ଚାଟୁ', **ଅଷ୍ଟମ ଛାନ୍ଦ**—"ଦକ୍ଷିଣ ନାୟକ ଲକ୍ଷଣ"

**ସଂଗୀତାଙ୍କ**—

ଧନ୍ୟ ସାରିଗମ ପରି ହୁଅଇ, ଆଗେ ପଛେ ଯା ପଦକୁ ଫେରାଇ ।। ୮୧ ।।
ତାତାଧିନା ନାଖି ରାଗ ଧିକତ, ବିରହରେ ଏ ସଙ୍ଗାତ ସଙ୍ଗୀତ ।। ୮୨ ।।

କୃଷ୍ଣ ନାମ ମୋ କପାଳରେ ମାଣ୍ଡ, ମୃଗ ମଦରେ କରିଦେଇ ଚିହ୍ନ ॥ ୧୦୩ ॥
ଚନ୍ଦ୍ରମୁଖୀ ଚରଣ ଧୂଳି ଶିରେ, ବୋଲି ଦେବଟି ଉଷୀର ସଙ୍ଗରେ ॥ ୧୦୪ ॥
କଣ୍ଠେ କହୁଥିବ ନନ୍ଦ ନନ୍ଦନ, ତମାଳକୁ କରି ମୁଁ ଆଲିଙ୍ଗନ ॥ ୧୦୫ ॥
ପ୍ରାଣ ଛାଡ଼ିବ ହାହା ବନ୍ଧୁ ବୋଲି, ଦୁଃଖ ନାଶନ ଉପାୟ କହିଲି ॥ ୧୦୬ ॥
ପଢ଼ି କୃଷ୍ଣ କାନ୍ଦି ଉଠେ ଉଚ୍ଚରେ, ମୂର୍ଚ୍ଛି ହେଲା ଶ୍ରୀଅଙ୍ଗ ସାତ୍ତ୍ୱିକରେ ॥ ୧୧୩ ॥

ଏହିଭାବେ କୃଷ୍ଣ ଚିଠାଉ ପାଠ କରି ଅଧୈର୍ଯ୍ୟ ହୋଇ ଉଠିଲେ ।

ନବମ ଛାନ୍ଦ :—'ଆଶ୍ରୟ' ଦଶମ ଛାନ୍ଦ—'ଶ୍ରୀକୃଷ୍ଣଙ୍କ ଦଶା'

**ଏକାଦଶ ଛାନ୍ଦ—'ବ୍ରଜ ବଳାପ'**

"ଏବେ କି କରିବି ଆଗୋ ଦୁର୍ଗାଦେବୀ ମୋହର ନୋହେ ଏ ଝିଅ ଦେଇଛୁ ।
ଏଥର ଦୁର୍ଗତି ନାଶ ଭଗବତୀ କେତେ ବିପତ୍ତିରୁ ତୁ ରଖିଛୁ ॥

ଆହେ ସଦାଶିବ, ଶିରେ ଦୁହାଁଇବି ଲକ୍ଷେ ଗାବ
ଲକ୍ଷେ ଚମ୍ପା ଲକ୍ଷେ ବିଲ୍ୱପତ୍ରୀ ଦେବି
ମୋ ପୁତ୍ର ଏ ବ୍ୟାଧିରୁ ବଞ୍ଚିବ ॥ ୫ ॥

କେ ବୋଲଇ ଭୂତ ଲାଗିଛି ନିଶ୍ଚିତ,
କେହି ନ ଯିବା ସ୍ଥାନକୁ ଯାଇ
କେ ବୋଲେ ଭେଟଣା ହେଲା ଗଲା ଜଣା
ଏ ରୂପ ଦେଖି କେ ନ ଲୋଭଇ ।
ଯେଉଁ ଭଙ୍ଗୀ ତା'ର ଦେଖି ଦେବେ ହେବେ ଜରଜର
ଶୀଘ୍ରେ ଗୁଣିଆଙ୍କୁ ଆଣ ହୋ ଡ଼କାଇ
କେ ବୋଲଇ ବାତ ସନ୍ଧି ତା'ର ॥ ୭ ॥

ଏ ବାରତା ପାଇ ଗୃହଚନ୍ଦ୍ରମୁହିଁ
ରାଧିକା ଦେହେ ଚେତନା ନାହିଁ ।
ଗଜ ଭକ୍ଷିବାର କପିତ୍ଥ ପ୍ରକାର,
ବାହାରକୁ ଦମ୍ଭେ ଅଛି ରହି ।

× × ×

**ଦ୍ୱାଦଶ ଛାନ୍ଦ**—ସତୀ ପରୀକ୍ଷା

"ସହସ୍ର ରନ୍ଧ୍ର କରାଇ ଆଣ ସ୍ୱର୍ଣ୍ଣ ପାତ୍ର
କଶାଣି ଦିଆଅ ଡ଼ାକ ଏ ନଗର ମାତ୍ର ଯେ ॥ ୧୦ ॥

ପତିବ୍ରତା ଯେ ଥିବ ଆସି ଘଟ ଟେକୁ
ଧର୍ମ ପ୍ରମାଣରେ ତହିଁ ବନ୍ଦ୍ୟ ଏ ନଗକୁ ଯେ ॥ ୧୧ ॥

ଏହା ଶିରେ ଢ଼ାଳିଲେ ଉଠିବ ଏହିକ୍ଷଣ
ଏକ କଥା, ବାହୁଡ଼ଇ ଯାଇଥିଲେ ପ୍ରାଣ ହେ ॥ ୧୨ ।

ପୁଣି ବ୍ରହ୍ମଋଷି ରାଧା ପାଶରେ ପ୍ରବେଶ,
କରପତ୍ର ଯୋଡ଼ି ମୁଖେ ମଣ୍ଡି ମନ୍ଦ ହାସ ଯେ ॥ ୨୫ ॥

ବୋଲେ ତୁମ୍ଭେ ପତିବ୍ରତା ଗଣ ଶିରୋମଣି,
ଜ୍ଞାନେ ଗୋଚର କଲିଣି ପୂର୍ବେ ଅଛୁ ଶୁଣି ଗୋ ॥ ୨୬ ॥

ଶୁଣିଅଛୁ କୃଷ୍ଣ ଯେବେ ସକଳ ଈଶ୍ୱର,
ତେବେ ମୁଁ ଜାଣଇ ପ୍ରାଣନାଥ ଏ ମୋହର ॥ ୩୫ ॥

ଯେବେ ଏହା ଆନ ବନାଠାରେ ମନ ଥିବ,
ତେବେ ସିନା ଘଟ ତୋଳ ସର୍ବଥା ନୋହିବ" ॥ ୩୬ ॥

ତ୍ରୟୋଦଶ ଛାନ୍ଦ—'ମଧୁମଙ୍ଗଳଙ୍କ କପଟ ଚଟାଉ'

ଚତୁର୍ଦ୍ଦଶ ଛାନ୍ଦ—'ମଧୁମଙ୍ଗଳର ଦ୍ୱିତୀୟ କପଟ ଚଟାଉ'

**ପଞ୍ଚଦଶ ଛାନ୍ଦ**—'ଅନ୍ଧକାର ବର୍ଣ୍ଣନ'

"କୁଳଟା ନାରୀଏ ଅଭିସାର କଲେ, ବାରବାମା ହେଲେ ବେଶ ।
ହରଷରେ ଚୋର ବାହାର ହୋଇଲେ, ହରଷେ ଧର୍ମ ସର୍ବସ୍ୱ" ॥ ୧୨ ॥

**ଷୋଡ଼ଶ ଛାନ୍ଦ**—'ଗୋବର୍ଦ୍ଧନ ମଲ୍ଲ ଓ ଚନ୍ଦ୍ରସେନ କରିହ୍ନ'

ମଲ୍ଲ ନାହିଁ ବୋଲି ମାନନ୍ତି ପ୍ରାୟେ
ଏଣିକି ତେଣିକି ମୁଖ ଲୁଚାଏ

ଚନ୍ଦ୍ରସେନ ବଳେ ଭୁଜ ଭିଡ଼ିଲା
ଉଚ୍ଚ ଉରଜ ଆଉଁଷି ପୀଡ଼ିଲା ଯେ

ବସ୍ତୁରେ ବଡ଼ କଠିନ ଯେ
ଭଣ୍ଡ ଗ୍ରାହକଙ୍କୁ ମିଥ୍ୟା ମାଗୁଣିଆ,
ପଗ୍ଭ ହେଲା ସେ ମିଥୁନ ଟେ" ॥ ୧୨ ॥
ବଳାତ୍କାରେ ଚୁମ୍ବ ଦଅନ୍ତେ ଗଣ୍ଡେ,
ଖାଉକେଶ ଆଡ଼ ଲଗିଲା ଗ୍ଭୁଣ୍ଡେ ।
ଦେବ କି ଅସୁର ମନରେ ଗ୍ଭଳ
ମଳିଛି ହୋ ବୋଲି ଗ୍ଭଟେ୍ଡ଼ ବୋବାଳ ସେ
ଭୂତ ହୋ ବୋଲ ଗୋପାଳେ ସେ
କେ ଗୃହ ଦଗରୁ ଲୋଷ୍ଟ୍ରପାତ କଲେ
କେ ଯଷ୍ଟି ପିଟିଲେ ତଳେ ଯେ ॥ ୧୪ ॥

× × ×

ସପ୍ତଦଶ ଛାନ୍ଦ—'ଚନ୍ଦ୍ରାବଲ୍ୟାର୍ଥେ କୃଷ୍ଣାଭିସାର' ଅଷ୍ଟାଦଶ ଛାନ୍ଦ—'କଳି କୃଷଭ' ଊନବିଂଶ ଛାନ୍ଦ—'ଶ୍ରୀକୃଷ୍ଣଙ୍କ ଗୃହୋକ୍ତି' ବିଂଶ ଛାନ୍ଦ—'ଚନ୍ଦ୍ରାବଳୀଙ୍କ ସହ ମିଳନ' ଏକବିଂଶ ଛାନ୍ଦ—'ରାଧାଗୁଣ ସ୍ମରଣ' ଦ୍ୱାବିଂଶ ଛାନ୍ଦ—'ମନ କଳ୍ପନା' ତ୍ରୟୋବିଂଶ ଛାନ୍ଦ— 'ଗୋପୀମାନଙ୍କର ବୃନ୍ଦାବନ ଗମନ' ଚତୁର୍ବିଂଶ ଛାନ୍ଦ—'ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା' ପଞ୍ଚବିଂଶ ଛାନ୍ଦ—'ସ୍ୱକାପ୍ରା ସ୍ଥାପନ' ଷଡ଼୍‌ବିଂଶ ଛାନ୍ଦ –'ମୁରଲୀ ମହିମା' ସପ୍ତବିଂଶ ଛାନ୍ଦ—'ପ୍ରୀତିକଥନ' ଅଷ୍ଟବିଂଶ ଛାନ୍ଦ—'ଶ୍ରୀକୃଷ୍ଣଙ୍କ ଅଷ୍ଟୋତ୍ତର ଶତନାମ' ଊନତ୍ରିଂଶ ଛାନ୍ଦ—'ଶ୍ରୀକୃଷ୍ଣଙ୍କ ନାରୀ ବେଶରେ ନୃତ୍ୟ କରିବା' ତ୍ରିଂଶ ଛାନ୍ଦ—ଶ୍ରୀରାଧାଙ୍କର କୃଷ୍ଣ ବେଶ ଏକତ୍ରିଂଶ ଛାନ୍ଦ—ଶ୍ରୀରାଧାଙ୍କ ମୁରଲୀ ବାଦନ ଦ୍ୱାତ୍ରିଂଶ ଛାନ୍ଦ—ଶ୍ରୀରାଧାକୃଷ୍ଣ ମିଳନ ତ୍ରୟୋତ୍ରିଂଶ ଛାନ୍ଦ—ସ୍ୱପ୍ନ ଦର୍ଶନ ଚତୁସ୍ତ୍ରିଂଶ ଛାନ୍ଦ-ଶ୍ରୀକୃଷ୍ଣଙ୍କ ଶଯ୍ୟାତ୍ୟାଗ ଓ ପ୍ରାତଃକୃତ୍ୟ ପଞ୍ଚତ୍ରିଂଶ ଛାଂନ୍ଦ—ବ୍ରଜସୁଖ ବର୍ଣ୍ଣନା ଷଟ୍‌ତ୍ରିଂଶ ଛାଂଦ—ଗୌରାଙ୍ଗ ଅବତାର ।

ଏହି କାବ୍ୟଟି କବିଙ୍କ ଚତୁର୍ଥ ରଚନା । କବି ଏହି କାବ୍ୟ ସମ୍ବନ୍ଧରେ ମଧ୍ୟ 'ମୋହନଲତା' ରେ ଉଲ୍ଲେଖ କରିଅଛନ୍ତି—

"ଶ୍ରୀପ୍ରେମତରଙ୍ଗିଣୀ ଯେ ଚମତ୍କାର ରସ । ଛତିଶ ଛାଂଦରେ ସେହୁ ହୋଇଅଛି ଶେଷ ॥" ୪୭ ଛାଂଦ (ମୋହନକଳ୍ପଲତା-୪୭ ଛାଂଦ)

## (୩) ସମ୍ପାଦିତ କାବ୍ୟ 'ପ୍ରେମକଳ୍ପଲତା'—

ଏହି ପୁସ୍ତକଟି ବହୁ ପୂର୍ବରୁ ମୁଦ୍ରଣ ଯୋଗୁଁ ବର୍ତ୍ତମାନ ଛିନ୍ନ ଅବସ୍ଥାରେ ହସ୍ତଗତ ହୋଇଅଛି । ପୁସ୍ତକର ଆରମ୍ଭରେ ଥିବା ଭୂମିକାରୁ ଜଣାଯାଏ ଯେ, ଯାଜପୁରସ୍ଥ ଜନୈକ ଶ୍ରୀଯୁକ୍ତ ନୀଳମଣି ଧଳ ମହାଶୟଙ୍କ ଦ୍ୱାରା ଏହା ପ୍ରଥମେ ପ୍ରକାଶିତ ହୋଇଥିଲା ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ ଏହାର ପାଣ୍ଡୁଲିପି ସଂଶୋଧନ କରିଥିଲେ । ଏହା ମାତ୍ର ୨୬ ପୃଷ୍ଠା ସମ୍ବଳିତ ଏକ କ୍ଷୁଦ୍ର କାବ୍ୟ । ଏହା ବ୍ୟତୀତ ଉକ୍ତ 'ପ୍ରେମକଳ୍ପଲତା' ନାମରେ ଦୁଇଗୋଟି ତାଳପତ୍ର ପୋଥି ଓଡ଼ିଶା ଅଭିଲେଖାଗାରରେ ସଂରକ୍ଷିତ ।

ଉକ୍ତ ତାଳପତ୍ର ପୋଥି ଦୁଇଟି ପ୍ରକାଶିତ ପୁସ୍ତକ ସହିତ ସମ୍ପୂର୍ଣ୍ଣ ମିଳିଯାଉଅଛି । ଷୋହଳଟି ଛାନ୍ଦ ବିଶିଷ୍ଟ ଏହି କ୍ଷୁଦ୍ର କାବ୍ୟଟି ରାଧାକୃଷ୍ଣଙ୍କ ଲୀଳା ବିଷୟରେ ବର୍ଣ୍ଣିତ । ପ୍ରତ୍ୟେକ ଛାନ୍ଦ ୧୬ଟି ପଦ ଦ୍ୱାରା ଗଠିତ । ଏହି କ୍ଷୁଦ୍ର କାବ୍ୟଟି କବିଙ୍କର 'ବ୍ରଜଲୀଳାମୃତ ସମୁଦ୍ର' 'ଯୁଗଳରସାମୃତ ଲହରୀ' 'ଯୁଗଳରସାମୃତ ଭଉଁରୀ' ଓ 'ପ୍ରେମତରଙ୍ଗିଣୀ' ପ୍ରଭୃତି କାବ୍ୟ ରଚନା ପରେ ରଚିତ ହୋଇଥିବା ବିଷୟ କବି ଉକ୍ତ କାବ୍ୟର ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଛନ୍ତି ।

"ଯା ଦୟାରେ ରଚିଲି ଲୀଳାମୃତ ସାଗର ।
ଲହରୀ ଭଉଁରୀ ବିନ୍ଦୁ ନଦୀ ସଙ୍ଗର ॥ ୧୨ ॥
ପ୍ରେମକଳ୍ପଲତା ବଢ଼ୁ ଏବେ ଜନମରେ
ଭବ ଗ୍ରୀଷ୍ମ ତାପ ନାଶୁ ଛାୟା ବିଶ୍ରାମରେ" ॥ ୧୩ ॥

(ପ୍ରେମକଳ୍ପଲତା ୧ମ ଛାନ୍ଦ)

ଏହି କାବ୍ୟଟି କବିଙ୍କ ପ୍ରଦତ୍ତ କାବ୍ୟ ତାଲିକାସ୍ଥ ପଞ୍ଚମ କାବ୍ୟ । ତେଣୁ ଏହା ୧୭୮୧ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ରଚନା । କବି ମଧ୍ୟ ଉକ୍ତ କାବ୍ୟ ସମ୍ବନ୍ଧରେ ଉଲ୍ଲେଖ କରିଅଛନ୍ତି—"ଶ୍ରୀଲ ପ୍ରେମକଳ୍ପଲତା ମଥୁରା ଗମନେ, ବର୍ଣ୍ଣିତ ହୋଇଛି ଷଟଦଶ ଛାନ୍ଦେ ତେଣେ ॥" (ମୋହନଲତା-୯୬ଛାନ୍ଦ)

ଶ୍ରୀକୃଷ୍ଣଙ୍କ ମଥୁରାଗମନ ବୃତ୍ତାନ୍ତ ଏହାର ବିଷୟବସ୍ତୁ । ଏହା ଶ୍ରୀରୂପଗୋସ୍ୱାମୀ କୃତ 'ଉଦ୍ଧବସନ୍ଦେଶ' ର ଛାୟାରେ ରଚିତ ହୋଇଥିବା ଅନୁମାନ କରାଯାଏ । ମୂଳ କାବ୍ୟଟି ୧୬ ଛାନ୍ଦ ହୋଇଥିବା ସ୍ଥଳେ ବାଣୀ-ବିହାର ପୋଥି ବିଭାଗରୁ ପ୍ରାପ୍ତ ହୋଇଥିବା ଅନ୍ୟ ଏକ ପୋଥିରେ ୧୮ଟି

ଛାନ୍ଦ ନଦେଖାଯାଏ । ତେବେ ୧୮ଶ ଛାନ୍ଦ ବା ଶେଷ ଛାନ୍ଦରେ ନକଲକାରୀଙ୍କ ଦ୍ୱାରା ଅଧିକ ଛାନ୍ଦ ଯୋଗ କରାଯାଇଥିବା ବିଷୟ ଲେଖନକାର ନିଜେ ପ୍ରକାଶ କରିଅଛନ୍ତି ।

## ପ୍ରଥମ ଛାନ୍ଦ—

ଅନନ୍ତ ପ୍ରଣାମ କରି ସ୍ୱେ ବଲ୍ଲଭ ପାଦେ ।
ଜଣାଣ କରୁଛୁ ଏଥେ ଆରତେ ଶ୍ରୀପାଦେ ॥ ୪ ॥

ହେ କୃଷ୍ଣ ବଛାପାଳକ ବାଛୁରୀ ମୋଚନ ।
ବିଷୟାବିଷୟ ଗର୍ଭକୁ କରୁଛୁ ଗମନ ॥ ୫ ॥

କୃପା ଯଷ୍ଟିରେ ସ୍ୱେହାକୁ ନିବାରଣ କର ।
ତବ ଲୀଳାମୃତାବ୍ଧି କି ଲଭ୍ଭ ସ୍ୱେ କିଙ୍କର ॥ ୬ ॥

ଖଳ ଖାରି ବହିଲେ ଶ୍ୟାମ ଚନ୍ଦନ ଭାର ।
ଗ୍ରାହକ ନୋହ ଅସାର ସାର ସମ୍ଭାର ॥ ୯ ॥

ଅପ୍ରଚୁର ସଂସ୍କୃତ ଗଣା ଚର୍ବଣ କୃତ ।
ନିନ୍ଦିଲେ ବିଶ୍ୱର ନାହିଁ ସେ ତାଙ୍କ ପ୍ରକୃତ ॥ ୧୦ ॥

× × ×

## ଦ୍ୱିତୀୟ ଛାନ୍ଦ—

ଯେ କୃଷ୍ଣ ଚରିତ ଅଗାଧ ସରିତ ସମରେ ବର୍ଣ୍ଣି ନୋହିବ ।
ବ୍ରଜବଧୂଙ୍କର ସଙ୍ଗରେ ତାଙ୍କର ଯେ ରସ ପୀରତି ଭାବ ॥ ୩ ॥

ଯେମନ୍ତ କୃପଣ ନିକରେ ଆପଣ ଆନକୁ ପାଇଲା ଧନ ।
ଅତ୍ୟନ୍ତ ମୋଦରେ ନୟନ ହୃଦରେ ରଖି କୃଷ୍ଣ ଭଙ୍ଗୀ ମାନ ॥ ୯ ॥

ସ୍ୱପନ ସାକ୍ଷାତ ଚିତ୍ରପଟେ ଖ୍ୟାତ ହୋଇ ଅନ୍ୟୋନ୍ୟରେ ବେନି ।
ବିରହେ ବ୍ୟାକୁଳ ଲଭି ବେନି କୂଳ ମିଳା ମିଳା ଧନ ଧନୀ ॥ ୧୨ ॥

ପର ସ୍ୱବ ପୁରବଧୂ ପ୍ରତି ସର ସ୍ୱତନ୍ତ୍ର ନୋହେ ବିଧିରେ ।
ସଖା ସଖୀବାରେ ସହାୟ ହେବାରେ ସଂଯୋଗ କେଉଁ ଦିନରେ ॥ ୧୩ ॥

× × ×

## ତୃତୀୟ ଛାନ୍ଦ—

"ସର୍ବ ସର୍ବତରେ ଯୂଥେଶ୍ବରୀ ସବେ ଯାଇଁ ।
ରାଧା ରାଧାକାନ୍ତ ମୁଖୀ ତତୋଽଧିକ ହୋଇ ॥ ୧୩ ॥

ଭ୍ରମ ଭ୍ରମରେ ତମାଳ ପର୍ବତ କାନନ ।
ଆପ ଆପଣା ଦେହରେ ହୋଯେ କୃଷ୍ଣ ଜ୍ଞାନ ହେ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଭାଳେ,
ସେ ବାସେ ବାମାଙ୍କୁ କରିବ କ ଦାସୀ ମେଳେ ହେ" ॥ ୧୬ ॥

## ଚତୁର୍ଥ ଛାନ୍ଦ—

"ଶୁଣ ଯେ ଗୀତ ଶୁଣ ଆହେ ସୁଗୀତ ବିଦ୍ୱାନୀ ପୁଣ ପୁଣ ।
ଗୋବିନ୍ଦ ସଙ୍ଗ ଗୋପୀ ପ୍ରସଙ୍ଗ ତୁମ୍ଭ ପୁରାଣ ରାଣ ॥ ୧ ॥

ଶୃଙ୍ଗାରେ ରତି ଧରି ସୁରତି ଯହିଁ ବିହରି ହରି ।
ସେହୁ ଥାନର ସୁନାସି ବର ଲକ୍ଷ ଏକ କ କରି ॥ ୧୫ ॥

ଆହେ ସୁଜନେ ତେଜ ଯା ଜନେ ହରି ଶବଦ ବଦ ।
ଯେ ସଦାନନ୍ଦ ବ୍ରହ୍ମା ଆନନ୍ଦ ଭକ୍ତି ସଦ୍ ଗଦଗଦ" ॥ ୧୬ ॥

× × ×

## ପଞ୍ଚମ ଛାନ୍ଦ—

ନରିଦ ନନ୍ଦନା କରୀନ୍ଦ୍ର ଗମନା ପାରୀନ୍ଦ୍ର ମଧ୍ୟମା ।
ଚନ୍ଦନ ସୁମନା ନନ୍ଦନ ବାସନା କୁନ୍ଦନ ପ୍ରତିମା ॥ ୧ ॥

ରଞ୍ଜନ ସୁଭ୍ରୁରୁ ଭଙ୍ଗିମା ପ୍ରିୟ ସଜନୀ ପାଶରେ ।
କହଇ ମୋ ଦେହ ବହଇ କ ଅଗ୍ନି ନୋହଇ ଲକ୍ଷରେ ॥ ୨ ॥

ହେଉଛି ଉଦ୍‌ଗାର ଦେଉଛି ତ ଭୀତ ଯାଉଛି ଭରସା ।
ପେଟକ ବୋବାଯେ ଯାଚକ ପରାଯେ ସୂଚକ ଦୁର୍ଦ୍ଦଶା ॥ ୪ ॥

ନ ପୁଣ ମୋ ପ୍ରୀତି ରୋପଣ ତରୁକୁ କ୍ଷେପଣ କରିବେ ।
ଶରଣ ଗୋବିନ୍ଦ ଚରଣ ସିନା ମୋ କାରଣ ଦଇବେ ॥ ୫ ॥

× × ×

**ଷଷ୍ଠ ଛାନ୍ଦ**—କୃଷ୍ଣଙ୍କର ମଥୁରା ଯିବା ସମୟରେ ଗୋପୀମାନଙ୍କର ଆକୁଳ ବର୍ଣ୍ଣନା :—

"ଯିବା ଶୁଣି ମଧୁପୁର ପୁରଂଠ ମୁକୁଟ ଧର,
ଧର ଧର ବର ବର ନର ସେ ଜନେ ।
ଜନମ ଦିନରୁ ଗୁଣ ଗୁଣନ୍ତ ସେ ଯେ ପ୍ରମାଣ,
ମାଣ ବକ ଆଦି ଚେଷ୍ଟା ଯେତେ ବିଧାନ ।
ଧ୍ୟାନ କର ଚନ୍ଦ୍ରମା ମୁଖ,
ମୁଖରୁ ପ୍ରଭୃତି କାନ୍ଦେ ଆନ କ ଲେଖ ॥ ୧ ॥

× × ×

ଗୃହରେ ମାଳ ଅନ୍ତରେକ ରେକ କଟି ନାସା ଲୋକ
ଲୋକନ କରନ୍ତି ଆସି ବେଢ଼ି କୃଷ୍ଣଙ୍କୁ ।
ଆଶୀର୍ବାଦ ଦ୍ୱିଜବର ବରଷୁ ସୁଅନୁକୂଳ,
କୁଚ ଚନ୍ଦ୍ରମାଙ୍କୁ କରାଇଲେ ଭରସି ।
ରସିକେ ସ୍ନେହା କ ଘେନିମ,
ନିମଗ୍ନ ହୋଇଲେ କବିସୂର୍ଯ୍ୟ ଜାଣିମ" ॥ ୧୬ ॥

**ସପ୍ତମ ଛାନ୍ଦ**—

ଢୁ ଢୁ ଶୁଭେ ନନ୍ଦ ଦ୍ୱାରେ ଚୁଣ୍ଡିଭୁତ ଲୋକେ କରନ୍ତି କୋଳାହଳ,
ଭ୍ରୂ ଭ୍ରୂଜକଂସକୁ କେ ଗାଳି ଦିଅନ୍ତି କେ କର ମାରନ୍ତି କପାଳ,
ସୁଜନ ହେ; କେତେ ହୁଅନ୍ତି କୁହାକୋହ୍ନ ।
ଯେ ହେଡ଼େ ପ୍ରୀତି ଆସେ ତେଡ଼େ ବେଦନା ଗାଇବେ
ଲୀଭ ହେଲ ଏହ୍ନ ॥ ୧ ॥

ଭ୍ରୂଂ ଭ୍ରୂଂ ଶୁଭେ ଯୋଡ଼ା ଶଙ୍ଖ ଅନ୍ତରେକ ଡ଼ିଣ୍ଡିମ କରମାଳା ଦୋସର
ଭେଁ ଭେଁ ଭେରସ୍ୱର କର୍ଣ୍ଣେ ମାହ ଭରି ଚାନ ମର୍ଦ୍ଦଳ ଆଦି କରି ।

ସୁଜନ ହେ;  ଭୁ ଭୁ ଭୁଗ୍ନ ସେ ଏକ୍ସପର
ଝେଁ ଝେଁ ନାଦ କରି ମଙ୍ଗଳ ମନ୍ତ୍ରସ୍ୱି ଦେଲା ଗୋପୀଙ୍କ ଜ୍ଞାନ ସାର ॥ ୨ ॥

× × ×

**ଅଷ୍ଟମ ଛାନ୍ଦ**—'କୃଷ୍ଣଙ୍କର ଗୋପାଙ୍ଗନାଙ୍କୁ ପ୍ରବୋଧନା'

"ମୋର ଅଭୟ ଚରଣ ତହିଁରେ ପଶି ଶରଣ
ଶରଣ କରଇ ମୋ ଗୁଣ ସୁମରଣେ,
ତାହାକୁ କରଣ ରଣ ସ୍ଥିର ରସର ମାରଣ
ସର୍ବ ଅମଙ୍ଗଳ ନିବାରଣ ରେ ରସାନୁଗା ।
ଅପ୍ରାକୃତ ମନ୍ମଥ ଚରଣ, ପ୍ରାକୃତ ଶୃଙ୍ଗାର ଯେଉଁ ଉଜ୍ଜ୍ୱଳ କରଣ ରେ ॥୧୦॥

ମୁଁ ଯେ ତୁମ୍ଭମାନଙ୍କର ଚରଣ କିଣା କଙ୍କର ସର୍ବଗୁଣ ବିବେକ ଆକାର
ଯା କହୁଛି ମନେକର ଭଲ ଅନୁମାନ କରି ଗଣ୍ଠି ଧନ ତୁମ୍ଭେ ସୁରଙ୍କର ଯେ
ଆବେଶ୍ୟ, ବସିଯାଅ ବୋଲି ଆଜ୍ଞା କର,
ଶୃଶ୍ୱଦନେ ଆସି ପାଦେ ମଣ୍ଡିବି ସ୍ନେହ କରି ରେ" ॥ ୧୪ ॥

**ନବମ ଛାନ୍ଦ**—

ସେ ଯେ ସମହିର ଭାବ ସମହିର ବିଜୟେ କଲେ ରଥରେ ଯାଇଁ,
ସାରଥି ଅକ୍ରୂର ହେଲେହେଁ ଅକ୍ରୂର କ୍ରୂର ଚେଷ୍ଟା ଆରମ୍ଭିଲେ ତହିଁ,
ବଢ଼ି ଗୋପ ଗୋପୀ ଦୁରୁ ନିକଟେ ସର୍ବତ୍ର ବ୍ୟାପୀ
ପୁର ପ୍ରାଚୀର ବୃକ୍ଷକୁ ଆରୋହଣ ସକଳ ଦୃଷ୍ଟି ରଥକୁ କ୍ଷେପି,
ଯେ ଯାହାକୁ ଭଜେ ସେ ତାକୁ ନ ତେଜେ
ଆଜ ଯାଏ ଏହା ମନେ ଥାଇ,
ସ୍ନେହେ ଯେ ଜାଣିଲୁ ତୁମ୍ଭଙ୍କୁ ଯେ ଭଜେ,
ଶୋକାର୍ଣ୍ଣବେ ନିଷ୍ଠେ ଭସିଯାଇ ॥

ଆହେ ବିମ୍ବାଧର, ବନ୍ଧୁ ବନ୍ଧୁ ବୋଲି କଲ ପର ।
ଖାଣ୍ଟି ସୁନା ହେଲା ଗିଲ୍‌ଟି ପିତଳ,
ରଙ୍କ ତୁଣ୍ଡେ ଦେଲ କେ ପଥର ॥ ୮ ॥

× × ×

**ଦଶମ ଛାନ୍ଦ—**

"ସୁଧୀରେ ଶୁଣ ସେ ବଧିରେ କେହ୍ନ ସୂନ୍ତ କେବଳ ।
ପଥରେ ଚଳା ସେ ରଥରେ ସେ ମଥୁରା ମଙ୍ଗଳ ॥ ୧ ॥

ସେବାକୁ ଅଯୋଗ୍ୟ ଧୋବାକୁ ମାରି ମୁକ୍ତ ସେ ଦେଲେ ।
ପ୍ରସନ୍ନ ମନ ସୁ ବସନ ଲୁଟିକଲେ ପନ୍ହିଲେ ॥ ୩ ॥

ମାମୁଁଙ୍କୁ କହିବା ତୁମ୍ଭଙ୍କୁ ଯାଇ ମୋର କି ଦୋଷ ।
ଭ୍ରଷ୍ଟରେ ମିଳନ୍ତେ ପାଣରେ ପ୍ରାଣ ଛାଡ଼ିଲା କଂସ ॥ ୧୦ ॥

ଯାଦବେ ସର୍ବେ ବସୁଦେବେ ଆଦି ଲଭିଲେ ସୁଖ ।
ଉଦ୍ଧବ ସଙ୍ଗରେ ମାଧବ ସଖା ପ୍ରୀତି ଅଲକ୍ଷ୍ୟ ॥ ୧୩ ॥

**ଏକାଦଶ ଛାନ୍ଦ—**

"ଦେବ ଦୁର୍ଲ୍ଲଭ ଭଜେ ମାନ ନୀରସ,
ପାଇଁ ତେଜି କୃଷ୍ଣ ମନ ବିରସ ।
ଦାନକ ଦାନକର ସମାନକୁ, କି ଲକ୍ଷ କରିବେ ତା ସମାନକୁ ।
ତା ସନମାନକୁ ଓଷ୍ଠ ସୁଧାଦି ଉପନ ମାନକୁ ॥ ୧ ॥
କୃଷ୍ଣ ବିରହ ଜାଣନ୍ତେ ଉଦ୍ଧବ, ହେଲେ ବୈକୁଣ୍ଠେ ଯା ଉଦ୍ଧବ ।
ଭଜନ୍ତି ଯାକୁ ବିଷ୍ଣୁ ଉମାଧବ, ତ୍ରିଭୁବନ ପତି ଯେ ରମାଧବ ॥
ବନଚର ଜୀବ, ବୋଲନ୍ତି ତାଙ୍କ ବିନା ଜୀବ ଜବ ॥ ୧୫ ॥

× × ×

**ଦ୍ୱାଦଶ ଛାନ୍ଦ—**

ମାଧବର ଯେ ଘେନି ସନ୍ଦେଶ,
ଉଦ୍ଧବ ଗୋପେ ହୋଇଲେ ପ୍ରବେଶ ।
ଉଦ୍ଧବ ହୋଇଲା ନନ୍ଦ ମନ୍ଦିରେ,
ସାଧବ ଯେସନେ ଭାଗ୍ୟବନ୍ତ ନରେ ॥
ବାନ୍ଧବ ମତେ ବେଭାର ଯେ,

ମାଧବର ତୃଷ୍ଣା ପ୍ରେ ସର୍ବ ମାନସ ତୋଷିଲା
ସେ ଯଦୁବରେ ଯେ ॥ ୧ ॥

× × ×

## ତ୍ରୟୋଦଶ ଛାନ୍ଦ—

ଉଦ୍ଧବ କହଇ ବଚନ । ନକର ମନ ଛନଛନ ॥ ୧ ॥
କୃଷ୍ଣତ ଅବ୍ୟକ୍ତ ସର୍ବଜ୍ଞ । ଚର ଅଚର ତତ ସହିତ ॥ ୨ ॥
ଷଟଚକ୍ର ମଧ୍ୟସ୍ଥ ରୂପ । ପରମ ଈଶ୍ବର ସ୍ବରୂପ ॥ ୩ ॥
ଶଙ୍ଖଚକ୍ର କମଳ କର । କର୍ତ୍ତବ୍ୟ କୃତ ଜଗତର ॥ ୪ ॥
ଶବଦ ଚଳନର ବତ । ଅକ୍ଷ ପ୍ରତ୍ୟକ୍ଷ ଯେ ଜଗତ ॥ ୫ ॥
ସତ ଜନଇ ବନମଣ । ଅନନ୍ତ ଅଗମ୍ୟ ଆପଣ ॥ ୬ ॥
ଅକଥନ ଆଦ୍ୟ ଅକ୍ଷର । ଅକ୍ଷୟ ଅବ୍ୟୟ ଅସ୍ବର ॥ ୭ ॥

× × ×

## ଚତୁର୍ଦ୍ଦଶ ଛାନ୍ଦ—

"ସମାଧି ଜାଣିଲେ ଉଦ୍ଧବ ଗୋପୀକା ବେଢି କହନ୍ତି ବାରବାର ।
ସେ ଜ୍ଞାନ କହ ସେ ସାଧନା ଅଟଇ ସର୍ବ ଗୁରୁ ଶିବ ଶିବାର ।
ଉଦ୍ଧବ ! କେମନ୍ତେ ଆମ୍ଭେ ସାଧିବାର
ଆଗ ଆମ୍ଭ କାନ୍ତ କୃଷ୍ଣଙ୍କୁ ମିଳାଅ ସଯୋଗେ ତା ଆରାଧିବାର ॥ ୧ ॥
ଚନ୍ଦ୍ର ଆହ୍ଲାଦ ପଦ୍ମ ପ୍ରସନ୍ନତା ଦର୍ପଣ ଝଳ ବଳବାର ।
ଘନ କଜ୍ଜ୍ବଳ ତମାଳ ଜତ କାନ୍ତି ଯେ ପାଖେ ପାନ ଥିବାର ।
ଉଦ୍ଧବ ! ସେ ବାମା ଲୋଚନ ହେବାର
କାଟି ବ୍ରହ୍ମଜ୍ଞାନ ମୁଣ୍ଡେ ପାଦ ଦେଇ ହେବ ଦନ୍ତଘାତ ଦେବାର ॥ ୩ ॥
ଯାହାକୁ ବୋଲ ପରମବ୍ରହ୍ମ ମର୍ମ ନାହିଁ ତୁମ୍ଭର ବୁଝିବାର ।
ସେ ବୋଲେ ଆମ୍ଭଙ୍କୁ ଇଚ୍ଛା ମୋର ତୁମ୍ଭ ଚରଣ ଦାସୀ ହୋଇବାର ।
ଉଦ୍ଧବ ! ତା ନୋହେ ଆମ୍ଭ କହିବାର
ଈଶ୍ବର କଥା ସତ୍ୟ କି ମିଥ୍ୟା କହ ତାକୁ ପୁଚ୍ଛି ପ୍ରତେ ଯିବାର" ॥ ୪ ॥

× × ×

## ଷୋଡ଼ଶ ଛନ୍ଦ—

କୃଷ୍ଣ ପାଶରେ ଉଦ୍ଧବ ପରବେଶ । ନନ୍ଦ ଯେ କହୁ ଷନ୍ନିଧ୍ୟ ଚରବେଶ ଯେ ।
ଦଇବେ ଆସ୍ଥା ନାହିଁ ଦେହରେ ତାର ।
ବୋଲେ ସର୍ବେଶ୍ୱର ବୁ ହେ ହର ତାର ଯେ ॥ ୧ ॥

ଗୋପୀ ଜନ ନମାନେ କଣ୍ଠାକରେ । ଦେଶୁ ଆପଣ ଥାଉଁ ତାଙ୍କ ଡ଼ାକରେ ।
ବୋଇଲେ ଜନେ ଭୁଲି ମର ସଂସାରେ ।
ଆସୁଚେ ଜାଣୁ ଯେ ଶ୍ୟାମର ସଂସାର ଯେ ॥

ନଷ୍ଟ ନୋହନ୍ତ ସେତ ପଣ୍ଡ ବରଜ । ସ୍ନେ ମୋହର ସମ୍ପତ୍ତି ବରଜ ଯେ ॥
ଅଧୈର୍ଯ୍ୟରୁ ମୁଁ ଭୁଲି ଯର ସଙ୍ଗରେ ।
ନଶି ଧନ ନେଲେ ମୋ ପରଶରେ ॥ ୧୦ ॥

## ସପ୍ତଦଶ ଛନ୍ଦ—

ହେ କୃଷ୍ଣ ହେ ବ୍ରଜପୁରେ । ସୁ ସ୍ନେହ ଭୁମ୍ନ ମନରେ ॥ ୧ ॥
ଦେଶୁ ସେ ମୋ ନଜ ସ୍ଥାନ । ଏଣୁ କରଅଛୁ ବନ ॥ ୨ ॥
ନବେଷ୍ଟକ-"ସକଳ କାର୍ଯ୍ୟ କାରଣ, ସଦନ ନନ୍ଦ ନନ୍ଦନ" ॥ ୩ ॥
ଧବେଷ୍ଟକ-"ଭବେ ପ୍ରେମ ବାମା ଭାବ । ଭୀମ ଭାବ୍ୟ ପ୍ରଭୁ ଭୁବ" ॥ ୪ ॥
ଅନୁନାସିକ-"ନମୋ ନାନା ନାମ ମାନ । ନୁନ ନ ମଣିମ ନ୍ୟୁନ" ॥ ୫ ॥
ସଙ୍ଗସମକ-"ମୋହନରେ ମୋହନ ରେ । ବରହରେ ବରହରେ" ॥ ୬ ॥
ଏକାକ୍ଷର-"ତନ ତନ୍ତତ ନା ନତ । ତୁ ତା ତୋତେ ତୁ ତା ସ୍ତତ" ॥୭ ॥
ଷୋଡ଼ଶଦଳ ବନ୍ଧ-"ରତ ପଣ୍ଡ ରସଦୃଶ । ରମ୍ୟ ସାମ୍ୟ ରସ ରାସ" ॥ ୯ ॥
"ରମା ଉମା ରନ୍ତ ପଣ୍ଡ । ରତ ପ୍ରୀତିର ମୁରଣ" ॥ ୧୦ ॥
ଖଡ୍‌ଗବନ୍ଧ-"ବରଦ ରସାର ସାର । ସାର ଦାର ମାର ଦର" ॥ ୧୧ ॥
"ବର କର ଧର ଧର । ନର ଖର ଖର ବେର" ॥ ୧୨ ॥
ଗଦାବନ୍ଧ-"ମୋର ଶର ସାର ହର । ହର ଶରଙ୍କର କର" ॥ ୧୩ ॥
"କର ଜର ଦର ବର । ଦର ଗିରଧର ଉର" ॥ ୧୪ ॥"
ଶମ୍ଭୁବନ୍ଧ-"ପରମ ରମଣୀ ମଣି । ମଦ ଧନରେ ନ କଣି" ॥ ୧୫ ॥
"ଜାଣି ଶୁଣି କଳବଳ । କବ ରବର ବକଳ" ॥ ୧୬ ॥

**ଅଷ୍ଟାଦଶ ଛାନ୍ଦ—**

ଗୀତ ପ୍ରେମ କଳ୍ପଲତା । ଶୁଣି ରସଇ ପଣ୍ଡିତା ।।
ସୁଖ ଜନକୁ ସେ୍ୱ ମାନ । ଅଟଇ ବଳ ସେ୍ୱ ।। ୧ ।।

କବି କବିସୂର୍ଯ୍ୟ ବ୍ରହ୍ମା । କହଇ ବନ୍ଧେ ଶୁଣିମା ।
ଷୋଳ ଛାନ୍ଦରେ ପ୍ରମାଣ । ଗ୍ରନ୍ଥ ସେ୍ୱ ଜାଣ ।। ୩ ।।

ଲେଖନକାର ଶ୍ରୀହରି । ମନରେ ବିସ୍ମର କରି ।
ତାଙ୍କ ନାଁ ଏ ତନପଦ । କରେ ଶବଦ ସେ୍ୱ ।। ୪ ।।

ଆଶିନ୍ୟ ପକ୍ଷ ନବମୀ । ଦ୍ୱାବିଂଶରୁ ଅଙ୍କେ କମି ।
ଶନି ରବିବାର ବେଳା । ଝେଲେ ଚଞ୍ଚଳା ସେ୍ୱ ।। ୫ ।।

× × ×

କହଇ ଶ୍ରୀହରି ପଦ । ଶ୍ରୀକୃଷ୍ଣର ପଦ୍ମପାଦ ।
ପାଦ ଲଭୁ ପୁଷ୍ପମୋଦ । ମୁଁ ଷଟପଦ ସେ୍ୱ ।। ୧୬ ।।

ଉକ୍ତ ଶେଷ ଛାନ୍ଦଟି ମୁଦ୍ରିତ ପୁସ୍ତକରେ ନାହିଁ । ବାଣୀବିହାରସ୍ଥ ପୋଥିବିଭାଗରୁ ଏହି ଅଧିକ ଛାନ୍ଦଟି ଗ୍ରହଣ କରାଯାଇଅଛି ।

**(୪) ସମ୍ପାଦିତ ଗ୍ରନ୍ଥ 'ଶ୍ରୀନାମଚନ୍ତାମଣି'** * :—

କବିଙ୍କର ଏହି କାବ୍ୟଟି ୧୯୦୬ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟଥର ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ୨୩ ପୃଷ୍ଠା ବିଶିଷ୍ଟ ଏହି ପୁସ୍ତକର ମୂଲ୍ୟ ଥିଲା ମାତ୍ର ଦୁଇଅଣା । କବି 'ମୋହନଲତା' କାବ୍ୟରେ ଏହି କାବ୍ୟ ବିଷୟରେ ଉଲ୍ଲେଖ କରି ଲେଖିଛନ୍ତି—"ଶ୍ରୀଶ୍ରୀ ନାମଚନ୍ତାମଣି ଅଟେ ଛାନ୍ଦ ବାର"

ଦ୍ୱାଦଶ ଛାନ୍ଦ ବିଶିଷ୍ଟ ଏହି କ୍ଷୁଦ୍ର କାବ୍ୟଟିରେ ନାମର ମାହାତ୍ମ୍ୟ ପ୍ରତିପାଦନ କରାଯାଇଅଛି । କୃଷ୍ଣ ହିଁ 'ନାମଚନ୍ତାମଣି' । କବି ଏଥିରେ ଅଜାମିଳ, ଜଗାଇ ମାଧାଇ, କୁମ୍ଭୀର, ପିଙ୍ଗଳା, ଦ୍ରୌପଦୀ, ମୀରାବାଈ ଓ ହରିଦାସ ପ୍ରଭୃତି ନାମୀ ଭକ୍ତଙ୍କ ଦୃଷ୍ଟାନ୍ତ ଦେଇଛନ୍ତି । ଏଥିରେ ଶ୍ରୀଚୈତନ୍ୟଙ୍କ

* ଏହି କାବ୍ୟର ଏକ ପାଣ୍ଡୁଲିପି କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ କଟରପା ଗ୍ରାମ ନିବାସୀ ଶ୍ରୀଯୁକ୍ତ ବୈକୁଣ୍ଠନାଥ ପଣ୍ଡାଙ୍କଠାରୁ ସଂଗୃହୀତ ।

ଅଷ୍ଟୋତ୍ତର ଶତନାମ, ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଅଷ୍ଟୋତ୍ତର ଶତନାମ ବର୍ଣ୍ଣିତ ହୋଇଅଛି । ଏଥିରେ ଓଡ଼ିଶାର ଗଜପତି ଓ ମନ୍ତ୍ରୀ ରାୟ ରାମାନନ୍ଦଙ୍କ ନାମ ମଧ୍ୟ ଉଲ୍ଲେଖ ହୋଇଅଛି । 'ମୋହନଲତା' କାବ୍ୟରେ ପ୍ରଦତ୍ତ ଗ୍ରନ୍ଥ ତାଲିକା ଅନୁସାରେ ଏହା କବିଙ୍କ ସପ୍ତମ ରଚନା । ତେଣୁ ଏହା ୧୭୮୧ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ କାବ୍ୟ ।

## (୫) ସମ୍ପାଦିତ ଗ୍ରନ୍ଥ 'ନିଷ୍ଠାନୀଳମଣି' :—

୧୯୨୦ ଖ୍ରୀଷ୍ଟାବ୍ଦରେ ଉକ୍ତ କାବ୍ୟଟିର ପ୍ରଥମ ସଂସ୍କରଣ ଶ୍ରୀରାଧାକୃଷ୍ଣ ବସୁ ଏମ୍.ଏ ଙ୍କ ଦ୍ୱାରା ସଂଶୋଧିତ ହୋଇ କଟକ ଇଉନିୟନ ପ୍ରିଣ୍ଟିଂ ଓ୍ୱାର୍କସରେ ମୁଦ୍ରିତ ହୋଇଥିଲା ।

ଏହା ଏକ ଭକ୍ତି ରସାତ୍ମକ କ୍ଷୁଦ୍ର କାବ୍ୟ । ଏଥିରେ ଶ୍ରେଷ୍ଠ ଶ୍ରେଷ୍ଠ ବାର ଗୋଟି ଛାନ୍ଦ ଅଛି । ବୈଷ୍ଣବ ଧର୍ମର କେତୋଟି ମୂଳତତ୍ତ୍ୱ ଏଥିରେ ବର୍ଣ୍ଣିତ ହୋଇଅଛି । ଶ୍ରୀଚୈତନ୍ୟଦେବଙ୍କ ପ୍ରଚରିତ ଓ ରୂପ ଓ ସନାତନ ଗୋସ୍ୱାମୀ ଦ୍ୱାରା ପ୍ରତିପାଦିତ ତତ୍ତ୍ୱ ଓ ଆଚାର ବିଚାରାଦି ବିଷୟମାନ ଏଥିରେ ବର୍ଣ୍ଣିତ ହୋଇଅଛି ।

ପ୍ରଥମ ଛାନ୍ଦରେ କବି ସରସ୍ୱତୀଙ୍କୁ ସ୍ତୁତି କରି କାବ୍ୟ ଆରମ୍ଭ କରିଛନ୍ତି ଏବଂ ତତ୍ସହ ନିଜର ଦୈନ୍ୟ ଭକ୍ତି ପ୍ରକାଶ କରିଛନ୍ତି ।

"ବନ୍ଧୁ ଛାନ୍ଦ ବନ୍ଧକାବ୍ୟ ସଂସ୍କୃତ ମତେ ।
ମୋ ମୁଖେ ପ୍ରକାଶିଲ ସଂସ୍କୃତ ସମ୍ମିଳତେ ।। ୩ ।।
ଅପଭ୍ରାଳଙ୍କାରାଦି ସାମଗ୍ରୀ ବହୁତ । କବି ସାମର୍ଥ୍ୟ ଯଦ୍ୟପି ତହିଁରେ ପ୍ରଖ୍ୟାତ ।।
ମହାକବି ନାମ ଖ୍ୟାତ ପ୍ରତିଷ୍ଠାଦି ଯହିଁ ।
ତେବେହେଲେ ତହିଁରୁ ମୋ ପ୍ରୟୋଜନ ନାହିଁ ।।

× × ×

### ଦ୍ୱିତୀୟ ଛାନ୍ଦ—'ସମ୍ବନ୍ଧ ନିଷ୍ଠା'

"ବେଦ ପ୍ରବୃତ୍ତି ନିବୃତ୍ତି ଦୁଇମାର୍ଗ ପ୍ରବୃତ୍ତି ସଂସାରେ ସୁଖ ।
ନିବୃତ୍ତି ମାର୍ଗେ ଜନ୍ମ ମୃତ୍ୟୁ ଛୁଟଇ ସେ ଧର୍ମ ଅତି ଅଲକ୍ଷ୍ୟ ।। ୪ ।।

ଦ୍ୱିପ୍ଟିଡ ବାଘ ବୈଷ୍ଣବ ବୋଲନ୍ତି ଅଦ୍ୱୈତବାଘ ଯେ ସ୍ମାର୍ତ୍ତ ।
ଈଶ୍ୱର ପରେ ଭେଦାଭେଦ ସମ୍ବନ୍ଧ କରନ୍ତି ଜୀବ ତା ଭକ୍ତ ॥ ୬ ॥

ଶୈବ ଶାକ୍ତ ଗାଣପତ୍ୟ ସଉର ଯେ ଚାରି ସମ୍ପ୍ରଦା ତାଙ୍କର ।
ପ୍ରବୃତ୍ତି ନିବୃତ୍ତି ଦୁଇମାର୍ଗେ ଭ୍ରମ ଗତାଗତ ନିରନ୍ତର ॥ ୭ ॥

ସେବ୍ୟ ସେବକ ସମ୍ବନ୍ଧ ବୈଷ୍ଣବର କୃଷ୍ଣ ପ୍ରଭୁ ଆମ୍ଭେ ଦାସ ।
ଶ୍ରୀବ୍ରହ୍ମ ରୁଦ୍ର ସନକ ସମ୍ପ୍ରଦାୟ ଚତୁର ରୂପେ ପ୍ରକାଶ ॥ ୮ ॥

ଶ୍ରୀ ଯେ ଲକ୍ଷ୍ମୀ ତାଙ୍କ ମତରେ ପ୍ରଧାନ ହୋଇଲେ ଯେ ରାମାନୁଜ ।
ବ୍ରହ୍ମାଙ୍କ ମତ ଭକ୍ତରେ ଯେ ବିଦିତ ମାଧ୍ୱ ଆଚାର୍ଯ୍ୟଙ୍କ ନିଜ ॥

ସନକମାନଙ୍କ ମତରେ ପ୍ରଧାନ ହୋଇଲେ ସେ ନିମ୍ବାନୁଜ ।
ଶିବଙ୍କ ମତ ଗ୍ରହଣ କଲେ ବିଷ୍ଣୁସ୍ୱାମୀ ଏ ପ୍ରକାରେ ହେଜ ॥

ଏହି ଚାରି ସମ୍ପ୍ରଦାୟର ଚାରିଧାମ ଯଥା-: ରାମନାଥ, ବଦରୀନାଥ, ଦ୍ୱାରକା ନାଥ, ପୁରୁଷୋତ୍ତମ ବା ଜଗନ୍ନାଥ ପ୍ରସିଦ୍ଧ । ଏହି ଚାରିଧାମ ମଧ୍ୟରୁ ବୃନ୍ଦାବନକୁ ନିତ୍ୟଧାମ କୁହାଯାଏ ।

**ତୃତୀୟ ଚ୍ଛନ୍ଦ—**

"ଅନେକ ଶାସ୍ତ୍ର ବହୁତ ବିଦ୍ୟା ଏ ସଂସାରେ ।
ଅଳ୍ପକାଳେ ବହୁବିଘ୍ନ ପଡ଼ଇ ତହିଁରେ ॥ ୧ ॥

ଏଥିରୁ ଯେ ସାର ତାହା ଉପାସନା କର ।
କ୍ଷୀରରୁ ସାରାଂଶ ଭକ୍ଷେ ହଂସ ଯେ ପ୍ରକାର ଯେ ॥ ୨ ॥

ଏହି ସମସ୍ତ ପୁରାଣ ଗ୍ରନ୍ଥ ବ୍ୟାସଦେବ କଲେ ।
ଚିତ୍ତରୁ ସଂଶୟ ଗତ ନୋହି ଭ୍ରମ ହେଲେ" ॥ ୩ ॥

"ଶ୍ରୀ ନାରଦ ଗୋସ୍ୱାମୀଙ୍କର ଅନୁଗ୍ରହରୁ ଭଜନ କରନ୍ତେ କୃଷ୍ଣଙ୍କ ଆଦେଶରେ ଅବତାରମାନ ହେଲେ । ଏଣୁ ହରି ମନେ ବିଚାର କଲେ, ମୋ ବ୍ୟତିରେକରେ ମୋର ତତ୍ତ୍ୱ ଯେ ଜାଣେ, ତା ଦେହରେ ମୁଁ ଅବତାର ଗ୍ରହଣ କରିବି । ଏଣୁ ମହାପୁରାଣ ଶ୍ରୀଭାଗବତରେ କର୍ମଜ୍ଞାନ ସମ୍ବନ୍ଧେ କହି ଭକ୍ତିର ସିଦ୍ଧାନ୍ତ ଗ୍ରହଣ କଲେ । ଏଣୁ ଭୁକ୍ତି ମୁକ୍ତି ତୁଚ୍ଛ କରି ଭକ୍ତିକୁ

ସାରସ୍ୱତ କଲେ ଏବଂ କ୍ରମାନ୍ୱୟରେ ଚତୁର୍ବିଂଶ ଅବତାର ବର୍ଣ୍ଣନା କଲେ । ପୁନର୍ବାର ଅନେକ ଭକ୍ତଙ୍କ ମହିମା ବର୍ଣ୍ଣନ କରି ଶେଷରେ ସଙ୍କଟନ୍ନୀ ଗୋପୀ ରସ ଦାନରେ ସାର ବୋଲି ଅଭିହିତ କଲେ । ଏହି ଗ୍ରନ୍ଥର ଦଶମସ୍କନ୍ଧ ବ୍ରଜଲୀଳା ସୁରସ ପ୍ରସଙ୍ଗ ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ତହିଁମଧ୍ୟରୁ ବେଣୁଗୀତା, ଯୁଗ୍ମଗୀତା ରାସପଞ୍ଚାଧ୍ୟାୟୀଙ୍କୁ ସବୁଠାରୁ ଶ୍ରେଷ୍ଠରୂପେ ପରିଗଣିତ କଲେ । ଯେଉଁ ପ୍ରେମ ସାର ପୂର୍ଣ୍ଣବିରହ ସଂଯୋଗ ହୋଇଛି ଏ ସ୍ୱଭାବ ବ୍ରହ୍ମାଣ୍ଡରେ ନାହିଁ ଏବଂ ଯେଉଁ ପ୍ରେମରେ କୃଷ୍ଣଙ୍କର କଥା ବୁଝି ନ ପାରିଲି, ସେ ଭାବରୁ ଆଜଠାରୁ ବନ୍ଦି ହେଲି । ଏଣୁ ଏ ଗ୍ରନ୍ଥ ଭାଗବତରେ ଦୃଢ଼ ବିଶ୍ୱାସ କର । ଯେଉଁ କୃଷ୍ଣ ପରବର୍ତ୍ତୀ ସମୟରେ ଗୌରଚନ୍ଦ୍ର ରୂପେ ରସ ଆସ୍ୱାଦନ କଲେ, ସେହି କୃଷ୍ଣ ବିରହ ପ୍ରଳାପରେ ନିଜ ରୂପ ଧ୍ୟାନ କରି ଉଜ୍ଜ୍ୱଳ ରସ ରୂପକ ସମ୍ପଦ ଆପଣାର ଭକ୍ତ ଶ୍ରୀ ରୂପସନାତନାଦିଙ୍କ ହସ୍ତରେ ଦାନ କରିଥିବା କଥା ଗ୍ରନ୍ଥାନ୍ତରେ ଉଲ୍ଲେଖ ଅଛି । ମହାଭାରତେ-ଯେବେ ବ୍ରଜକଥା ହୋଇ ରସାଭାସ ହେବ ଏବଂ ଆତ୍ମମତ-ଭେଦ ହେବ ତାହା ଶ୍ରବଣ କରିବ ନାହିଁ ।"

"ବହୁ ଗ୍ରନ୍ଥ କଲିଭ୍ୟାସ ବ୍ୟାଖ୍ୟା ବାଦ ତେଜି ।
ଶ୍ରୀରୂପଗୋସ୍ୱାମୀ ଆଜ୍ଞା ନିଜ ମନେ ହେଜି ଯେ" ॥ ୨୮ ॥

(ଭକ୍ତିରସାମୃତ ସିନ୍ଧୁ)

## ଚତୁର୍ଥ ସ୍ତମ୍ଭ—'ଶ୍ରୀଗୁରୁ ନିଷ୍ଠା'

"ଦୀକ୍ଷା କରିବାର କର୍ତ୍ତବ୍ୟ ଜୀବର,
ସେ ବିନା ଶୁଦ୍ଧ ନୁହେଁ ଜୀବ ଶରୀର ଯେ ।
ଦୀକ୍ଷାହୀନ ହୋଇଣ ଯେହୁ ମରଇ,
ପଶୁ ଯୋନିରେ ନିଷ୍ଠା ଜନ୍ମ ଲଭଇ ॥"

ଦୀକ୍ଷା ପଟଳରେ—

"ତୋ ନାମ ଶିଷ୍ୟ ହେଲା ମୋ ନାମ ଗୁରୁ ।
କି ଲାଭ ହୋଇବ ଏ ମନ୍ତ୍ର ଦୀକ୍ଷାରୁ ॥
ସଦ୍‌ଗୁରୁ ବୁଝି କରିବା ଉଚିତ । ଏଥିକୁ ଅଛି ବହୁ ଶାସ୍ତ୍ର ସମ୍ମତ ଯେ ॥

ବୋଇଲେ ଆଚାର୍ଯ୍ୟ ତାଙ୍କ ସ୍ୱଭାବ ଚହ୍ନି ।
ତଦନ୍ତେ ତାଙ୍କୁ ଗୁରୁ କରଣ ମାନି ଯେ ।। ୩ ।।
ତେସନେ ଗୁରୁ ଜାଣି ଶିଷ୍ୟ ଲକ୍ଷଣ ।
କୃପା କରିବେ ପଛେ କହେ ପୁରୁଣ ଯେ ।।
କାମେ ବା ଲୋଭେ ଯେବେ ସେବକ କରେ ।
ଶାପ ଦଅନ୍ତି ଇଷ୍ଟ ସେ ଦୁଇଙ୍କରେ ଯେ ।।

× × ×

**ପଞ୍ଚମ ଛାନ୍ଦ—'ଆଶ୍ରୟନିଷ୍ଠା'**

ଏହି ଗ୍ରନ୍ଥ ଆଦ୍ୟରେ କବି ବୈଷ୍ଣବ ଜନୋଚିତ ନିଷ୍ଠା ବିଷୟରେ କିଛି ନ କହି ଚୈତନ୍ୟଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କଠାରୁ ଏହା ଗ୍ରହଣ କରିଥିବା ଉଲ୍ଲେଖ କରିଅଛନ୍ତି ।

ଶ୍ରୋତା ବକତା ଏଥି ନାହିଁ ସ୍ୱଚ୍ଛ । କେବା ବୋଲିବ କାହାକୁ କହୁଛ ।। ୧ ।।
ଗୌରଙ୍ଗ ହାଟରେ ବହୁତ ଦ୍ରବ୍ୟ । ବିପ୍ର ବିହପ୍ର ମହାଜନ ସର୍ବ ।। ୨ ।।
ମୁଁ ଯେ ନୂତନ କାରବାର କରି । ତାଙ୍କଠାରୁ ଆଣି ଲଭ ବିସ୍ତରି ।। ୩ ।।
ବସାଉଛୁ ତ ସୁନ୍ଦର ପସରା । ନିଷ୍ଠା ନୀଳମଣି ଏ ଅତି ଚୋରା ।। ୪ ।।
ନିତ୍ୟାଶ୍ରୟ କହିବା ଯେ ଉଚିତ । ଅତ୍ୟାଶ୍ରୟ ଅନାଶ୍ରୟ ତ୍ୟକତ ।। ୫ ।।
ରବି ଉଦୟ ଦଣ୍ଡେ ଥାଉଁ ଉଠିବ । ଶ୍ରୀଶ୍ରୀ ଗୁରୁ ଧ୍ୟାନମାନ କରିବ ।। ୬ ।।

× × ×

**ଷଷ୍ଠ ଛାନ୍ଦ—'ସଙ୍ଗନିଷ୍ଠା'**

ଯେତୁ ଅତି ଧନବନ୍ତ ଦାତା ଜନହିତ
କରେ ତା ସଙ୍ଗେ ମୋ କାର୍ଯ୍ୟ ନାହିଁ ।
ଯେବେ ବସାଇ ପୋଷିବ ତହିଁରେ କଷିବ
ଇଷ୍ଟଗୋଷ୍ଠୀ କଥା ତ୍ୟାଗ ଯହିଁ ।। ୧ ।।

କଣ୍ଢେ ଅବା ଝୋଲ ଧରି    ଭିକ୍ଷାଟନ କରି
ମୁଖେ ସ୍ଫୁରୁ ରାଧା ପ୍ରାଣେଶ୍ୱର ।
ସ୍ୱତନ୍ତ୍ରତା ଥିବ ତହିଁ    ପରବେଶ ନୋହିଁ
କେ ଦେଉ ନ ଦେଉ କା ବଶ୍ୱର ॥ ୨ ॥

**ସପ୍ତମ ଛନ୍ଦ—'ଏକାନ୍ତ ଭକ୍ତ ନିଷ୍ଠା'**

ଅମୁକ ଦେବତା ବୋଲିଣ ଥୋକେ । କାମନାରେ ପୂଜୁଥାନ୍ତି ଯେ ଲୋକେ ॥
ଜନଙ୍କୁ ଦେବେ ଶ୍ରେଷ୍ଠ ଶକ୍ତି ଯେଣୁ । ତାଙ୍କ ମନୋରଥ ଦିଅନ୍ତି ତେଣୁ ॥
ରୋଗୀ ରୋଗ ନାଶେ । ଦରିଦ୍ର ଧନ ଲଭନ୍ତି ପୌରୁଷେ ॥ ୧ ॥
ଜନ୍ମ ମରଣ ଅଛି ଯେତେ କାଳ । ଦୁଃଖ ସୁଖ ଦୁଇ ଏହାର ମୂଳ ।
କୃଷ୍ଣ ପ୍ରାପ୍ତି ହେଲେ ଏ ସିନା ଯିବ । ପରମାନନ୍ଦ ପୂର୍ଣ୍ଣ ହୋଇଥିବ ।
ସେହି ଚିର ଅଟେ । ସୁଖ ସାର ଯହିଁ ଚରଣେ ଖଟେ ॥ ୩ ॥

× × ×

**ଅଷ୍ଟମ ଛାନ୍ଦ—'ଧାମନିଷ୍ଠା'**

କୃଷ୍ଣର ଅଶେଷ ଧାମ    କେ ହେବ କହିବା କ୍ଷମ
ଧାମ ଭେଦ ନାମ ଭେଦେ ସେ ଦମ୍ପତିର ।
ଲକ୍ଷ୍ମୀ ନାରାୟଣ କାହିଁ    ରୁକ୍ମିଣୀ ବାସୁଦେବ ହିଁ
ସୀତାରାମ କେଉଁଠାରେ ପାର୍ବତୀ ହର ॥
ଏହି ଅନୁ ରୂପରେ ଲୀଳା ।
ପ୍ରକାଶ ବିଳାସ ଅଂଶ ଆବେଶ କଳା ॥ ୧ ॥

× × ×

**ନବମ ଛନ୍ଦ—'ତତ୍ତ୍ୱନିଷ୍ଠା'**

ଶୁଣରେ ଚିତ୍ତ ମୋର    କର ଏହି ବିଚାର
କେବଳ ଈଶ୍ୱର ସେ ଏକ
ଯେତେ ଏ ସୁରାସୁର    ନରଜୀବ ମାତର

ତଥାପି ତୋତେ ସେ ଅଧିକ ରେ ଆରେ ମନ ।
ନ୍ୟୂନାଧିକ ଅଛୁ ଶକ୍ତିରେ
ନ ନନ୍ଦ ନ ବନ୍ଦ ବେଗରେ ।
କେବଳ ସର୍ବାଶ୍ରୟ ନିତ୍ୟ ତତ୍ତ୍ୱ ନିଷ୍ଠୟ
କୃଷ୍ଣଙ୍କୁ ଭଜ ନିରନ୍ତରେ ରେ । ଆରେ ମନ ॥ ୧

× × ×

**ଦଶମ ଛାନ୍ଦ**—'ମହିମା ନିଷ୍ଠା'

ମହିମା ଜ୍ଞାନେ ଭଜୁଥାନ୍ତି ଥୋକେ । କୃଷ୍ଣର ଗୁଣ କହି ଏକେ ଏକେ ।
ପୂତନା ଶକଟା ତୃଣା ବଧିଲେ । ପୁଣି ବକ ବୃଷଭ ଧେନୁକ ନାଶିଲେ ॥
ଜାମଳାର୍ଜ୍ଜୁନ ଭଞ୍ଜନ ସେ ଈଶ୍ୱର । ପୁଣି କାଳୀୟ ଗର୍ବଗଞ୍ଜନ ଜନରଞ୍ଜନ ॥
କୋଳ କଣୁ ଗୃହିଁ ସୁବର୍ଣ୍ଣ କଲେ । ଅନ୍ଧକୁ ତୋ ପୁଅ ମାଇଲ୍ ବୋଇଲେ ।

× × ×

**ଏକାଦଶ ଛାନ୍ଦ**— 'ରସନିଷ୍ଠା'

ଶୁଣ ହେ ବ୍ରଜ ଉପାସକେ । ଅବିଶ୍ୱାସ କରି ଅବାକେ ॥ ୧ ॥
ବିଶ୍ୱରବ ଏକା ବ୍ରଜରେ । ଶୃଙ୍ଗାର ରସ କ ପ୍ରକାରେ ॥ ୨ ॥
ସଂସାରରେ ତ ସେହି ଆକାର । ବୈକୁଣ୍ଠେ ଯୁଗଳ ବିହାର ॥ ୩ ॥
ଦ୍ୱାରକାରେ ସହସ୍ର କୋଟି । ମହିଷୀ ସଙ୍ଗେ ବିହରେଟି ॥ ୪ ॥
ପାର୍ବତୀ ଶିବ ସହିତରେ । ମହାସ୍ନେହ କୈଳାସେ କରେ ॥ ୫ ॥
ଅଯୋଧ୍ୟାରେ ସୀତାରାମର । କେହି ନିଷ୍ଠା ବ୍ରଜେ ଶୃଙ୍ଗାର ॥ ୬ ॥

× × ×

**ଦ୍ୱାଦଶ ଛାନ୍ଦ**—'ଗଣନିଷ୍ଠା'

କୃଷ୍ଣପ୍ରିୟାଗଣ ଏ ତିନ ପ୍ରକାର ଗୋପୀ ମହିଷୀ ଲକ୍ଷ୍ମୀଗଣ ।
ଦେବକନ୍ୟା ବେଦକନ୍ୟା ଏ ଜାଣ ।

ମୁନିକନ୍ୟା ମିଶି ସାଧନ ସିଦ୍ଧା ଏ
ସିଦ୍ଧ ହୋଇଲେ ସାଧିଣ ହେ । ମାନସ ।
ଗୋପୀକନ୍ୟା ନିତ୍ୟସିଦ୍ଧା ପ୍ରମାଣ । ସଖା ସଖୀ ଆପେ କୃଷ୍ଣ ହୋଇଣ ।
ପ୍ରକଟ ପ୍ରକଟେ, ବ୍ରଜେ ଲୀଳା କରେ
ଏ ବେଦବାକ୍ୟ ପ୍ରମାଣ ହେ ॥ ୧ ॥

× × ×

# ଉପଲବ୍ଧ ଅସମ୍ପାଦିତ ଗ୍ରନ୍ଥାଦିର ପ୍ରାମାଣିକତା ଓ ବର୍ଣ୍ଣନା ।

## (୧) ଲଳିତଲୋଚନା :

କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ରଚିତ ଓ ମତକର୍ତ୍ତୃକ ସଂଗୃହୀତ ଷୋହଳଟି ଅସମ୍ପାଦିତ ଓ କେତେକ ଅପ୍ରକାଶିତ ଚଉପଦୀ, ଚଉତିଶା ଓ ଜଣାଣ ମଧ୍ୟରେ 'ଲଳିତ ଲୋଚନା' ଏକ ବିଶିଷ୍ଟ କାଳ୍ପନିକ କାବ୍ୟ । ପାର୍ଦ୍ଧ ୫୨ ଛାନ୍ଦ ବିଶିଷ୍ଟ ଏହି ଅପ୍ରକାଶିତ କାବ୍ୟର ପାଣ୍ଡୁଲିପିଟି ୧୯୭୬ ମସିହାରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍. ଏ ଙ୍କ ନିକଟରୁ ଲେଖିକା ପ୍ରଥମେ ପ୍ରାପ୍ତ ହୋଇଥିଲି । ପଣ୍ଡିତ ମହାଶୟ ଏହାକୁ ସ୍ୱର୍ଗତ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟରେ ଥିବା ଏକ ତାଳପତ୍ର ପୋଥିରୁ ନକଲ କରିଥିବା ପ୍ରକାଶ କରିଥିଲେ । ବର୍ତ୍ତମାନ ଆର୍ତ୍ତବାବୁଙ୍କ ଦେହାନ୍ତ ପରେ ଉକ୍ତ ପୋଥିଟି ହସ୍ତାନ୍ତରିତ ହୋଇଯାଇଅଛି ।

ଏତଦ୍ଭିନ୍ନ ଓଡ଼ିଶା ବାଣୀବିହାରସ୍ଥ ପୋଥିବିଭାଗରୁ 'ଲଳିତଲୋଚନା' କାବ୍ୟର ଦୁଇଗୋଟି ତାଳପତ୍ର ପୋଥି ମିଳିଅଛି* । ଉକ୍ତ ଦୁଇଟି ତାଳପତ୍ର ପୋଥି ସହିତ ପଣ୍ଡିତ ଦାଶମହାଶୟଙ୍କ ନିକଟରୁ ପ୍ରାପ୍ତ ପାଣ୍ଡୁଲିପି ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ନାହିଁ ।

---

* (କ) Catg. No. OL 52 No. of Folio 241
(ଖ) Catg. No. OL. 47, No. of Folio 170

କବି ଏହି ବିରାଟ କାଳ୍ପନିକ କାବ୍ୟଟିକୁ ମହାକାବ୍ୟ ରୂପରେ ବର୍ଣ୍ଣନା କରିଅଛନ୍ତି—"ଲଳିତ ଲୋଚନା ଛାନ୍ଦ ବାଉନ ଛାନ୍ଦରେ, ସମ୍ପୂର୍ଣ୍ଣ ହୋଇଛି ଜାଣ କଳ୍ପନା ବେଗରେ" ।। (ମୋହନ କଳ୍ପଲତା)

ମହାନଗରାଧିପତି ରାଜା ବୃଷବନ୍ତଙ୍କ ପୁତ୍ର ନିପୁଣତିଳକ ଓ ତୈଲଙ୍ଗ ଦେଶ ରାଜା ଶାନ୍ତଶୀଳଙ୍କ କନ୍ୟା 'ଲଳିତ ଲୋଚନା'ଙ୍କର ପୂର୍ବ ଜନ୍ମବୃତ୍ତାନ୍ତ, ବାଲ୍ୟାବସ୍ଥା, ପୌଗଣ୍ଡ, କୈଶୋର ଓ ଯୌବନାବସ୍ଥା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କବି ନାୟକ ନାୟିକାଙ୍କ ପୂର୍ବରାଗ, ପ୍ରେମ, ବିବାହ, ବିରହ ଓ ପୁନର୍ମିଳନାଦି ବିସ୍ତୃତଭାବରେ ବର୍ଣ୍ଣନା କରିଛନ୍ତି । କବି ଶେଷ ଛାନ୍ଦରେ ଯୁବରାଜ ନିପୁଣତିଳକଙ୍କ ରାଜ୍ୟାଭିଷେକ ଓ ପିତାମାତାଙ୍କ ବୈଷ୍ଣବ ଦୀକ୍ଷା ଗ୍ରହଣ ସହ ବୃନ୍ଦାବନ ଯାତ୍ରା ବର୍ଣ୍ଣନା କରିଅଛନ୍ତି ।

ଏହା କବିଙ୍କର 'ମୋହନ ଲତା' କାବ୍ୟର ଶେଷ ଛାନ୍ଦରେ ଦିଆଯାଇଥିବା ଗ୍ରନ୍ଥ ତାଲିକା ଅନୁସାରେ ପ୍ରଥମ କାବ୍ୟ । ଏହା ପରେ 'ଯୁଗଳରସାମୃତ ଲହରୀ' ପ୍ରଭୃତି ଅନ୍ୟାନ୍ୟ କାବ୍ୟ କ୍ରମାନ୍ୱୟରେ ରଚିଅଛି । ଏହାର ପ୍ରମାଣସ୍ୱରୂପ କବି 'ଯୁଗଳ ରସାମୃତ ଲହରୀ' ର ଚଉବିଂଶ ଛାନ୍ଦକୁ 'ଲଳିତଲୋଚନା ମିଳନବାଣୀ' ରେ ଗାଇବାକୁ ନିର୍ଦ୍ଦେଶ ଦେଇଅଛନ୍ତି । ଅବଶ୍ୟ ଉକ୍ତ 'ଲଳିତଲୋଚନା' ପୂର୍ବରୁ କବି ବହୁ ଚଉପଦୀ, ଚଉତିଶା ଓ ଜଣାଣ ପ୍ରଭୃତି ରଚନା କରିସାରିଥିବା ବିଷୟ 'ମୋହନଲତା'ର ଶେଷ ଛାନ୍ଦରେ ସ୍ୱୀକାର କରି ଯାଇଛନ୍ତି । 'ଲଳିତଲୋଚନା' କାବ୍ୟର ପ୍ରଥମ ଛାନ୍ଦରେ କବି ଗଜପତି ଶ୍ରୀ ବୀରକେଶରୀ ଦେବଙ୍କଠାରୁ 'କବିସୂର୍ଯ୍ୟ' ଉପାଧି ପାଇଥିବା ଉଲ୍ଲେଖ କରିଛନ୍ତି । ତେଣୁ ଏହା ସୁସ୍ପଷ୍ଟ ଯେ ଗଜପତି, କବିଙ୍କ ଉଚ୍ଚକୋଟୀର ଚଉତିଶା, ଚଉପଦୀ ଓ ଜଣାଣାଦି ରଚନାରେ ମୁଗ୍ଧ ହୋଇ'କବିସୂର୍ଯ୍ୟ'ଉପାଧି ପ୍ରଦାନ କରିଥିଲେ । ଏହି ସମ୍ମାନ କବିଙ୍କର ପରବର୍ତ୍ତୀ କାବ୍ୟସୌଧର ମୂଳଦୁଆ ସ୍ଥାପନ କରିଥିଲା । 'ଯୁଗଳରସାମୃତଲହରୀ' ପୂର୍ବରୁ ରଚନା ହୋଇଥିବାରୁ ଏହାର ରଚନାକାଳ ୧୭୮୧ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ହୋଇଥିବା ଅନୁମାନ ।

**ପ୍ରଥମ ଛାନ୍ଦ**—'ପୂର୍ବଜନ୍ମ ବର୍ଣ୍ଣନା'

"ଏବେ କିଛି ଶ୍ଲୋକ ଅନୁବାଦ ବିସ୍ତାରିବା
ମୂଳ କରିଥାଇ ଯେଣୁ ବିଧେୟ କହିବା ।। ୧୫ ।।

ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ ।
ଅଳଙ୍କାରେ ଯୁକ୍ତ ବନ୍ଧ ଉକ୍ତି ଯେଣୁ ଥିବ ।। ୧୬ ।।

ରସ ଖାନ୍ତ ନିସ୍ଥା ଗୁପ୍ତି ଉପମା ନନ୍ଦବ ।
ଆଶୟରେ କେଉଁଠାରେ ଧ୍ୱନି ପ୍ରକାଶିବ ।। ୧୭ ।।

ଦର୍ଶନେ ଶ୍ରବଣେ ନେତ୍ର କର୍ଣ୍ଣ ମାନସରେ ।
ସରସ ପରସ୍ପେ ବାସ କରିବ ସତ୍ତ୍ୱରେ ।। ୧୮ ।।

ନବବଧ ହୋଇ ରସ ହେବନ୍ତି ବର୍ଣ୍ଣନ ।
ତଥାପି ଏ ଗ୍ରନ୍ଥ ଅଟେ ଉଜ୍ଜ୍ୱଳ ପ୍ରଧାନ ।। ୨୦ ।।

ପଞ୍ଚଶରେ ଲଭନ୍ତି ଯା ନାଗରୀ ନାଗରେ ।
ପ୍ରଥମରେ ହୁଅଇ ନୟନ ଲକ୍ଷିବାରେ ।। ୨୧ ।।

ଦ୍ୱିତୀୟରେ ମନସଙ୍ଗ ସଙ୍କଳ୍ପ ତୃତୀୟେ ।
ଉଜାଗର ଚତୁର୍ଥେ ପଞ୍ଚମେ କୃଶକାୟେ ।। ୨୨ ।।

ଷଷ୍ଠେ ସର୍ବ ବିଷୟୁ ଅରତି ତା ଭାବରେ ।
ବ୍ରୀଡ଼ା ଛଡ଼ା ସପ୍ତମେ ଉନ୍ମାଦ ଅଷ୍ଟମରେ ।। ୨୩ ।।

ନବମ ଦଶାରେ ତା ବିରହେ ହୋଏ ମୋହ ।
ଦଶମରେ ପ୍ରାଣ ଯାଏ ତେଜି ନିଜ ଦେହ ।। ୨୪ ।।

ଶାସ୍ତ୍ରେ କହେ ମରଣ ବର୍ଣ୍ଣିବା ଅନୁଚିତ ।
ଏଣୁ ଆଦ୍ୟ ପୂର୍ବ ଜନ୍ମ କହିବା ତା ଖ୍ୟାତି" ।। ୨୫ ।।

× × ×

**ଦ୍ୱିତୀୟ ଛାନ୍ଦ**—ଲଳିତ ଲୋଚନାର ନାରୀ ପୁରୁଷ ଜନ୍ମ

**ତୃତୀୟ ଛାନ୍ଦ**—ବୟସ ସନ୍ଧିବର୍ଣ୍ଣନା

**ଚତୁର୍ଥ ଛାନ୍ଦ**—ପୁଷ୍ପବତୀ ବର୍ଣ୍ଣନା

**ପଞ୍ଚମ ଛାନ୍ଦ**—ପ୍ରତିଅଙ୍ଗ ବର୍ଣ୍ଣନା

**ଷଷ୍ଠ ଛାନ୍ଦ**—ବନଭ୍ରମଣ

**ସପ୍ତମ ଛାନ୍ଦ**—ବନଭ୍ରମଣ ଫୁଲତୋଳା ଓ ଜଳକ୍ରୀଡ଼ା

**ଅଷ୍ଟମ ଛାନ୍ଦ**—'ବେଶ ବର୍ଣ୍ଣନା'

"ହାବଭାବ ହେଳା କାନ୍ତି ଦୀପ୍ତିରେ । ମାଧୁର୍ଯ୍ୟ ପ୍ରଗଲ୍‌ଭ ଔଦାର୍ଯ୍ୟରେ ॥
ଧୈର୍ଯ୍ୟ ଲୀଳା ବିଳାସ ବିଚ୍ଛିତ୍ତି । ବିବେକ ବିଭ୍ରମ କିଳ କିଞ୍ଚିତ ॥
ମୋଟ୍ଟାୟିତ ସଙ୍ଗେ । କୁଟ୍ଟମିତାଦି ଭୂଷଣ ଶ୍ରୀଅଙ୍ଗେ" ॥ ୫ ॥

ଏହାପରେ ଦେବ ଆରାଧନା ସାରି ଘରକୁ ଫେରି ରାତ୍ରରେ ଦେବତାଙ୍କର ସ୍ୱପ୍ନାଦେଶ ହୋଇଛି ଓ ଦେବୀଙ୍କ ସ୍ୱପ୍ନାଦେଶ ଦ୍ୱାରା ଜାଣିପାରିଛି ଯେ, ମାୟାବତୀ ନାମ୍ନୀ ଜଣେ ସହଚରୀ ଯୋଗିନୀ ଥିଲି ଓ ନାନା ତନ୍ତ୍ରମନ୍ତ୍ରର ଅଧିକାରିଣୀ । ତେଣୁ ତାକୁ ଦୂତୀରୂପେ ପଠାଇଲେ କାର୍ଯ୍ୟ ସଫଳ ହେବ ।

**ନବମ ଛାନ୍ଦ**—'ଜଙ୍ଗମର ପ୍ରବେଶ ଓ ପିତା ପଟ୍ଟଦର୍ଶନ'

ଏହି ଛାନ୍ଦରେ ଜଙ୍ଗମର ଶ୍ରୀକୃଷ୍ଣଙ୍କ ବ୍ରଜ, ମଥୁରା ଓ ଦ୍ୱାରକାଲୀଳା ପ୍ରଦର୍ଶନ କରିବା ବର୍ଣ୍ଣିତ ହୋଇଅଛି ।

**ଦଶମ ଛାନ୍ଦ**—'ପିତା ପଟ୍ଟସ୍ତୁତି'

ଏହି ଛାନ୍ଦରେ 'ଶବ୍ଦବନ୍ଧକାବ୍ୟୋଦୟ' ଢଙ୍ଗରେ ସମସ୍ତ ବନ୍ଧର ଆଲୋଚନା ରାଜାଙ୍କ ସହିତ ଜଙ୍ଗମର ହୋଇଅଛି ।

**ଏକାଦଶ ଛାନ୍ଦ**—'ନାୟିକା ପଟ୍ଟପ୍ରଦର୍ଶନ'

**ଦ୍ୱାଦଶ ଛାନ୍ଦ**—'ନାୟକ ମୃଗୟା ଗମନ'

ନାଗରୀ ହେଉ ଡଗରା ଶୁଣି ହେଲେ ବାହାର ଯେ ।
ଆଗରେ ଅତି ବେଗରେ ଚଳି ଆବେଶେ ବହୁ ଶବର ଯେ ॥ ୨ ॥
ମୁଣ୍ଡରେ କେଶ ରୁଣ୍ଡରେ କରି ଚୂଳକୁ ଆଗ ଭାଗକୁ ଯେ ।
ପାନଆଁ ସଙ୍ଗେ ସେ କଆଁଧରା ମୁନଆ ଖୋଷିଲା ଗଜେ ॥ ୩ ॥
କାକର ପକ୍ଷୀ କାଙ୍କର ଶିରେ ବାଙ୍କରେ ବେଣୀ କାହାର ଯେ ।
ବାସଙ୍ଗ ଫୁଲ ସେ ସଙ୍ଗତରେ କା କଣ୍ଠେ କର୍ଣ୍ଣ ଲୁହାର ଯେ ॥ ୪ ॥
ଦଣ୍ଡିତ କେହୁ ମଣ୍ଡିତ କରି ସୁରଙ୍ଗ ଗୁଞ୍ଜ ଫଳରେ ଯେ ।
ତଳକ କାହା ଫଳକରତା ମାଟିରେ ନାନା ରୀତିରେ ଯେ ॥ ୫ ॥

ଗଳାରେ ନାନା ଫଳରେ ମାଳବଗ୍ରକାଦ ଗରଗଡ଼ ଯେ ।
କାଛକୁ ପିନ୍ଧି ପଛକୁ ବାନ୍ଧିଲେଣି କେକର ଲାଙ୍ଗୁଡ଼ ଯେ ॥ ୭ ॥

× × ×

ଏହିଭଳି ଭାବରେ ବହୁଭାବ ସାଜସଜ୍ଜା ସହ ବନ ପ୍ରବେଶ ବର୍ଣ୍ଣିତ ହୋଇଅଛି ।

## ତ୍ରୟୋଦଶ ଛାନ୍ଦ—'ମୃଗୟା ବର୍ଣ୍ଣନା'

ଏହି ଛାନ୍ଦରେ ମୃଗୟା ସମୟରେ ଜଳ ତଟରେ ନାୟିକାସହ ଦର୍ଶନ ବର୍ଣ୍ଣନା କରାଯାଇଛି । ନାୟିକା ନିଜର ପରିଚୟ ପ୍ରଦାନ କରି କହିଛି, "ମୁଁ କର୍ଣ୍ଣାଟ ନରେଶ ନନ୍ଦିନୀ ପିତା ମୋପାଇଁ ଯେଉଁ ବରପାତ୍ର ବ୍ୟବସ୍ଥା କରିଥିଲେ, ସେ ମୋ ମନକୁ ନ ଯିବାରୁ ମୁଁ ଉପବନ ଭ୍ରମଣ ଛଳରେ ଏଠାକୁ ଚାଲି ଆସିଛି ।" ଏହାଶୁଣି ନରପତି ଆଶାୟୀ ହୋଇ ବିବାହ ପ୍ରସ୍ତାବ ଦିଅନ୍ତେ ସେ ଛଳୋକ୍ତି ପ୍ରୟୋଗ କରି ତାକୁ ବଳାତ୍କାରେ ନିଆଯାଉଛି ବୋଲି ସମସ୍ତଙ୍କୁ ଜଣାନ୍ତେ ଯୁଦ୍ଧର ଆରମ୍ଭ ହୋଇଅଛି ।

## ଚତୁର୍ଦ୍ଦଶ ଛାନ୍ଦ—

ଏହି ଛାନ୍ଦରେ ଯୁଦ୍ଧକ୍ଷେତ୍ର ବର୍ଣ୍ଣନା ସହ ଯୁଦ୍ଧର ଭୟାବହତା ଏଭଳି ଭାବରେ ବର୍ଣ୍ଣନା କରାଯାଇଅଛି, ଯାହା ଦୁର୍ଗାଙ୍କ ସହ ମହିଷାସୁରର ଯୁଦ୍ଧ ତୁଳନୀୟ । ମାତ୍ର ୧୩ ଗୋଟି ପଦରେ ଏହି ଛାନ୍ଦର ସମାପ୍ତି ଘଟିଛି ।

## ପଞ୍ଚଦଶ ଛାନ୍ଦ—

ଯୁଦ୍ଧାନ୍ତେ ନାୟକ ନାୟିକାକୁ ଧରି ଚାଲନ୍ତେ ପଥରେ ନାୟିକାର ଅନ୍ତର୍ଦ୍ଧାନ ଓ ନାୟକର ବିଳାପ । ପଥ ମଧ୍ୟରେ ଏକ ଯୋଗୀଙ୍କ ଦର୍ଶନ ଓ ଯୋଗୀଙ୍କ ଦ୍ୱାରା ନାୟିକାର ଜନ୍ମ ରହସ୍ୟ ବର୍ଣ୍ଣନ ।

## ଷୋଡ଼ଶ ଛାନ୍ଦ—

ଏହି ଛାନ୍ଦରେ ଜଙ୍ଗମ ସହିତ ସାକ୍ଷାତ ଓ ଉକ୍ତ ଜଙ୍ଗମ କର୍ଣ୍ଣାଟେଶ ବିଶ୍ୱାସର ନରେଶଙ୍କ ବିଷୟ ଜଣାଇ ଉକ୍ତ ରାଜ୍ୟର ରାଜଜେମା 'ଲଳିତ

ଲୋଚନା' ର ଚରିପଟ ସବୁ ପ୍ରଦର୍ଶନ କରିଅଛନ୍ତି ।

ସପ୍ତଦଶ ଛାନ୍ଦ—'ଲଳିତ ଲୋଚନା' ବିରହ ବର୍ଣ୍ଣନା

**ଅଷ୍ଟାଦଶ ଛାନ୍ଦ**—'ଦୂତୀଗମନ'

ଏହି ଛାନ୍ଦରେ ମାଲୁଣୀ ବିଭିନ୍ନ ଦେଶ ଭ୍ରମଣରେ ଯାଇ ତନ୍ତ୍ର-ମନ୍ତ୍ରାଦି ବଳରେ ଗୃହରେ ପ୍ରବେଶ ହୋଇ ସେ ରାଜ୍ୟ ମାଳିର ଗୃହରେ ଛଦ୍ମ ବେଶରେ ଭଉଣୀ ରୂପରେ ଅବସ୍ଥାନ କରିଛନ୍ତି ଓ ମାଲୁଣୀ ଦ୍ୱାରା ରାଜ୍ୟର ଶାନ୍ତିଶୀଳ ତନୟା ବିଷୟରେ କଥୋପକଥନ ହୋଇଅଛି ।

'ଅଷ୍ଟାଦଶ ଛାନ୍ଦ ଶେଷ । ହୋଇଲା ଦୂତୀ ପ୍ରବେଶ
ଏକାନ୍ତେ କୁମର ଭେଟ । ସର୍ବ ପ୍ରକଟ ଏ ॥ ୭୩ ॥

× × ×

**ଊନବିଂଶ ଛାନ୍ଦ**—'ଲଳିତ ଲୋଚନା ଚିତ୍ର ଦର୍ଶନ'

ବୋଲେ ମାୟାବତୀ ଅଛି ଯନ୍ତ୍ରମନ୍ତ୍ର ମୋର ।
ନେହାଞ୍ଜନେ ସାକ୍ଷାତ ହୋଇବ ରୂପ ତାର ॥ ୫୪ ॥

ଏତେ କହି ଯନ୍ତ୍ର ମନ୍ତ୍ରୀ ତା ହସ୍ତରେ ଦେଲା ।
ତତକ୍ଷଣେ କୁମର ବେନି ଲୋଚନେ ରଞ୍ଜିଲା ॥ ୫୫ ॥

କାହାକୁ ନ ଦିଶେ ଦିଶେ ନୃପ କୁମରକୁ ।
ଊଣା ଅଧିକେ ଦେଖେ ଲଳିତ ଲୋଚନାକୁ ॥ ୫୬ ॥

ଏହାପରେ କୁମରର ଚିଠାଉ ଲେଖାହୋଇ ଛାନ୍ଦର ସମାପ୍ତି ହୋଇଅଛି ।

**ବିଂଶ ଛାନ୍ଦ**—'ନାୟକ ଗୁଣ ବର୍ଣ୍ଣନା'

ନାୟକ ଲକ୍ଷଣ ଯେ ରୂପେ ଆଳଙ୍କାରିକ ଉକ୍ତ ।
ସେହି ବିଧିରେ ସର୍ବାଂଶରେ ସେ ଯେ ଅଟନ୍ତି ଶକ୍ତ ॥ ୧୪ ॥

ମହା କୁଳୀନତା ଉଦାରତା ସେ ମହାଭାଗ୍ୟ ହି
ବିଦଗ୍ଧଗର୍ବ ତେଜସ୍ୱୀତା ସେ ଧାର୍ମିକତା ହି ॥ ୧୫ ॥

ଉତ୍କଳରତ୍ନ ମିଶି ଏ ନବ ବର୍ଷ ସମ୍ମତ ସେହ୍ନ ।
ଧୀରୋଦାତ୍ତାଦ୍ୟ ଯେ ଲକ୍ଷଣ ସମସ୍ତ ହିଁ ଘଟଇ ॥ ୧୬ ॥

**ଏକବିଂଶ ଛାନ୍ଦ—'ନବମଦଶା ବର୍ଣ୍ଣନା'**

''ରସିକେ ଶୁଣ ଶ୍ରବଣ ଡେରି ଭୂମ୍ନପାଙ୍କ ଏ ଗୀତ ।
ନାଶି ବିରହ ଶ୍ରବଣେ ଯେ ନଦ୍ରବେ ଅକର୍ମଶିଳା ତ'' ॥ ୧ ॥

× × ×

ଦ୍ୱାବିଂଶ ଛାନ୍ଦ—ଲଳିତ ଲୋଚନା ନବମ ଦଶା

ତ୍ରୟୋବିଂଶ ଛାନ୍ଦ—ଲଳିତ ଲୋଚନା ନାୟକ ଚଟାଉ

ଚତୁର୍ବିଂଶ ଛାନ୍ଦ—ଲଳିତ ଲୋଚନା ନିମନ୍ତ୍ରଣ

ପଞ୍ଚବିଂଶ ଛାନ୍ଦ—ନାୟକ ନାୟିକା ନିମନ୍ତ୍ରଣ ପ୍ରଦାନ

ଷଡ଼୍ବିଂଶ ଛାନ୍ଦ—ନାୟକ ବିରହ

ସପ୍ତବିଂଶ ଛାନ୍ଦ—ନାୟିକାର ଚଟାଉ ପ୍ରେରଣ

ଅଷ୍ଟବିଂଶ ଛାନ୍ଦ—ନାୟିକା ଚଟାଉ ବର୍ଣ୍ଣନା

''ଯେ ଯାହାର ଜନ୍ମେ ଜନ୍ମେ ତାର, ସବେ ନୁହନ୍ତି ଏହି ପ୍ରକାର ।
ଲୋକଉର ପ୍ରେଟ ଘଟେ ଯେଉଁଠାରେ,
ତହିଁ କର ଏହି ଅଧାହାର ହେ'' ॥ ୧୯ ॥

ଊନତ୍ରିଂଶ ଛାନ୍ଦ—ନାୟକ ଯାତ୍ରା ଅନୁକୂଳ

ତ୍ରିଂଶ ଛାନ୍ଦ—'ନାୟକ ସମ୍ଭୋଗ କଳ୍ପନା'

ଏକତ୍ରିଂଶ ଛାନ୍ଦ –ନୟନ ମିଳନ, ଦ୍ୱାତ୍ରିଂଶ ଛାନ୍ଦ—ନାୟକ ପ୍ରବେଶ ଅଧୈର୍ଯ୍ୟ ଚଟାଉ, ତ୍ରୟସ୍ତ୍ରିଂଶ ଛାନ୍ଦ—ଚଟାଉ ପ୍ରଶଂସା, ଚତୁସ୍ତ୍ରିଂଶ ଛାନ୍ଦ-ବରଣ ବିହାର-ଦୂତଦ୍ୱାରା ସମସ୍ତ ରାଜକୁମାରଙ୍କ ପରିଚୟ ପ୍ରଦାନ । ପଞ୍ଚତ୍ରିଂଶ ଛାନ୍ଦ-ଲଳିତ ଲୋଚନାର ବିବାହ, ଷଟ୍ତ୍ରିଂଶ ଛାନ୍ଦ-ଅଳଙ୍କାର ବର୍ଣ୍ଣନା, ସପ୍ତତ୍ରିଂଶ ଛାନ୍ଦ-ମଧୁଶଯ୍ୟା ବର୍ଣ୍ଣନା, ଅଷ୍ଟତ୍ରିଂଶ ଛାନ୍ଦ-ଯୌତୁକ ବିଧି, ଚତ୍ୱାରିଂଶ ଛାନ୍ଦ-ରସ ଭାବନା, ଏକଚତ୍ୱାରିଂଶ ଛାନ୍ଦ-ହିମ ଋତୁରେ ପ୍ରଣୟ ବର୍ଣ୍ଣନା, ଦ୍ୱିଚତ୍ୱାରିଂଶ ଛାନ୍ଦ - ଶିଶିର ଋତୁ ବର୍ଣ୍ଣନା, ତ୍ରିଚତ୍ୱାରିଂଶ ଛାନ୍ଦ-ବସନ୍ତ ଋତୁ ବର୍ଣ୍ଣନା, ଚତୁଶ୍ଚତ୍ୱାରିଂଶ ଛାନ୍ଦ-ଗ୍ରୀଷ୍ମ ଋତୁ ବର୍ଣ୍ଣନା

ପଇଁଗ୍ରୁଳଶ ଛାନ୍ଦ-ବର୍ଷାଋତୁ ଅନୁଚନ୍ତା, ଛପ୍ନାଳଶ ଛାନ୍ଦ-ଶରତ ଋତୁରେ ନାୟକ ପୁନରାନୁଗମନ, ସତଗ୍ରୁଳଶ ଛାନ୍ଦ-ନାୟକ ପଥ କଳ୍ପନା, ଅଷ୍ଟଗ୍ରୁଳଶ ଛାନ୍ଦ-କୁମର ପ୍ରବେଶ, ଅଣଗ୍ରୁଶ ଛାନ୍ଦ-ନାୟକ ସ୍ୱଦେଶ ଗମନ ଗ୍ରହଂଉକ୍ତି, ପଗ୍ରୁଶ ଛାନ୍ଦ-ନାୟିକା ସ୍ୱଦେଶ ଦୁଃଖ ମାନ ଉକ୍ତି, ଏକାବନ ଛାନ୍ଦ-ଦମ୍ପତି ମିଳନ ।

**ବାଉନ ଛାନ୍ଦ**—ରସୋତ୍ସବ

ଶୁଣ ହେ ବିଦୁଷ ଗଣ                    କେତେ ଦିନ ଅନ୍ତେ ପୁଣ
ସେ ନଗରେ କଲେ କୃଷ୍ଣ ରାସ ଉତ୍ସବ ।
ସାଜଣ ରାସ ମଣ୍ଡପ                    ନାଶିବାକୁ ହୟ ତାପ
ନାନା ବସନେ ମଣ୍ଡଣି କଲେ ସ୍ୱଭାବ ।
ମଣ୍ଡଳ କ ମଣ୍ଡଳ ଗୋପୀ ! ମଧ୍ୟେ ଶୋଭା ରାଧାକୃଷ୍ଣ ବିରହରୂପୀ ॥ ୧ ॥

× × ×

ନାନା ଜାତି ଶୁକ ସାରୀ                    ପଢ଼ୁଛନ୍ତି ନାନାପରି
ସୂପକାର ପୂଜକର ସଂଖ୍ୟା କେ କରେ ।
କୃଷ୍ଣ କୁଞ୍ଜକେ ଉତ୍ସବ                    କେ ମୁଖେ କହି ପାରିବ
ଗିରିଧର ଯାଇ ପୂର୍ଣ୍ଣ ରାସ ଦିନରେ ।
ବୃଷଭନୁ ଯେ ଚକ୍ରବର୍ତ୍ତୀ, ବେଢ଼ିରଣେ ବେଢ଼ିଛନ୍ତି ଭୂପ ସନ୍ତତି ॥ ୪ ॥

× × ×

ବାଉନ ଛାଂଦ ଏ ଗୀତ                    ହେଲା ଆସି ସମାପତ
କବି ବିନ୍ଦୁ ଏ ଶ୍ରମ ଜାଣିବ କେ ଆନ
ଦସରା ମସରା କରି                    ଯେ ଜୋଉଛନ୍ତି କରେ ଟେରା
ସେ କାହୁଁ ଜାଣିବେ ଆମ୍ଭମାନଙ୍କ ମନ
ଯେ ଅବା ନୁହଁନ୍ତି ରସିକ, ଦୋଷ ଖୋଜ ବୁଲୁଥାନ୍ତି ସଂସାର ଯାକ ॥ ୧୭ ॥

× × ×

ମାଳଗିରି ସନ୍ନିକଟ ନବଦୁର୍ଗ ବୋଲି ଖ୍ୟାତ
ତହିଁରେ ଶରଣକୂଳ ନାମରେ ସ୍ଥଳ ।

ଯହିଁ ଶ୍ରୀ ଲିଙ୍ଗରାଜେଶ୍ୱର    ନାମ ବିଜେ ଲିଙ୍ଗବର
ଆକୃତି ଶିବ ସେ ସତ୍ତ୍ୱଗୁଣି କେବଳ ।
ଆଲୋକନ ଆନନ୍ଦ ଏହ୍ନେ । ବଳଭଦ୍ର ଜଗନ୍ନାଥ ଦର୍ଶନ ଯେହ୍ନେ ॥ ୧୯ ॥

ସେ ମୋହର କୁଳଗୁରୁ    ଯେ ମହିମା ମହାମେରୁ
ତାଙ୍କ ଆଜ୍ଞାରେ ମୋହର ଜନମଭୂମି

ତାହାଙ୍କ ଆଜ୍ଞାରେ କବି    ସେ ଆଜ୍ଞାରେ ଚଉ ଦ୍ରବି
ଆଶ୍ରେ ମୋର ଶ୍ରୀ କିଶୋର ଦାସ ଗୋସ୍ୱାମୀ ।

ହରିନାମ ଧନ ସେ ଦେଲେ,
ଦେହ ପ୍ରାଣ ସର୍ବସ୍ୱଟି ସେ ହସ୍ତ କଲେ ॥ ୨୦ ॥

## (୨) ଯୁଗଳ ରସାମୃତ ଭଉଁରୀ—

ଏହି ନାମରେ ଏକ ତାଳପତ୍ର ପୋଥି ଜଗତସିଂହପୁର ଡାକବଙ୍ଗଳାର କର୍ମଚାରୀ ଶ୍ରୀଯୁକ୍ତ ବନମାଳୀ ବିଶ୍ୱାଳଙ୍କଠାରୁ ମିଳିଥିଲା । ସେ ଏହି ପୋଥିଟିକୁ ତାଙ୍କ ବାସସ୍ଥାନ କଟକ ଜିଲ୍ଲା ନରସିଂହପୁରରୁ ସଂଗ୍ରହ କରିଥିଲେ । ଏହି ନାମରେ ମଧ୍ୟ ଅନ୍ୟ ଏକ ତାଳପତ୍ର ପୋଥି ଓଡ଼ିଶା ମ୍ୟୁଜିୟମରୁ ପାଇ ଶୁଦ୍ଧପାଠ ପ୍ରସ୍ତୁତ କରାଯାଇଅଛି । ଏହା ୪୮ ଛାନ୍ଦ ବିଶିଷ୍ଟ ଏକ ମହାନ୍ କାବ୍ୟ । ଏତଦ୍‌ଭିନ୍ନ ଆହୁରି ତିନିଗୋଟି ତାଳପତ୍ର ପୋଥି ମଧ୍ୟ ଓଡ଼ିଶା ମ୍ୟୁଜିୟମରୁ ମିଳିଅଛି* । ଏହା ବ୍ୟତୀତ ଉତ୍କଳ ବାଣୀବିହାରସ୍ଥ ପୋଥିବିଭାଗରୁ ମଧ୍ୟ ଏହି ନାମରେ ଆଉ ଏକ ଖଣ୍ଡ ତାଳପତ୍ର ପୋଥି ମିଳିଥିଲା । କିନ୍ତୁ ଅନ୍ୟ ପୋଥିମାନଙ୍କଠାରୁ ଏ ପୋଥିର ଶେଷରେ କବିଙ୍କର ଗୁରୁ ପରମ୍ପରାର ଏକ ବିସ୍ତୃତ ବିବରଣୀ ସହ କବିଙ୍କ ଜୀବନୀ ଉପରେ କେତେକ ଆଲୋକପାତ କରାଯାଇଅଛି । ଏହି କାବ୍ୟଟି ସର୍ବମୋଟ ୪୮ ଛାନ୍ଦରେ ସମ୍ପୂର୍ଣ୍ଣ ହୋଇଅଛି ।

---

* (କ) Cy-1006-Substance Palm leaf No. of Folio 116
ପୋଥି ଶେଷରେ ଉଲ୍ଲେଖ ଅଛି;
"ନାରଦ ପରୀକ୍ଷିତ ବୈକୁଣ୍ଠରେ    ରସାମୃତ ଲହରୀ କହିଲି ବୈକୁଣ୍ଠରେ,
ମିଳନ ତହିଁରେ ମାନରସ ଅବଶେଷ
ଭଉଁରୀ ନାମ ଗ୍ରନ୍ଥରେ ହେବ ଏବେ ଶେଷ ॥"
(ଖ) OL/394, No. of Folio 168

"ତାହା ସଙ୍ଗ ମାନ ରସେ ଭଜିଁଶ କଠିନ
ଅଷ୍ଟବୃନ୍ଦଶ ଛାଂଦରେ ହୋଇଛୁ ସମ୍ପୂର୍ଣ୍ଣ ॥ ୬ ॥
(ମୋହନଲତା ୪୬ ଛାଂଦ)

ଏହି କାବ୍ୟଟି କବିଙ୍କର ଦ୍ୱିତୀୟ ରଚନା । ଏହି କାବ୍ୟ ରଚନା ସମୟରେ କବି ମଧୁପୁର ମଠରେ ଅବସ୍ଥାନ କରୁଥିବା ବିଷୟ ଉକ୍ତ ଛାଂଦରୁ ସୂଚିତ ହୁଏ । ଏହାଛଡ଼ା ସ୍ୱରଚିତ 'ପ୍ରେମକଳ୍ପଲତା' କାବ୍ୟରେ ମଧ୍ୟ ଉଲ୍ଲେଖ କରିଛନ୍ତି ।

ଯା ଦୟାରେ ରଚିଲି ଲୀଳାମୃତ ସାଗର ।
ଲହଣୀ ଭଜିଁଶ ବିଂଦୁ ନଧା ସେ ସଙ୍ଗର ॥ ୧୨ ॥
ପ୍ରେମକଳ୍ପଲତା ବଢ଼ୁ ଏବେ ଜନମରେ ।
ଭବ ଗ୍ରୀଷ୍ମ ତାପ ନାଶୁ ଛାୟା ବିଶ୍ରାମରେ ॥ ୧୩ ॥
(ପ୍ରେମକଳ୍ପଲତା ପ୍ରଥମ ଛାଂଦ)

ତାଙ୍କ ଶିଷ୍ୟ ବ୍ୟାସାଚାର୍ଯ୍ୟ ସର୍ବଗୁଣେ ଧୀର ଧୈର୍ଯ୍ୟ
ରଘୁ ଗୋପାଳ ଗୋସାଇଁ ସେ ଶିଷ୍ୟ ହୋଇ ଯେ ॥
× × ×

ଏହି ବିଶାଳ କାବ୍ୟଟି ରାଧାକୃଷ୍ଣ ଯୁଗଳଲୀଳା ସମ୍ବଳିତ ଏକ ମହାନ୍ ଭକ୍ତିରସାତ୍ମକ କାବ୍ୟ ।

## (୩) **ଚିତ୍ରାଭ ଚନ୍ଦ୍ରୋଦୟ**

ଏହି ୧୬ ଛାଂଦ ବିଶିଷ୍ଟ ରଚନାଟି କବିଙ୍କ ପ୍ରଦତ୍ତ ତାଲିକା ଅନୁସାରେ ଷଷ୍ଠ ରଚନା ଏବଂ ଏହା ପ୍ରତିଛନ୍ଦ ରଚିତ ଗୋଟିଏ ଗୋଟିଏ ଚିତ୍ରାଭର

---

(ଗ) **No. OL / 480 No. of Folio-146**
ଏହି ବ୍ରଜେଂଦ୍ର କୁମାର ଏ କଳିରେ ଅବତାର
ନାମ ଶ୍ରୀକୃଷ୍ଣ ଚୈତନ୍ୟ ଭକ୍ତ ଜୀବନ ସ୍ୱେ ।
ତାହାଙ୍କର ଅନୁଗତ ଶ୍ରୀ ଗଦାଧର ପଣ୍ଡିତ
ଗୋସାଇଁ ମୁକୁଟମଣି ସର୍ବ ଅଗ୍ରଣୀ ସ୍ୱେ ।
(ଘ) **OL. 29,** ବାଣୀବିହାର ପୋଥି ବିଭାଗ **Folio-116**

ସମଷ୍ଟି । ଏହି ଚଠାଉ ଗୁଡ଼ିକ ରାଧାକୃଷ୍ଣଙ୍କ ମଧ୍ୟରେ ବିଭିନ୍ନ ରସ ସମ୍ବଳିତ ଉତ୍ତର ପ୍ରତ୍ୟୁତ୍ତରର ବର୍ଣ୍ଣନା । କବି 'ମୋହନଲତା'ରେ ଏହି ସମ୍ବନ୍ଧରେ ଲେଖିଛନ୍ତି—

"ଶ୍ରୀ ଚଠାଉ ଚନ୍ଦ୍ରୋଦୟ ଷଠଦଶ ଛାନ୍ଦ
ଦନକ ଚରିତ ସର୍ବ ଚଠାଉ ନିବନ୍ଧ" ॥

ଏହି ପାଣ୍ଡୁଲିପି ଉତ୍କଳ ବାଣୀବିହାରସ୍ଥ ପୋଥିବିଭାଗରୁ ସଂଗୃହୀତ ହୋଇଅଛି । ମୂଳ ପୋଥିରେ ୧୬ଟି ଛାନ୍ଦ ଥିବା ବିଷୟ କବି ସ୍ୱୟଂ ଉଲ୍ଲେଖ କରିଥିବା ସ୍ଥଳେ ଏଥିରେ ମାତ୍ର ୧୫ଟି ଛାନ୍ଦ ମିଳୁଅଛି । ଏହି ୫୫ ପୃଷ୍ଠା ବିଶିଷ୍ଟ କାବ୍ୟଟି 'ଯୁଗଳରସାମୃତ ଲହରୀ' ର ପରବର୍ତ୍ତୀ ରଚନା ହୋଇ-ଥିବାରୁ ଏହା ୧୭୮୧ ଖ୍ରୀଷ୍ଟାବ୍ଦର ପରେ ହୋଇଥିବା ସୁସ୍ପଷ୍ଟ ।

**ପ୍ରଥମ ଛାନ୍ଦ—**

"କୋଟି ପ୍ରଣାମ ତବ ପାଦାମ୍ବୁଜେ । ଚିନ୍ତାମଣି ତୁମ୍ଭେ ମୋର ସହଜେ ॥୬॥
ଏକବଦନେ ଏକ ଚେଷ୍ଟା ତୁମ୍ଭର । ବର୍ଣ୍ଣିବାକୁ ଇଚ୍ଛା ହୋଏ ମୋହର ॥ ୭ ॥
ନିଷ୍କୃଷ୍ଟାର୍ଥା ଅମିତାର୍ଥା ଏ ଦୁଇ । ପରିହାସ ଏ ତିନି ଦୂଷ୍ଟି ହୋଇ ॥ ୮ ॥
ପରିହାସ ଚରିତ କହିବାରେ । ଇଚ୍ଛା କରେ ମୋ ଚିତ୍ତ ବଳାତ୍କାରେ ॥ ୯ ॥
କୃପାକର କର ବିଘ୍ନ ବିନାଶ । ସାଧୁ ମୁଁ ତୁମ୍ଭ ଶ୍ରୀଚରଣ ଦାସ ॥ ୧୧ ॥
ଖଳ ବ୍ୟାଳ ଦଂଶନେ ଚିନ୍ତା ନାହିଁ । ଶୁଣି ଗଦ୍‌ଗଦ୍‌ ପଦ ପଦାହିଁ ॥ ୧୧ ॥
ହେବ ଚଠାଉ ଚନ୍ଦ୍ରୋଦୟ ନାମ । ଚିତ୍ତ ଗୁହାରୁ ନାଶିବ ଏ ତମ ॥ ୧୨ ॥
ଦୃଢ଼ ରସ ଭକ୍ତ ଚିତ୍ତ କୁମୁଦ । ହେବ ଉଲ୍ଲାସ ମାନରେ ଆନନ୍ଦ ॥ ୧୩ ॥
ସର୍ବ ଆହ୍ଲାଦକ ହେବ ନିଦାନ । ଗୂଢ଼ାର୍ଥରେ ନାହିଁ ମୋ ପ୍ରୟୋଜନ ॥ ୧୪ ॥
ପୂର୍ଣ୍ଣ ମଙ୍ଗଳାଚରଣ ଏ ଛାନ୍ଦ । ସଦାନନ୍ଦ ଭାବରେ ସଦାନନ୍ଦ ॥ ୧୫ ॥
କବିସୂର୍ଯ୍ୟ ବ୍ରହ୍ମା ପଦ ପ୍ରକାଶ । ନାମ ଅଟେ ସାଧୁ ଚରଣ ଦାସ" ॥ ୧୬ ॥

**ଦ୍ୱିତୀୟ ଛାନ୍ଦ—**

"ଏଥୁ ଅନନ୍ତରେ ଶୁଣ ହେ ସାଧୁ ଧୀରେ ଏ ଛାନ୍ଦର ଯେ ବିଷୟ ।
ପ୍ରାତେ ଫୁଲବନ ମଣ୍ଡପେ ମୋହନ ମୁରଲୀଧର ବିଜୟ ॥ ୧ ॥

ପାଞ୍ଚ ଅପସରେ ଅପସରି କରି ଭାର ଦେଇ ଅଳସରେ ।
ଦିବ୍ୟ ଆସନେ ବିହରେ ପାଦେ ସଙ୍କୁଚିତ ପାଦେ ପ୍ରଳମ୍ବରେ ॥ ୨ ॥

## ତୃତୀୟ ଛାନ୍ଦ—

"ଶୁଣ ବ୍ରଜ ରସିକ ଭକ୍ତ । ରାଧାକୃଷ୍ଣ ଚରିତ ଉକ୍ତ ॥ ୧ ॥
ପୟୋଦକ ଏକାଳେ ପାଇ । ରନ୍ଧ କାଠିଲାଗି କରାଇ ॥ ୨ ॥
ଏହି ସମୟରେ ସେ ବାଳ । କୁସୁମଲତା ଗଳ ଗଳ ॥ ୩ ॥
ମଣ୍ଡପ ପୀଢ଼ ତଳେ ତଳେ । ଲୁଚି ଲୁଚି ନିକଟେ ମିଳେ ॥ ୪ ॥
କୃଷ୍ଣ ପୟରକୁ ପତ୍ରିକା । ପକାଇ ପଳାଇ ବାଳିକା ॥ ୫ ॥

× × ×

ଶ୍ରୀ ଶ୍ରୀ ପ୍ରଭୁଙ୍କ ଚରଣ । ସର୍ବଦା ମୋହର ଶରଣ ॥ ୧୭ ॥
ଆଜ୍ଞା କର ହୃଦୟ ମୋର । ଉଦାବାସ ପର ଜର୍ଜର ॥ ୧୮ ॥
ତାହା ଚପୋଡ଼ ଶୁଖାଇଲ । କଉଁ ସଂଶୟ ମନେ କଲ ॥ ୧୯ ॥
ଦଇବେ ଅବଳା ଅଟଇ । କି ଭଲମନ୍ଦ ନ ଜାଣଇ ॥ ୨୦ ॥
ପିତାମାତା ପ୍ରାଣୁ ଅଧିକେ । ପାଳିଲେ ପୁଣି ବେଦବାକ୍ୟେ ॥ ୨୧ ॥
ପ୍ରଦାନ କଲେ ମୋତେ ଯହିଁ । ସେ ବିନା ଆନ ନ ଜାଣଇ ॥୨୨॥

× × ×

## ଚତୁର୍ଥ ଛାନ୍ଦ—

ଏହି ଛାନ୍ଦରେ ରସିକାମଣି ଶ୍ରୀରାଧାଙ୍କର କୃଷ୍ଣଙ୍କଠାରୁ ପତ୍ର ପ୍ରାପ୍ତି ପରେ ନିଜ ମନକୁ ଧିକ୍କାର କରିବା ଓ ଏହା ଦେଖି ଲଳିତା ବିଶାଖା ଏ ସମ୍ବନ୍ଧରେ ପଚାରନ୍ତେ ସେମାନଙ୍କୁ କୃଷ୍ଣଙ୍କର ଉକ୍ତ ପତ୍ର ପ୍ରଦାନ ଓ ସଖୀ-ଦ୍ୱୟଙ୍କୁ ଉତ୍ତର ପ୍ରଦାନ ।

ଭଜିଲେ ଅପବାଦ ତେଜିଲେ ଦୁଃଖ ।
କଉଣସି ପ୍ରକାରେ ନୋହି ମୋ ସୁଖ ଯେ ॥ ୯ ॥
ପୋଥିହସ୍ତ ବିଦ୍ୟା ପରହସ୍ତ ଧନ ।
କି ଉପଯୋଗ ମୋହ ମନ ତେସନ ଯେ ॥ ୧୧ ॥
ଲଳିତ କହେ ଲୋହା ଚଣା ଚୋବାଇ,
ପାରେ ଯେ କୃଷ୍ଣ ପ୍ରୀତି ରଖିପାରଇ ଯେ ॥ ୧୫ ॥

ହାତର ଗୁଡ଼ ବୋଲ୍ହ ହେଲ କହୁଣୀ,
ଏବେ ତା ବଗୃନିଲେ ଅଛୁ କ ପୁଣି ଯେ ॥ ୧୬ ॥

କର ଶଙ୍ଖା ଦର୍ପଣେ ନରେକ୍ଷ ସ୍ୱନ୍ଦ,
କହ ଏ ବୁଦ୍ଧି ଧନ୍ୟ ଶିଖିଲୁ କାହୁଁରେ । ୧୭ ।

× × ×

ବିଶାଖା ବୋଲେ ଏବେ ପାଇବ କାହିଁ,
ପେଚ୍ଛର ସମ୍ପଦ ହାତ ଧନ ହରଇ ଯେ ॥ ୨୩ ॥

ସିହାଇ କାଗଜ ଯେ ଲଳିତା ଆଣି,
ଲେଖ ବୋଲି ଦେଲେ ଶ୍ରୀ ରାଧିକା ପାଣି ଯେ ॥ ୨୪ ॥

**ପଞ୍ଚମ ଛାନ୍ଦ—**

ଏହି ଛାନ୍ଦରେ ମଧୁମଙ୍ଗଳର ଗୋପେଶ୍ୱରଙ୍କ ନିମନ୍ତେ ମାଳା ନିମନ୍ତେ କାନନକୁ ଫୁଲପାଇଁ ଯାଆନ୍ତେ ସେଠାରେ ପରସ୍ପର ଛଳୋକ୍ତି ବର୍ଣ୍ଣନା କରାଯାଇଛି ।

**ଷଷ୍ଠ ଛାନ୍ଦ—**

ଦେବାଳୟକୁ ଦଇବେ ଆସନ୍ତି ସେ ଭକ୍ତଭାବେ,
ମାତ୍ର ସମସ୍ତ ନୁହଁଇ ଆସିବେ କାହିଁ ଯେ ॥ ୨୩ ॥

ବିଷ୍ଣୁଭକତ ଜନଙ୍କ ପୃଥ ନାହିଁ ଉପାସକ,
ରାଧାମନ୍ତ୍ର ପୃଥ ଜପେ ଶୁଣି ବାପେ ଯେ ॥ ୨୪ ॥

× × ×

ନୀଳାମ୍ବର କାଞ୍ଚଲରେ କୁଚ ଲୁଚୁଇଛି ଉରେ,
ଫୁଟି ଦିଶୁଛନ୍ତି ତେବେ ଉଚ୍ଚ ସ୍ୱଭାବେ ଯେ ॥ ୩୩ ॥

ଯେସନେ ପଣ୍ଡିତ ଜନେ ରହିଲେ ଆପେ ଗୋପନେ,
ବଳେ ପ୍ରକାଶ ହୁଅନ୍ତି ଏ ସେହି ମତ ଯେ ॥ ୩୪ ॥

ଘାଘରା ତା କଟି ତଟେ ମଧ୍ୟରେ ଚହଟେ ପଡ଼ଣ ଲେଟେ,
ତାହା ଓଢ଼ଣୀ ଉପରେ କଳିତ ପାଣି ଯେ ॥ ୩୫ ॥

ଏହି ଭାବରେ ବେଶ ହୋଇ ତାମ୍ବୂଳମାର କୃଷ୍ଣଙ୍କୁ ତାମ୍ବୂଳବ୍ୟାଜରେ ପଦ ପ୍ରଦାନ ବର୍ଣ୍ଣିତ ହୋଇଅଛି ।

## ସପ୍ତମ ଛାନ୍ଦ—

ଏଥୁ ଅନନ୍ତରେ ଶୁଣ ଆହେ ପ୍ରବୀଣଗଣ
ବୋଇଲେ ସେ ମଧୁମଙ୍ଗଳ ।
ପୂର୍ବାହ୍ନ ହେଲା ଶେଷ ମଧ୍ୟାହ୍ନ ପରବେଶ
ଜଳଯନ୍ତ୍ର ପୁରକୁ ଚଳ ହେ ।
ଏତେ କହି ପାରନ୍ତେ ନୟନ ଅନ୍ତରେ, ରକ୍ତକ ଗନ୍ଧ ତତ୍ପରେ ।
କୁସୁମ ଶଯ୍ୟା କରି ସିଞ୍ଚି ପନିର ବାରି
କର୍ପୂର ବୁଣିଲା ଉପରରେ ॥ ୧ ॥

× × ×

## ଅଷ୍ଟମ ଛାନ୍ଦ—

"ଲୀଳା ଶୁଣି ଶ୍ରୀକୃଷ୍ଣର ଆହେ ଶୁଦ୍ଧ ସର୍ବନର
ବୃଷଭ ସେ ପଥଭାଙ୍ଗି ଆସି ବାହୁଡ଼ ।
କବାଟେ ମାରନ୍ତେ କର ଫିଟାଇ ଦେଲେ ସତ୍ୱର
ଶରଣ୍ୱାସେ ପେଟପାଖ ପୋଟରୁ କାଢ଼ି ॥
ପଡ଼ି କରି ଶ୍ରୀକୃଷ୍ଣ ହୃଷ୍ଟ, ପଞ୍ଜିକା ପାଇ ଗଣିଲେ ସେ ହେଲା ଅଷ୍ଟ (୧)

× × ×

ଏହିପରି ରାଧାକୃଷ୍ଣଙ୍କ ମଧ୍ୟରେ ନାନା ରସପୂର୍ଣ୍ଣ ପଦର ବର୍ଣ୍ଣନମୟ ହୋଇଅଛି । ଏହି ଶଟାଉ ଚନ୍ଦ୍ରୋଦୟ କାବ୍ୟଟି ସମୁଦାୟ ୧୫ ଗୋଟି ଛାନ୍ଦରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଶେଷ ଛାନ୍ଦରେ ଅସମାପ୍ତ ବୋଲି ଲେଖା ହୋଇଅଛି । ତେବେ ଏହି ପନ୍ଦର ଗୋଟି ଛାନ୍ଦ ପନ୍ଦରଗୋଟି ପଦର ସମଷ୍ଟି ।

ଚନ୍ଦ୍ରକୁ ଚାହିଁ ଚକୋର, ମୁଦିରକୁ ଚାହିଁ ଯେସନେ ମୟୁର ହେ
ଯା ବାଟକୁ ତେସନେ ବଂଶୀଧର କଦାନ ସେ ॥ ୧୩ ॥

ଏହିରୂପେ କେତେବେଳେ          ବିଜୁଳି ଝଟକ ପରି ଚଞ୍ଚଳ ଯେ
ଦିଶି ନ ଦିଶିଲେ ପୁଣି ଡୋଳେ ରାଧିକା ଯେ ॥ ୧୪ ॥

(ପଞ୍ଚଦଶ ଅଧ୍ୟାୟ)

## (୪) ତତ୍ତ୍ୱ ତରଙ୍ଗିଣୀ (ଉତ୍ତର ଖଣ୍ଡ)

ଏହି ନାମରେ ଦୁଇଖଣ୍ଡି ତାଳପତ୍ର ପୋଥି ଭୁବନେଶ୍ୱର ବାଣୀବିହାରସ୍ଥ ପୋଥିବିଭାଗରୁ ମିଳିଥିଲା❋ । ଏହି ପାଣ୍ଡୁଲିପି ଦୁଇଟି ଷୋଡ଼ଶ ତରଙ୍ଗରେ ସମାପ୍ତ ହୋଇଛି । କବି 'ମୋହନଲତା' କାବ୍ୟରେ ମଧ୍ୟ ଉକ୍ତ ଗ୍ରନ୍ଥ ବିଷୟରେ ଉଲ୍ଲେଖ କରିଅଛନ୍ତି ।

" ଶ୍ରୀ ଶ୍ରୀ ତତ୍ତ୍ୱତରଙ୍ଗିଣୀ ସିଦ୍ଧାନ୍ତର ସାର
ଉଦାହରଣ ସର୍ବ ପୁରାଣ ମାନଙ୍କର ।।
ଏଣୁ ଗର୍ଭ ହୋଇ ହେଲା ସେ ଦ୍ୱାବିଂଶ ଛାନ୍ଦ ।।

(ମୋହନଲତା-୪୭ ଛାନ୍ଦ)

**ପ୍ରଥମ ତରଙ୍ଗ—**

ସମସ୍ତ ଜଗତ ମଙ୍ଗଳ ପ୍ରସଙ୍ଗବର । ଭକ୍ତିରସ ଏଥିରେ ପ୍ରସଙ୍ଗ ହୋଇବାର ॥

× × ×

ଆଦ୍ୟ ଲହରୀ ସାମାନ୍ୟ ଭକ୍ତି ନିରୂପଣ ।
ଦ୍ୱିତୀୟରେ ସାଧନ ଭକ୍ତିର ଯେ ପ୍ରମାଣ ॥
ତୃତୀୟରେ ଭାବର ଆଶ୍ରୟ ଯେ ବିଦିତ ।
ଚତୁର୍ଥ ଲହରୀରେ ପ୍ରେମ ନିରୂପିତ ।

ପ୍ରାରବ୍ଧ ଅପ୍ରାରବ୍ଧ ପାପ, ଚତୁଃବର୍ଗ ଫଳପ୍ରାପ୍ତି ଗୁରୁଯୋଗ ଆଦି ସହ କବି କୃଷ୍ଣଭକ୍ତି ବିଷୟରେ କହିବାକୁ ଯାଇ 'ନାରଦୀୟ ପଞ୍ଚରାତ୍ର', ଭାଗବତ, ପଦ୍ମପୁରାଣ, ଗୌତମୀ ତନ୍ତ୍ର ପ୍ରଭୃତିର ଉଦାହରଣ ଦେଇଛନ୍ତି ଓ

---

❋ (୧) Cat. No. OL/80 (ବାଣୀବିହାର), No. of Folio-164
(୨) Cat. No. OL/207 (ବାଣୀବିହାର),No. of Folio 235

ଗୋସ୍ୱାମୀଙ୍କ ରଚିତ ଗ୍ରନ୍ଥ 'ହରିଭକ୍ତି ରସାମୃତ ସିନ୍ଧୁ' ର ଆଶ୍ରୟ ନେଇଛନ୍ତି ।

## ଦ୍ୱିତୀୟ ତରଙ୍ଗ—

ଏଥିରେ କବି ସାଧନଭକ୍ତି ବିଷୟରେ ବର୍ଣ୍ଣନା କରିଅଛନ୍ତି ଏବଂ କୃଷ୍ଣସେବକମାନଙ୍କୁ ଶ୍ରେଷ୍ଠବୋଲି ପ୍ରକାଶ କରିଛନ୍ତି ।

"ବହୁତ ପ୍ରକାରେ ମୁକ୍ତି ଯା ଇଚ୍ଛା ତା' କର ।
ହେ ନାଥ ଆପଣଙ୍କ ସେବା ସର୍ବ ଉପରେ ସାର" ।

ଏଥିସହି କବି ନିଗମ, ଆଗମ, କାର୍ତ୍ତିକମାହାତ୍ମ୍ୟ ପ୍ରଭୃତିରୁ ମଧ୍ୟ ନାନା ଉଦାହରଣ ଦେଇଅଛନ୍ତି । କବିଙ୍କ ମତରେ 'ଭଗବଦ୍ ଗୀତା' ସବୁଠାରୁ ଶ୍ରେଷ୍ଠ ଅଟେ ।

"ସକଳ ଆତ୍ମା ଯେ ମୁକୁନ୍ଦ ଯେବେ ତାଙ୍କୁ ଶରଣ ।
ସର୍ବଧର୍ମ ଛାଡ଼ି ଶ୍ରୀଭଗବତ ଗୀତାରେ ପୁଣ ।।"

## ତୃତୀୟ ତରଂଗ—

ଏହି ଛାନ୍ଦ ବା ତରଙ୍ଗରେ ଉପାସନା ଭକ୍ତିର ୬୪ ଅଙ୍ଗ ବର୍ଣ୍ଣନା କରାଯାଇଅଛି ।

ଚତୁର୍ଥ ତରଙ୍ଗରେ ଉପାସନା ଭକ୍ତିର ଫଳ ବର୍ଣ୍ଣନା ସହ ଦ୍ୱାରକା ଦାସଙ୍କ ସ୍କନ୍ଦ ପୁରାଣ ଓ ବ୍ରହ୍ମବୈବର୍ତ୍ତ ପୁରାଣରୁ ମଧ୍ୟ ନାନା ଉଦାହରଣ ଦେଇଅଛନ୍ତି ।

"ସ୍କନ୍ଦ ପୁରାଣରେ ହୋଇଅଛି ଯେ ଭକ୍ତି,
ଅଶ୍ୱତ୍ଥ ତୁଳସୀ ଧାତ୍ରୀ ଗୋରୁ ବ୍ରାହ୍ମଣ
ବୈଷ୍ଣବ ଏ ସର୍ବେ ପୂଜ୍ୟ ଅଟନ୍ତି ଜାଣ ।।"

କବି ସ୍ୱୟଂ ବ୍ରଜପନ୍ଥୀ ବୈଷ୍ଣବ ଥିବାରୁ ଶ୍ରୀକୃଷ୍ଣଙ୍କ ଗୁଣ କୀର୍ତ୍ତନକୁ ଶ୍ରେଷ୍ଠ ବୋଲି ବିବେଚନା କରିଛନ୍ତି ।

"ଶ୍ରୀକୃଷ୍ଣର ଗୁଣ ଯେ କୀର୍ତ୍ତନ ନ କରେ
ଆଜ ଯେତେ କରୁ ବ୍ୟର୍ଥ ହୁଏ ଶ୍ରମରେ ।।"

ଏହି ଭକ୍ତି ତରଙ୍ଗିଣୀ ରଚନା କରିବାକୁ ଯାଇ କବି ବହୁ ପୁରାଣରୁ ବିଷୟବସ୍ତୁମାନ ସଂଗ୍ରହ କରିଥିବା ଉଲ୍ଲେଖ କରିଛନ୍ତି ।

"ଭକ୍ତି ତରଙ୍ଗିଣୀ, କବିସୂର୍ଯ୍ୟବ୍ରହ୍ମା ପୁରାଣ ଗୁଣି ।।"

## ଅଷ୍ଟମ ତରଂଗ—

ଏହି ଛାନ୍ଦ ବା ତରଙ୍ଗରେ କବି ପ୍ରତିପ୍ରାନ୍ତ୍ୟ, ବିଦଗ୍ଧ, ଚତୁର, କୃତଜ୍ଞ, ସୁଦୃଢ଼ବ୍ରତ, ଦେଶକାଳ ସୁପାତଜ୍ଞ ଶାସ୍ତ୍ରଚକ୍ଷୁ, ଶୁଚି, ବଶୀ, ସ୍ଥିର, ଦାନ୍ତ, କ୍ଷମାଶୀଳ,ଗମ୍ଭୀର, ଧୃତିମାନ, ବଦାନ୍ୟ, ଧାର୍ମିକ, କରୁଣ, ଦକ୍ଷିଣ, ଶରଣାଗତ ପାଳକ,ସୁଖୀ ଭକ୍ତ ସୁହୃଦ, ପ୍ରେମବଶ୍ୟ, ସର୍ବଶୁଭଙ୍କର, ପ୍ରତାପୀ, କୀର୍ତ୍ତିମାନ୍, ରକ୍ତଲୋକ, ସର୍ବାରାଧ୍ୟ, ସମୃଦ୍ଧିମାନ୍, ବରୀୟାନ୍, ଈଶ୍ୱର, ସର୍ବଜ୍ଞ, ନିତ୍ୟନୂତନ, ସଚ୍ଚିଦାନନ୍ଦ, ଅଚିନ୍ତ୍ୟ ମହାଶକ୍ତି,, କୋଟି-ବ୍ରହ୍ମାଣ୍ଡ ବିଗ୍ରହ, ବେଣୁମାଧୁର୍ଯ୍ୟ, ରୂପମାଧୁର୍ଯ୍ୟ, ଧୀର, ଶାନ୍ତ, ଧୀରୋଦାତ୍ତ, ମାଧୁର୍ଯ୍ୟ, ମାଙ୍ଗଲ୍ୟ, ଚାତୁର୍ଯ୍ୟ, ଔଦାର୍ଯ୍ୟଆଦିର ସ୍ୱରୂପ ବର୍ଣ୍ଣନା କରିଅଛନ୍ତି ।

## ନବମ ତରଂଗ—(ଉତ୍ତରଖଣ୍ଡ)

ଏହି ତରଙ୍ଗରେ କବି କୃପାସିଦ୍ଧା, ନିତ୍ୟସିଦ୍ଧା, ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଆଦି ଭକ୍ତିରସ, ପ୍ରସାଧନ, ବସନ, ପାଦାଙ୍କ, କ୍ଷେତ୍ର, ବାସ, ଶଯ୍ୟା, ଲୀଳାଶ୍ରବଣ, ଅଟ୍ଟହାସ୍ୟ ସ୍ୱେଦ, ରୋମାଞ୍ଚ, ସ୍ୱରଭେଦ, ବିସ୍ମୃ, ହର୍ଷଭାବ, ଭୀତଭାବ, ବେପଥୁ, ବିଷାଦ, ଦୀପ୍ତ, ଉଦ୍ଦୀପ୍ତ, ଗର୍ବ, ଲୋଭ, ଶଙ୍କା ତ୍ରାସ, ବ୍ୟାଧି, ମୋହ, ଆଳସ୍ୟ, ଜାଡ୍ୟ, ବ୍ରୀଡ଼ା, ଇଷ୍ଟସ୍ପୃହା ପ୍ରଭୃତି ବିଷଦ ଭାବରେ ବର୍ଣ୍ଣନା କରିଅଛନ୍ତି ।

ଚତୁର୍ଦ୍ଦଶ ତରଙ୍ଗରେ ଶାନ୍ତ, ସାମାନ୍ୟ-ପ୍ରୀତି, ସଖ୍ୟ, ପ୍ରିୟତା, ଉତ୍ସାହିତ ରତି, କ୍ରୋଧରତି, ଜୁଗୁପ୍ସା ରତି ପ୍ରଭୃତି ବର୍ଣ୍ଣିତ ହୋଇଅଛି । ପଞ୍ଚଦଶ ତରଙ୍ଗରେ ମଧ୍ୟ ସେହିପରି ଶାନ୍ତ ଭକ୍ତି ରସ, ତାପସଃ ସାତ୍ତ୍ୱିକ, ଆଶ୍ରିତ ଭକ୍ତ, ବ୍ୟଭିଚାର, ପ୍ରେମ, ସ୍ନେହ, ଉତ୍କଣ୍ଠା, ଧୃତି, ସିଦ୍ଧି ଆଦି ବିଷୟ-ମାନ ବର୍ଣ୍ଣିତ ହୋଇଅଛି ।

ଏହି କାବ୍ୟଟି କବିଙ୍କର ନବମ ରଚନା । ତେଣୁ ଏହାର ରଚନା-କାଳ ୧୭୮୧ ଖ୍ରୀଷ୍ଟାବ୍ଦର ବହୁପରେ ହୋଇଥିବା ନିଶ୍ଚିତ ।

## (୫) ପାଟରତ୍ନାବଳୀ :

ଏହି ଗ୍ରନ୍ଥର ପାଣ୍ଡୁଲିପି ଓ ଏକ ତାଳପତ୍ର ପୋଥି ବାଣୀବିହାରସ୍ଥ ପୋଥିବିଭାଗରୁ ସଂଗୃହୀତ ଓ ମୋଦ୍ୱାରା ସଂଗୃହୀତ ଏକ ପୋଥି ସହିତ ଏହାର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଅଛି । ଏହି କାବ୍ୟଟି ମାତ୍ର ଦ୍ୱାଦଶ ଅଧ୍ୟାୟ ବିଶିଷ୍ଟ ଅଟେ । କବିଙ୍କ ପ୍ରଦତ୍ତ ତାଲିକା ଅନୁସାରେ ଏହା 'ତତ୍ତ୍ୱତରଙ୍ଗିଣୀର ପରବର୍ତ୍ତୀ ଏବଂ ଦଶମ ରଚନା ।

"ଶ୍ରୀ ଶ୍ରୀ ପାଟରତ୍ନାବଳୀ ଯେ ଦ୍ୱାଦଶେ ସିଦ୍ଧ" ॥ ୧୩ ॥ ୪୭ ଛାନ୍ଦ*

ଏହି ସମଗ୍ର ରଚନାଟି କବିଙ୍କର ବିଭିନ୍ନ ତୀର୍ଥଯାତ୍ରାର ବିବରଣୀ ପ୍ରଦାନ କରୁଅଛି । ଶିଷ୍ୟମାନଙ୍କ ଗହଣରେ କବି କିପରି ଦ୍ୱାଦଶ ଶ୍ରୀପାଟ ଭ୍ରମଣ କରିଥିଲେ ଓ କିପରି ଭ୍ରମଣ ସମୟରେ ୬୪ ମହନ୍ତଙ୍କ ଶ୍ରୀପାଟଦର୍ଶନ କରିଥିଲେ, ତାହାର ବିସ୍ତୃତ ବିବରଣୀ ଦେଇଅଛନ୍ତି ।

### ପ୍ରଥମ ଅଧ୍ୟାୟ

"ବ୍ରହ୍ମ ସମ୍ପ୍ରଦା ଆଳବାଳ । ରସାଭିଷେକରେ ଶୀତଳ ॥
ମାଧବାଚାର୍ଯ୍ୟ ବୀଜାଙ୍କୁର । ତହିଁରୁ ହୋଇଲେ ନିକର ॥
ତହିଁରୁ ପ୍ରକାଣ୍ଡ ବହୁତ । ଈଶ୍ୱରପୁରୀ ଏକ ଚିତ୍ତ ॥
ତହିଁ ସେ ସ୍କନ୍ଧ ରୂପ ହୋଇ । ଗଉରଚନ୍ଦ୍ର ଭାବଗ୍ରାହୀ ॥
ଜନ୍ମିଲେ ତହିଁ ଏତେ ଶାଖା । ଉପଶାଖା କେ କରୁ ଲେଖା ॥
ଗୁଣ ପଲ୍ଲବେ ଛାୟା କରି । କଳୁଷ ସୂର୍ଯ୍ୟଙ୍କର ହରି ॥
ଯେ ତରୁମୂଳ ଦିବ୍ୟ ଛାଇ । ଭବ ପଥ ଶ୍ରମ ହରଇ ॥

× × ×

ଶ୍ରୀକିଶୋର ଦାସ ଯେ ନାମ । ସେ ମୂଳେ ତାଙ୍କର ବିଶ୍ରାମ ॥ ୭୪ ॥
ଡାକିଲେ ମୋତେ ଆସ ପାଶ । ବଢ଼ାଇ ଚରଣ ସାରସ ॥ ୭୫ ॥
ଯେ ଉଚ୍ଚସ୍ଥାନ ନୋହେ ଯାଇ । ଗଲି ସେ ପାଦ ଆଶ୍ରେ ପାଇ ॥ ୭୬ ॥

---

* ଏହାର ତାଳପତ୍ର ପୋଥି କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ କଟରପା ନିବାସୀ ଶ୍ରୀ ବୈକୁଣ୍ଠନାଥ ପଣ୍ଡାଙ୍କ ନିକଟରୁ ପ୍ରାପ୍ତ ।

ସେ ଆଜ୍ଞା ପାଇ ମନୁ ତୋଷ । ଶାଖା ଦରଶନେ ଲାଳସ ॥ ୭୭ ॥
ଦ୍ୱାଦଶ ଶାଖାଙ୍କ ଶ୍ରୀପୀଠ । ଦର୍ଶନେ ମାନସ ଉଚ୍ଛାଠ ॥ ୭୮ ॥
ଚଉଷଠି ମହନ୍ତଙ୍କର । ଶ୍ରୀପାଟ ଦର୍ଶନ ବସ୍ତୁର ॥ ୭୯ ॥

× × ×

ଉକ୍ତ ପାଞ୍ଚଜଣ ସ୍ୱସ୍ଥାନରୁ ବାହାରି ମହାନଦୀ ତଟରେ ପ୍ରବେଶ ହୋଇ, ସେଠାରୁ 'ଦେପଡ଼ା' ଗ୍ରାମ ଦେଇ କପିଳାସ ଓ ରେମୁଣାସ୍ଥ ଗୋପୀନାଥଙ୍କ ନିକଟରେ ପହଞ୍ଚି ସେଠାରେ ଗୋପୀନାଥ କିପରି ମାଧବେନ୍ଦ୍ର ପୁରୀଙ୍କ ନିମନ୍ତେ କ୍ଷୀର ଚୋରି କରିଥିଲେ, ତାହା ଶ୍ରବଣ କରିଥିଲେ । ତୃତୀୟ ଅଧ୍ୟାୟରେ ଗୋପୀନାଥଙ୍କ ଦର୍ଶନାନ୍ତେ ସେମାନେ ଗୋପୀବଲ୍ଲଭପୁରରେ ପ୍ରବେଶ କରି ଶ୍ୟାମାନନ୍ଦଙ୍କ ଶିଷ୍ୟ ରସିକାନନ୍ଦଙ୍କ ଅଲୌକିକତା ଶ୍ରବଣ ଓ କିପରି ରସିକାନନ୍ଦ ନିଜ ନିବରକୁ ଦୂରକୁ ହଟାଇ ପାରିଥିଲେ ତା'ର ବୃତ୍ତାନ୍ତ ଶ୍ରବଣ ବର୍ଣ୍ଣିତ ହୋଇଅଛି ।

"ତାହାଙ୍କ ପାଦ ସେବାକାରୀ । ହୃଦୟାନନ୍ଦ ଅଧିକାରୀ ॥
ତାଙ୍କର ଶିଷ୍ୟ ଶ୍ୟାମାନନ୍ଦ । ଯାହାକୁ ପ୍ରସନ୍ନ ଗୋବିନ୍ଦ ॥
ଯେ କୁଞ୍ଜ ମାର୍ଜନ କାଳରେ । ଶ୍ରୀରାଧା ନୂପୁର ପାଇଲେ ॥
ନିତ୍ୟ ସିଦ୍ଧା ଏ ମାଗିନେଇ । ନୂପୁର ଚିହ୍ନ ଭାଲେ ଦେଇ ॥
ଅନୁସେବକ କରିଗଲେ । ମଧୁର ରସ ଭକ୍ତ କଲେ ॥
ସଖାଙ୍କ ଭକ୍ତ କଲେ ତ୍ୟାଗ । ମଧୁରେ ବଢ଼ାଇଲେ ରାଗ ॥
କୃଷ୍ଣର ଆଜ୍ଞା ହେଲା ତାକୁ । ତୁ ବେଗେ ଚଳ ଉତ୍କଳକୁ ॥
ପଥେ ଦୁଷ୍ଟଜୀବଙ୍କ ଭୀତି । ସାଧୁଏ ଗମି ନ ପାରନ୍ତି ॥
ସେ ସ୍ଥାନେ ଭକ୍ତ ପ୍ରବର୍ତ୍ତାଅ । ପଶୁ ମୂରୁଖଙ୍କୁ ବୁଝାଅ ॥
ତେଣୁ ଗୋପୀବଲ୍ଲଭ ପୁରେ । ସେ ବସା କଲେ ସୁବର୍ଣ୍ଣରେ ॥
ଶିଷ୍ଟ କରଣ କୁଳେ ଜନ୍ମ । ରସିକାନନ୍ଦ ତାଙ୍କ ନାମ ।
ତାଙ୍କର ପ୍ରିୟ ଶିଷ୍ୟ ଏହି । ଏହାକୁ ଗାଦି ଗଲେ ଦେଇ ॥
ଏହାଙ୍କ ଗୁଣ ଅକଥନ । ନଦୀ ମାନିଲା ଯା ବଚନ ॥"

ଏହି ରସିକାନନ୍ଦ ଏକଦା ଦାନ୍ତ ଘଷିସାରି ଦାନ୍ତକାଠିକୁ ପୋତି ଦେବାରେ ତହିଁଆର ଦିନ ଏହା ଏକ ଜୀବନ୍ତ ବୃକ୍ଷ ହୋଇ ଯାଇଥିଲା । ଏମାନେ ଉକ୍ତ ବୃକ୍ଷକୁ ଦର୍ଶନ କରିଥିଲେ । ତାଙ୍କର ପୁତ୍ରମାନଙ୍କ ବିଷୟରେ ମଧ୍ୟ କବି ଲେଖିଛନ୍ତି କିପରି ପିତାଙ୍କ ନିର୍ଦ୍ଦିଷ୍ଟ ଏକ କାକୁଡ଼ି ଫଳ ଖାଇ ଥିବାରୁ ପିତା ରୁଷ୍ଟ ହୋଇଥିଲେ । ଫଳତଃ ଉକ୍ତ ପୁତ୍ର ନିଜର ଅଲୌକିକ ସାଧନା ଦ୍ୱାରା ଉକ୍ତ ବୃକ୍ଷରେ ବହୁ କାକୁଡ଼ି ଫଳାଇ ଦାଉଥିଲେ । କିନ୍ତୁ ଏହାଦ୍ୱାରା ପିତା କ୍ରୁଦ୍ଧ ହୋଇ ଅଭିଶାପ ଦେଇ ଉକ୍ତ ପୁତ୍ରର ଜୀବନ ନାଶ କରିଥିଲେ ।

ସେହିପରି ଅନ୍ୟ ଏକ ପୁତ୍ର ଗୃହରୁ କେତେ ଖଣ୍ଡ ଗୁଆ ଖାଇ ଦେଇଥିବା ଯୋଗୁଁ ପିତାଙ୍କ ଦ୍ୱାରା ଭର୍ତ୍ସିତ ହେବାରୁ ପୂର୍ବରୁ ଶ୍ୟାମାନନ୍ଦଙ୍କ ଦ୍ୱାରା ରୋପିତ ବଟବୃକ୍ଷର ଏକ ଶାଖାରୁ ଅନେକ ଗୁଆ ଫଳାଇ ପାରିଥିଲେ । କିନ୍ତୁ ପୁତ୍ରର ଏ ଗର୍ବ ଓ ଭକ୍ତିହୀନତା ଦେଖି ରସିକାନନ୍ଦ ଅଭିଶାପଦ୍ୱାରା ତାକୁ ବିନାଶ କଲେ ।

ଆଉ ଏକ ପୁତ୍ର ମଧ୍ୟ ଦ୍ୱାଦଶ ମହୋତ୍ସବ ଦିନ ବୈଷ୍ଣବମାନଙ୍କୁ ଭୋଜନ ସମୟରେ ଘୃତ ଦେବା ସମୟରେ ହଠାତ୍ କେଶ ଫିଟିଯିବାରୁ ନିଜ ହୃଦୟ ମଧ୍ୟରୁ ଆହୁରି ଦୁଇଟି ହାତ ବାହାରି କରି କେଶ ବାନ୍ଧିବା ସମୟରେ ବୈଷ୍ଣବମାନେ ଦେଖି ଚମତ୍କୃତ ହୋଇ ପିତାଙ୍କ ଆଗରେ କହନ୍ତେ ପିତା କ୍ରୁଦ୍ଧ ହୋଇ ଅଭିଶାପଦ୍ୱାରା ଅନ୍ୟ ପୁତ୍ରମାନଙ୍କ ପରି ନାଶ କରିଥିଲେ । ତେଣୁ କବି ଏହି ପ୍ରସଙ୍ଗରେ କହିବାକୁ ଯାଇ ଭଗବତର ଭକ୍ତିତତ୍ତ୍ୱ ମଧୁର ରସର ଅବତାରଣା କରିଅଛନ୍ତି ।

"ଗଉର ଚନ୍ଦ୍ର ଶ୍ରୀଚରଣ । ଆମର ତହିଁରେ ଶରଣ ॥
ମଧୁର ରସର ଆଶ୍ରୟ । ଐଶ୍ୱର୍ଯ୍ୟ ଦେଖି ପାଇ ଭୟ ॥
ସେବ୍ୟ ସେବକ ସମ୍ବନ୍ଧରେ । ବଞ୍ଚିତ ସେ ରାଧା ପଦରେ ॥
ଜ୍ଞାନ କର୍ମର ଚେଷ୍ଟାମାନ । ସ୍ୱେ ପୁତ୍ରେ ଦେଖାନ୍ତି ନିଦାନ ॥
ଇନ୍ଦ୍ରଜାଲିକ ଚରିମଣି । ସିଅର କୋପ କଲେ ଜାଣି ॥
ଭକ୍ତର ଚିହ୍ନ ଜାଣି ଏହି । ଗୋବିନ୍ଦ ନାମ ଶୁଣି ଗାଇ ॥
ଅଶ୍ରୁ ଗଳଇ ନୟନରେ । ବାଇଙ୍କ ପ୍ରାୟେ ନୃତ୍ୟ କରେ ॥

ଲୋକ ବେଭାର ଭସ୍ମ ଗୁଡ଼ । ଆନନ୍ଦେ ପ୍ରେମ ଜଳେ ବୁଡ଼ ॥
ରସ ଶଡୋଇ କାନ୍ଦେ ହସେ । କ୍ଷଣେ ଗଡ଼ଇ କ୍ଷଣେ ବସେ ॥
କ୍ଷଣକେ କରେ ଗରଜନ । ଧ୍ୟାନ ଗଳଇ ଅଚେତନ ॥
ଧାମେ ବାହ୍ୱଳ ଥେ ହୁଡ଼ । ବିନମ୍ରେ ସର୍ବପଦେ ପଡ଼ ॥
କ୍ଷମା ସଦୟ ସର୍ବଭୂତେ । ନିତ୍ୟ ବିହରେ କୂର୍ମ ମତେ ॥
କିଛୁ ଐଶ୍ୱର୍ଯ୍ୟ ପରକାଶ । ହେଲେ ତା କରେ ଅପ୍ରକାଶ ॥

× × ×

ଏ ଆମ୍ଭ କୁଳେ ହୋଇ ଜାତ । ଜ୍ଞାନ ଗୁମାନେ ଗ୍ରସ୍ତ ଚିତ୍ତ ॥

× × ×

ଏମନ୍ତେ ବନ୍ଧୁ ପୁତ୍ର ମଲେ । କନିଷ୍ଠେ ଗାଦିରେ ବସିଲେ ॥
ସେ ସର୍ବଗୁଣ ବିଚକ୍ଷଣ । କେ କହୁ ତାହାଙ୍କ ଲକ୍ଷଣ ॥
ଯେ ଧର ଶିଷ୍ୟ ସାଲବେଗ । ଜଗତେ ଜନ୍ମାଇଲେ ରାଗ ॥
କେବଳ ଜନନୀ ବ୍ରାହ୍ମଣୀ । ପିତା ମୁସଲମାନ ଜାଣି ॥

× × ×

ବ୍ରହ୍ମାଣ୍ଡେ ପୂରିଲା ଯା ଗୀତ । କବି ଭଗତ ଶୁଦ୍ଧ ଚିତ୍ତ ॥
ଅନନ୍ତ ରସ ଲୀଳା କରେ । ଯା ନାମ ବିଦିତ ସଂସାରେ ॥
ନବାବ ଅଭକ୍ଷ ଯେ ଦେଲା । ଦେଖନ୍ତେ ପ୍ରସାଦ ହୋଇଲା ॥

× × ×

ଶୁଣ ସୁଜନେ ବିଜ୍ଞ ଜନେ । ଆମ୍ଭେ ଯେ ଗଲୁ ପାଞ୍ଚ ଜଣେ ॥
ଭଗବାନ ଦାସ ଯା ନାମ । ସେ ବାହୁଡ଼ିଲେ ନିଜାଶ୍ରମ ॥

× × ×

କହେ ସାଧୁ ଚରଣ ଦାସ । ଏ ଅଧା ହେଲା କ୍ରମେ ଶେଷ ॥

## ଚତୁର୍ଥ ଅଧ୍ୟାୟ—

ମୁଁ ଯେ ବ୍ରାହ୍ମଣ କୁଳେ ଜାତ । ନାହିଁ ଗୋବିନ୍ଦ ପାଦେ ଚିତ୍ତ ॥
କହୁଛି ଏମନ୍ତ ଜାଣିମ । ପୁଣିଓ ତା ମୋ ପିତା ନାମ ॥

× × ×

ନୂଆଗଡ଼ ନାମ ରାଜ୍ୟରେ । ଭିକାରିପଡ଼ା ଶାସନରେ ॥
ମୋହର ଅଟଇ ନିବାସ । କହେ ସାଧୁଚରଣ ଦାସ ॥

**ଷଷ୍ଠ ଅଧ୍ୟାୟ—**

"ସୁଜନେ ଏହି ଦୟା କର । ସେବିବି ଶ୍ରୀରାଧା ପୟର ॥
ଏ ଦେହ ରକତ ମାଉଁସ । ଏଥିରେ ନୋହୁ ମୋ ବିଶ୍ୱାସ ॥

× × ×

ଲଳିତ କିଶୋର ବଦନ । ଭଳି ନ ଝୁରେ ଯା ନୟନ ॥
ବନ ପଶୁଏ ନେଇ ତାର । ସେ ନାମ ଧରିବେ ପାମର ॥
ବିଷ୍ଣୁର ଗୁଣଗଣ ଶୁଣି । ଯେ ଦ୍ରବ ନୋହେ ଏହିକ୍ଷଣି ॥
ଅକର୍ମ ଶିଳା ଯେ ଯଥାର୍ଥେ । ମୋ ଇଷ୍ଟ ଥାଉ ତାର ସାଥେ ॥
ଅନ୍ୟ ଦେବତା ଗୁଣ ଗାଇ । ଯେ କୃଷ୍ଣ ବୈଷ୍ଣବ ନିନ୍ଦଇ ॥
ତା ଶିରେ ଚଣ୍ଡାଳ ଚରଣ । ତାଙ୍କୁ ନ କର ସମ୍ଭାଷଣ ॥
ଯେ କୃଷ୍ଣ ଚରଣେ ଆଶ୍ରିତ । ସେ ପାଦେ କୋଟି ଦଣ୍ଡବତ ॥

**(୭) ବ୍ରଜ ଲୀଳାମୃତ ସମୁଦ୍ର:—**

ଏହି କାବ୍ୟଟି କବିଙ୍କର ଏକ ମହାନ ସୃଷ୍ଟି । ମୁଖ୍ୟତଃ ଏହା ଏକ ଅନୁବାଦ ଗ୍ରନ୍ଥ ହେଲେହେଁ ଏଥିରେ କବି ସଦାନନ୍ଦଙ୍କର ଦୃଢ଼ଭକ୍ତି ଓ ଅଗାଧ ପାଣ୍ଡିତ୍ୟର ସୂଚନା ମିଳେ । ଏହି ଅମୂଲ୍ୟ ଓ ଦୁଷ୍ପ୍ରାପ୍ୟ କାବ୍ୟର ପାଣ୍ଡୁଲିପିଟି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ନିକଟରୁ ମିଳିଥିଲି । ଏହା ବ୍ୟତୀତ ଏହାର ଏକ ତାଳପତ୍ର ପୋଥି ବାଣୀବିହାରସ୍ଥ ପୋଥି ବିଭାଗରେ ମଧ୍ୟ ଅଛି✻ । ଏହି ତାଳପତ୍ର ପୋଥି ଓ ପାଣ୍ଡୁଲିପି ମଧ୍ୟରେ ବସ୍ତୁତଃ କୌଣସି ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । ଏହା ୬୭ ଛାନ୍ଦ ବିଶିଷ୍ଟ ଏକ ଦୀର୍ଘ କାବ୍ୟ । ପ୍ରତ୍ୟେକ ଛାନ୍ଦର ପଦଗୁଡ଼ିକ ଅନ୍ୟାନ୍ୟ କାବ୍ୟର ପଦମାନଙ୍କଠାରୁ ଦୀର୍ଘ । 'ମୋହନଲତା' କାବ୍ୟରେ ମଧ୍ୟ କବି ଏହି କାବ୍ୟ ବିଷୟରେ ଉଲ୍ଲେଖ କରିଅଛନ୍ତି ।

---

✻ OL. 166 ବାଣୀବିହାର ଭୁବନେଶ୍ୱର, No of Folios 240

"ଶ୍ରୀ ଶ୍ରୀ ବିଦଗ୍ଧମାଧବ ନାଟକ ସଂସ୍କୃତ ।
ଶ୍ରୀ ଶ୍ରୀ ରୂପଗୋସ୍ୱାମୀଙ୍କ କୃତ ସେ ବିଦିତ ॥ ୧୬ ॥

ପୟାରେ ତାହା ମୁଁ ଛନ୍ଦ ବନ୍ଧରେ କହିଲି ।
ଶ୍ରୀ ବ୍ରଜଲୀଳାମୃତ ସମୁଦ୍ର ନାମ ଦେଲି ॥ ୧୭ ॥

ଛପନ ଛାନ୍ଦେ କହିଲି ମୁଁ ସେ କବି ନୋହିଁ ।
ମାତ୍ରକ ଉତ୍କଳ ଲୋକେ ବୁଝିବାର ପାଇଁ "॥ ୧୮ ॥

(ମୋହନଲତା-୪୬ ଛାନ୍ଦ)

ଚୈତନ୍ୟପନ୍ଥୀ ଷଟଗୋସ୍ୱାମୀଙ୍କ ମଧ୍ୟରୁ ବିଶିଷ୍ଟ ପଣ୍ଡିତ ତଥା ସାଧକ ଶ୍ରୀ ରୂପଗୋସ୍ୱାମୀ ଚୈତନ୍ୟଙ୍କ ସମସାମୟିକ ସଖା ଥିଲେ । ରାଧାକୃଷ୍ଣଙ୍କ ମଧୁର ବ୍ରଜଲୀଳାକୁ ଆଶ୍ରୟ କରି ସେ ସଂସ୍କୃତରେ ବିଦଗ୍ଧ-ମାଧବ ନାଟକ ରଚନା କରିଥିଲେ । ଏହି ଗ୍ରନ୍ଥଟି ସଦାନନ୍ଦଙ୍କ ସମୟର ପ୍ରାୟ ଦୁଇଶତ ବର୍ଷ ପୂର୍ବରୁ ରଚିତ ହୋଇଥିଲା । ବଙ୍ଗୀୟ ବୈଷ୍ଣବ କବି ଶ୍ରୀ ଯଦୁନନ୍ଦନ ଦାସ ଛନ୍ଦ ବନ୍ଧରେ ଏହାର ବଙ୍ଗଳା ଅନୁବାଦ କରିଥିଲେ । ଉକ୍ତ ବଙ୍ଗଳା ଅନୁବାଦକୁ ଅବଲମ୍ବନ କରି କବି ଛନ୍ଦବନ୍ଧରେ 'ବ୍ରଜଲୀଳାମୃତ ସମୁଦ୍ର' ରଚନା କରିଅଛନ୍ତି ।

"ବିଦ୍ଧ ନୋହୁ ତୁମ୍ଭର କୃପାରେ ଏ ଗ୍ରନ୍ଥରେ ।
ବାର ବାର ପ୍ରଣମଇଁ ଶ୍ରୀରୂପ ପୟରେ ॥ ୫୧ ॥

ଗୋସାଇଁ ଗ୍ରନ୍ଥ ପୟାରକର୍ତ୍ତା ଯେ ଆପଣ ।
ହେ ଯଦୁନନ୍ଦନ ବନ୍ଦୁ ତୁମ୍ଭ ଶ୍ରୀଚରଣ" ॥ ୫୨ ॥

(ବ୍ରଜଲୀଳାମୃତ ସମୁଦ୍ର ୨ୟ ଛାନ୍ଦ)

"ଶ୍ରୀରୂପ ଗୋସାଇଁ ମୁଖରୁ ଉଦ୍‌ଭବ ।
ପ୍ରଥମ ଜନ୍ମେ ଏ ବିଦଗ୍ଧ ମାଧବ ॥ ୩୭ ॥

ପ୍ରାକୃତେ ବଙ୍ଗଳା ଭାଷାରେ ଏ ହିଁ ଦ୍ୱିତୀୟେ ।
ରାଧାକୃଷ୍ଣ ଲୀଳା କଦମ୍ବ ଏ ॥ ୩୮ ॥

ଉତ୍କଳୀ ଛନ୍ଦବନ୍ଧ ତୃତୀୟ ଜନ୍ମେ ।
ବ୍ରଜଲୀଳାମୃତ ସମୁଦ୍ର ଏ ତେଜ୍ଞେ" ॥ ୩୯ ॥

(ବ୍ରଜଲୀଳାମୃତ ସମୁଦ୍ର-୧୫ଶ ଛାନ୍ଦ)

କବି ଏହି ମହାନ୍ କାବ୍ୟର ଅନୁବାଦ ଅତି ସ୍ୱଳ୍ପ ସମୟ ମଧ୍ୟରେ ସମ୍ପୂର୍ଣ୍ଣ କରିଥିବା ବିଷୟ ବ୍ୟକ୍ତ କରି କହିଅଛନ୍ତି ;

"ଶ୍ରୀରୂପଗୋସ୍ୱାମୀ ପାଦ ପଙ୍କଜେ ଶରଣ ।
କରିଣ ପ୍ରକାଶିଲି ଦାସ ଏ ସାଧୁ ଚରଣ ॥
ମାର୍ଗଶୀର କୃଷ୍ଣପକ୍ଷ ଦ୍ୱିତୀୟାରେ ଜନ୍ମ ।
ମାଘ କୃଷ୍ଣ ନବମୀରେ ହୋଇଲା ସମ୍ପୂର୍ଣ୍ଣ ॥
ଚତୁର୍ଦ୍ଦଶୀ ଅମାବାସ୍ୟାହି ଏ ତିନି ଦିନ ।
ଲେଖଇ ନାହିଁ ନିଷେଧ ଏ ପୂର୍ବ ବଚନ ॥
ମାସକେ ସମ୍ପୂର୍ଣ୍ଣ କଲି ଉଦ୍‌ବେଗ ମନରେ ।
ଦୋଷ ଥିବ ଯେବେ ଏ ଯେନିବ ବଞ୍ଚନରେ ॥
ଏ ବ୍ରଜ ଲୀଳାମୃତ ହୋଇଲା ସମାପତି ।
ଛପନ ଛାନ୍ଦେ ବିଦଗ୍ଧମାଧବ ଚରିତ ॥
ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଅତି ଦୀନ ।
କୃପା କର ରାଧାକୃଷ୍ଣ ଭଗତ ସଜ୍ଜନ ॥"

## (୬) ପ୍ରେମଚିନ୍ତାମଣି :—

ମାତ୍ର ୩୪ ପଦ ବିଶିଷ୍ଟ ଏହି କ୍ଷୁଦ୍ର ରଚନାଟି ଓଡ଼ିଶା ମ୍ୟୁଜିୟମ ପୋଥି ବିଭାଗରେ ସଂରକ୍ଷିତ । ଏହା କବିଙ୍କ ପ୍ରଦତ୍ତ ଗ୍ରନ୍ଥସୂଚୀ ଅନୁସାରେ ପଞ୍ଚଦଶ ରଚନା । କବି 'ମୋହନଲତା' ରେ ଉଲ୍ଲେଖ କରି ଲେଖିଛନ୍ତି—

ପ୍ରେମ ଚିନ୍ତାମଣି ନାମେ ବଙ୍ଗଦେଶୀ ଭାଷେ ।
ବିନ୍ଦୁ କରିଣ କଣିକା ଆଦି ଅର୍ଥ ଯେ ସେ ॥ ୨୦ ॥

ମୁଖ୍ୟତଃ ଏହା ରାଧାକୃଷ୍ଣଙ୍କର ଲୀଳା ସମ୍ବଳିତ ଏକ ଚଉତିଶା ଶ୍ରୀରାଧା ସଖୀମାନଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ପ୍ରେମ ଜନିତ ସୁଖ ଦୁଃଖର ଭାବ ଗୁଡ଼ିକ ବର୍ଣ୍ଣନା କରିଅଛନ୍ତି ।

"ଟଳିବକି ବାଣୀ ମୋର ରେ, ଟମାକି ନିଶାଣ ବାଜୁ ତ୍ରିଭୁବନ
ରାଧା ହେଲେ ଶ୍ରୀକୃଷ୍ଣର ରେ ସଖୀ" ॥ ୧୧ ॥ (୧ମ ଛାନ୍ଦ)

ଶେଷରେ କବି

"ଖଞ୍ଜି ପ୍ରେମ ଚନ୍ଦ୍ରାମଣି ଗୀତେ କହେ କବିସୂର୍ଯ୍ୟ ବ୍ରହ୍ମା ଦାସ ରେ"

କହି ଛାନ୍ଦର ସମାପ୍ତି କରିଅଛନ୍ତି ।

(୮) **ବିଶ୍ୱମ୍ଭର ବିହାର :—**

୩୨ ଛାନ୍ଦ ବିଶିଷ୍ଟ ଏହା ଏକ ଅସମ୍ପୂର୍ଣ୍ଣ କାବ୍ୟ । କାବ୍ୟର ଶେଷ ଛାନ୍ଦଟି ସମ୍ପୂର୍ଣ୍ଣ ହୋଇପାରି ନାହିଁ । ଓଡ଼ିଶା ମ୍ୟୁଜିୟମସ୍ଥ ପୋଥିବିଭାଗରୁ ମିଳିଥିବା ଏକମାତ୍ର ତାଳପତ୍ର ପୋଥିଟି ❋ ଅତ୍ୟନ୍ତ ଜରାଜୀର୍ଣ୍ଣ ଓ ଏହାର ଅନେକ ପତ୍ର ନଷ୍ଟ ହୋଇଯିବାରୁ ନକଲ ସମୟରେ ବହୁ ପଦ ଅସମ୍ପୂର୍ଣ୍ଣ ରହିଯାଇଅଛି ।

ଏହି କାବ୍ୟ ସମ୍ବନ୍ଧରେ କବି ସ୍ୱକୃତ 'ମୋହନଲତା' କାବ୍ୟର ୪୭ ଛାନ୍ଦରେ ମଧ୍ୟ ଉଲ୍ଲେଖ କରିଛନ୍ତି ।

"ଶ୍ରୀ ବିଶ୍ୱମ୍ଭର ବିହାର ବିକାର ନିୟମ ।
ପ୍ରୀତି ଚନ୍ଦ୍ରାମଣି ବହୁ ମିଳନ ଜାଣିମ ॥ ୩୦ ॥
ଏ ଦୁଇଗ୍ରନ୍ଥ ସମ୍ପୂର୍ଣ୍ଣ ହୋଇ ନ ନାହାନ୍ତି ।
ବିଘ୍ନ ନାଶ ବିଘ୍ନରାଜ ହେଉ ଏ ସମାପ୍ତି ॥ ୩୧ ॥

ଏହି କାବ୍ୟଟିର ପ୍ରତି ପଦର ଆଦ୍ୟ ଅକ୍ଷର 'ବି' ରେ ଆରମ୍ଭ ହୋଇଅଛି ।

ଏହି କାବ୍ୟଟିରେ ଶ୍ରୀ ଚୈତନ୍ୟଦେବଙ୍କ ଲୀଳା ବର୍ଣ୍ଣିତ ହୋଇଛି ।

"ବର୍ଣ୍ଣିବି ଗୌରଚନ୍ଦ୍ର ଲୀଳା । ବିଶ୍ୱ ସାଗରକୁ ସେ ଭେଳା" ॥ ୨ ॥

କାବ୍ୟଟିର ପ୍ରଥମ ଛାନ୍ଦରେ ଶ୍ରୀଚୈତନ୍ୟ ଦେବ ଓ ତାଙ୍କ ଶିଷ୍ୟ ମାନଙ୍କର ବିଷୟ ବର୍ଣ୍ଣିତ ହୋଇଅଛି ।

"ବୋଲେ ଶିଷ୍ୟ ପଣ୍ଡିତ ଉଚିତ ବ୍ୟାଖ୍ୟା କର ।
ବଦେ ପ୍ରଭୁ ପ୍ରତିକ୍ଷଣେ ଶ୍ରୀକୃଷ୍ଣ ସୁମର ହେ" ॥

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଜନ୍ମ ଓ ଆବିର୍ଭାବର ଉଦ୍ଦେଶ୍ୟ ସମ୍ପର୍କରେ କବି ଲେଖିଛନ୍ତି ।

---

❋ Cat No. 272 ଓଡ଼ିଶା ମ୍ୟୁଜିୟମ

ବ୍ରଜବନ୍ଧୁର ଅବତାର । ବୋଲାଇ ନାମ ବିଶ୍ୱମ୍ଭର ॥ ୪୫ ॥

ବିଜ୍ଞ ମାତାମହ ଚକ୍ରବର୍ତ୍ତୀ ନୀଳାମ୍ବର ।

ବାପ ଯାର ଜଗନ୍ନାଥ ମିଶ୍ର ପୁରନ୍ଦର ହେ ॥ ୫୭ ॥

ବୈଦିକକୁଳେ ମୂର୍ଦ୍ଧ କେହିି ନାହାନ୍ତି ତୁମ୍ଭର ।

ବିଧିରେ ପରମ ଯୋଗ୍ୟ ତୁମ୍ଭେ ସେ ଆମ୍ଭର ॥ ୫୮ ॥

ଦ୍ୱିତୀୟ ଛାନ୍ଦରେ କବି ଶ୍ରୀଚୈତନ୍ୟଙ୍କର ଅବତାର ସମ୍ପର୍କରେ ସୂଚନା ଦେଇ ପଦ୍ମପୁରାଣ, ମତ୍ସ୍ୟ ପୁରାଣ, ନୃସିଂହ ପୁରାଣ, ରାଧାତନ୍ତ୍ର, ସଂସ୍କୃତମୂଳ ଭାଗବତ, ଗୀତା ଓ ବ୍ରହ୍ମବୈବର୍ତ୍ତ ପୁରାଣାଦିରୁ କେତେକ ବିଶେଷ ଶ୍ଳୋକର ଅନୁବାଦ ଛନ୍ଦବନ୍ଧରେ ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ।

ଚୈତନ୍ୟଙ୍କ ଯୁଗାବତାର ସମ୍ବନ୍ଧେ କବି ଲେଖିଛନ୍ତି ;

"ବସୁଦେବ ଦେବକୀ ସୁତ ଯେ ଭଗବାନ ।
ବସୁଧାରେ ଅବଶ୍ୟ ହୋଇବେ ଅବତୀର୍ଣ୍ଣ ॥
କଳି ଧ୍ୱଂସି ନାମ ହେବ ଶ୍ରୀକୃଷ୍ଣ ଚୈତନ୍ୟ ।
ବଡ଼ ଉଚ୍ଚେ ଡାକିବେ ସ୍ୱନାମ ଘନ ଘନ" ॥ ୫୭ ॥

ଚତୁର୍ଥ ଛାନ୍ଦରେ କବି ଶ୍ରୀଚୈତନ୍ୟଙ୍କ ପ୍ରିୟସଖା ଗଦାଧର ପଣ୍ଡିତଙ୍କୁ ଶ୍ରୀରାଧାଙ୍କର ଅବତାର ରୂପେ ପ୍ରତିପାଦନ କରିବାକୁ ଯାଇ ରାଧାତନ୍ତ୍ର, ବ୍ରହ୍ମ-ସଂହିତାରୁ ନାନା ଉଦାହରଣ ଦେଇଅଛନ୍ତି । ତଥାହି 'ରାଧାତନ୍ତ୍ରେ'—

ବୃନ୍ଦାବନେଶ୍ୱରୀ ରାଧା ପ୍ରେମ ଭକ୍ତି ପ୍ରଦାୟିନୀ ।
କଳୌ ଗୌରାଙ୍ଗ ଦଇତ ଶ୍ରୀଗଦାଧର ପଣ୍ଡିତ ॥

ବ୍ରହ୍ମସଂହିତାରେ "ଧ୍ରୁବେ ବିନୋଦିନୀ ରାଧା ପୂର୍ବେ
ବନ୍ଦେ ଗଦାଧର ପଣ୍ଡିତ ଗଉର ବିଗ୍ରହ କଳିରେ ହେବେ" ॥ ୪ ॥

"ବିକାଶି ସଖୀ ରାଧିକା, ବେନି ଏକ ତନୁ ଏକା
ବିଦିତ ଶ୍ରୀ ଗଦାଧର ନାମ ହେଲା, ଏଣୁ ପୁଣି ସର୍ବାଧିକା" ॥ ୯ ॥

ବିନା ଗଦାଧର ଗଉର ବଂଶମତେ ଭଜିବାର
ବ୍ୟର୍ଥ ଉପାସନା ପ୍ରେମ ଭକ୍ତି କେବେ ନ ପାଏ ସେ ହୀନ ନର ॥ ୧୧ ॥

ସପ୍ତମ ଛାନ୍ଦରେ ଶ୍ରୀଚୈତନ୍ୟଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣନା କରି କବି ଲେଖିଛନ୍ତି :

"ବିଶୁଦ୍ଧ ମନରେ ଶୁଣ ବ୍ରଜ ଉପାସକଗଣ
ବିପ୍ର ଜଗନ୍ନାଥ ମିଶ୍ର ଶଚୀ ସଂଯୋଗେ ।
ବିରଞ୍ଚି ରଚିତ ଯେହ୍ନେ ବିଶ୍ୱ କେସନ ଟେସନେ
ବିଦିତ ହେଲେ ଗର୍ଭରେ ଉତ୍ତମ ଯୋଗେ ।
ବିହ୍ବଦନେ ଲୋକ ଗୋଚରି, ବାର୍ତ୍ତାପାଇ ଆଶ୍ଚର୍ଯ୍ୟ ଆନନ୍ଦ ଅନ୍ତରି" ॥ ୧ ॥

ଅଷ୍ଟମ, ନବମ, ଦଶମ ଓ ଏକାଦଶ ଛାନ୍ଦାଦିରେ ଶ୍ରୀଚୈତନ୍ୟଦେବଙ୍କର ବାଲ୍ୟ ଓ କୈଶୋର ଲୀଳାମାନ ବର୍ଣ୍ଣନା କରାଯାଇଅଛି । ଦ୍ୱାଦଶ ଛାନ୍ଦଠାରୁ ପଞ୍ଚଦଶ ଛାନ୍ଦ ମଧ୍ୟରେ ଯଥାକ୍ରମେ ଶ୍ରୀଚୈତନ୍ୟଙ୍କର ପୌଗଣ୍ଡଲୀଳା ଓ ବିଷ୍ଣୁପ୍ରିୟାଙ୍କ ସହ ବିବାହ ବର୍ଣ୍ଣନା କରାଯାଇ ଅଛି । ପରବର୍ତ୍ତୀ ଛାନ୍ଦମାନଙ୍କରେ ଗୌର ଗଦାଧରଙ୍କ ଲୀଳାମାନ ସ୍ଥାନ ପାଇଅଛି ।

ଏକବିଂଶ ଛାନ୍ଦରେ ଚୈତନ୍ୟଦେବଙ୍କ ସନ୍ନ୍ୟାସ ଗ୍ରହଣ ହେତୁ ମାତା ଶଚୀଦେବୀ ଓ ସ୍ତ୍ରୀ ବିଷ୍ଣୁପ୍ରିୟାଙ୍କର ମାନସିକ ବ୍ୟଥା ବର୍ଣ୍ଣନା କରାଯାଇଅଛି । ଏହାକୁ କବି ଅତ୍ୟନ୍ତ କରୁଣଭାବରେ ବର୍ଣ୍ଣନା କରିଅଛନ୍ତି ।

"ବହିଗଲେ କାନ୍ତ ସୁତଗଣଙ୍କୁ ମୋରତ ।
ବାକିଅଛି ଅବଶେଷ ଅନାଥିନୀ ସୁତ ॥
ବରଦିଅ ରମାବର; ବିଶ୍ୱମ୍ଭର ଗୃହେ ମୋର ରହୁ ହୋଇ ସ୍ଥିର ॥ ୨ ॥
ବିଷ୍ଣୁପ୍ରିୟାଙ୍କୁ ବସାନ୍ତି ସୁବେଶରେ ପାଶେ ।
ବାରେ ଦୃଷ୍ଟିପାତ ପ୍ରଭୁ ନ କରନ୍ତି ଲେଶେ ॥
ବଡ଼ ଉଚ୍ଚେ ଶ୍ଳୋକ ପଢି
ବନ୍ଧୁହେ, କୃଷ୍ଣ ହେ ବୋଲି ଛାଡ଼େ ଘର୍ଘ ରଡ଼ି" ॥ ୩ ॥

ଶେଷ ଛାନ୍ଦରେ କବି ଗୌରଚନ୍ଦ୍ରଙ୍କୁ କୃଷ୍ଣଚନ୍ଦ୍ରରୂପେ ପ୍ରତିପାଦିତ କରି ଲେଖିଛନ୍ତି :

"ବହୁ ଶାସ୍ତ୍ର ପୁରାଣରେ ସତ୍ୟ କୃଷ୍ଣ ନାମ
ବିଶ୍ୱାସରେ ଶ୍ରବଣ କୀର୍ତ୍ତନ ଗୁଣଗ୍ରାମ ଯେ ॥ ୩ ॥
ବିଦିତ ଯେ ଶାସ୍ତ୍ରେ କୃଷ୍ଣନାମ ଶାସ୍ତ୍ର କହି
ବିନା କୃଷ୍ଣ ସମ୍ବନ୍ଧ ପାଷାଣ୍ଡ ଶାସ୍ତ୍ର ସେହି ଯେ" ॥ ୪ ॥

ତଥାପି ଜୈମିନୀ ଭାରତେ;

"ଯସ୍ମିନ୍ ନ ଶାସ୍ତ୍ରେ ପୁରାଣେ ବା ହରିଭକ୍ତି ନ ଦୃଶ୍ୟତେ ।
ଶ୍ରୋତବ୍ୟଂ ନୈବତତ୍ ଶାସ୍ତ୍ରଂ ଯଦି ବ୍ରହ୍ମା ସ୍ୱୟଂ ବଦେତ" ॥

ଏହା କବିଙ୍କର ବିଂଶତିତମ ରଚନା ଓ କବିଙ୍କ ଜୀବନ କାଳର ଶେଷ ପାଦରେ ରଚିତ ହୋଇଥିବା ଅନୁମାନ । କାବ୍ୟଟି ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ବ୍ରଜପନ୍ଥୀ ବୈଷ୍ଣବମାନଂକ ନିମନ୍ତେ ଏହା ଏକ ଅମୂଲ୍ୟ ଗ୍ରନ୍ଥ ।

## (୯) ପ୍ରୀତିଚିନ୍ତାମଣି :—*

'ମୋହନ କଳ୍ପଲତା' କାବ୍ୟରେ ଦେଇଥିବା କାବ୍ୟ ତାଲିକାରେ ଏହି କାବ୍ୟଟିକୁ କବି ଅସମ୍ପୂର୍ଣ୍ଣ ରହିଥିବା ଉଲ୍ଲେଖ କରିଅଛନ୍ତି । ଏହା ଏକ ମିଶ୍ରିତ ରଚନା । ଅର୍ଥାତ୍ ସମୁଦାୟ ତିନିଗୋଟି ଛାନ୍ଦ ସମ୍ବଳିତ ଏହି ରଚନାରେ ପ୍ରଥମ ଦୁଇଟି ଛାନ୍ଦ କବି ଅଭିମନ୍ୟୁ ସାମନ୍ତସିଂହାର ରଚିତ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ଅନ୍ତର୍ଭୁକ୍ତ ଓ ଅବଶିଷ୍ଟ ଛାନ୍ଦଟି ସଦାନନ୍ଦଙ୍କ ରଚିତ 'ଯୁଗଳ ରସାମୃତ ଲହରୀ' ର ୨୫ଶ ଛାନ୍ଦ ଅନ୍ତର୍ଭୁକ୍ତ । ତେଣୁ ଏହି ତିନିଗୋଟି ଛାନ୍ଦର ସମିଶ୍ରଣରେ ପ୍ରୀତି ଚିନ୍ତାମଣିର ସୃଷ୍ଟି ।

"ପ୍ରୀତି ଚିନ୍ତାମଣି ବିହୁ ମିଳନ ଜାଣିମ
·········ଗ୍ରନ୍ଥ ସମାପ୍ତି ହୋଇନି ନାହାନ୍ତି
ବିଘ୍ନନାଶ ବିଘ୍ନରାଜ ହେଉ ଏ ସମାପ୍ତି" ॥ (ମୋହନଲତା)

**ପ୍ରଥମ ଛାନ୍ଦ—**

"ଧୀର ଚନ୍ଦ୍ର ହୃଦ ପଦ୍ମ ମିହିର । ରସିକାନନ୍ଦ ସିନ୍ଧୁ କଳାକାର ॥
ଗ୍ରାହକ ପ୍ରେମ ବଣିଜ ପସରା । ପ୍ରମୋକ୍ଷ କୈବଲ୍ୟ ଭଣ୍ଡାର ପରା ॥
ଏ ଛାନ୍ଦକୁ ଭାଳ । ପ୍ରେମେ ବିଯୋଗୀ ଯୋଗୀଜନ ଥାଳ" ॥ ୧ ॥

× × ×

* Cat No. OL-862 (E) ଓଡ଼ିଶା ମ୍ୟୁଜିୟମ୍, ଭୁବନେଶ୍ୱର

## ଦ୍ୱିତୀୟ ଛାନ୍ଦ—

"ଧୀର ଚନ୍ଦ୍ର ହୃଦ ପଦ୍ମ ମିହିର । ରସିକ ରସ ରତନ ଭଣ୍ଡାର ॥
ଗ୍ରାହକ ପ୍ରେମ ବଣିଜ ପସରା । କାମୀ କାମନା ଚନ୍ତାମଣି ପରା ॥
ଏ ଛାନ୍ଦ ଗାରିମା । ପ୍ରୀତି ଆନନ୍ଦ ସିନ୍ଧୁକୁ ଚନ୍ଦ୍ରମା ॥ ୧ ॥

ନ ଲଭିବାରୁ ଗୋବିନ୍ଦ ପୀରତି । ଅଧୀରା ଧୀରା ରତନ ଆରତି ॥
କହନ୍ତି ଧରି ବିଶାଖିକା ହସ୍ତ । କହ ପୀରତି କି ଜାତି ପଦାର୍ଥ ॥
କାହୁଁ ଏ ଅଇଲା । କେଉଁ ଦେଇବ ଏହା ଭିଆଇଲା ॥ ୨ ॥

× × ×

## ତୃତୀୟ ଛାନ୍ଦ—

ଏହି ଛାନ୍ଦଟି ଯୁଗଳରସାମୃତ ଲହରୀର ପଞ୍ଚବିଂଶ ଛାନ୍ଦ ଅନ୍ତର୍ଗତ । ରାଧାଙ୍କର ସ୍ୱପ୍ନବିଳାସର ବିଷୟବସ୍ତୁ ।

## (୧୦) ସଙ୍ଗୀତ ସଦାନନ୍ଦ :—*

ଦଶଗୋଟି ଛାନ୍ଦ ବିଶିଷ୍ଟ ଏହି ପାଣ୍ଡୁଲିପିଟି ଭୁବନେଶ୍ୱର ବାଣୀ-ବିହାରସ୍ଥ ପାଠାଗାରର ପୋଥିବିଭାଗରେ ସଂରକ୍ଷିତ । ଏହି ଗ୍ରନ୍ଥ ସମ୍ପର୍କରେ କବି ସ୍ୱରଚିତ 'ମୋହନଲତା'ର ୪୭ ଛାନ୍ଦରେ ଉଲ୍ଲେଖ କରିଅଛନ୍ତି ।

ବହୁତ ଗ୍ରନ୍ଥରୁ ଆଣି ଚୋଳାକରି ଧୀରେ ।
ସଙ୍ଗୀତ ସଦାନନ୍ଦ କହିଲି ଯେ ଛାନ୍ଦରେ ॥ ୩୨ ॥
ଗୀତ ବାଦ୍ୟ ତାଳ ନୃତ୍ୟ ଇତ୍ୟାଦି ଲକ୍ଷଣ ।
ଦଶ ଛାନ୍ଦରେ ବର୍ଣ୍ଣିଲି ପୁରାଣ ପ୍ରମାଣ ॥ ୩୩ ॥

ଏହି ଗ୍ରନ୍ଥଟି କବିଙ୍କ ଦ୍ୱାବିଂଶତିମ ରଚନା । ପୂର୍ବୋକ୍ତ କାବ୍ୟ-ମାନଙ୍କ ଆଲୋଚନାରୁ ପାଠକମାନଙ୍କ ମନରେ ସଦାନନ୍ଦ ଯେ କେବଳ ଜଣେ ସୁକବି ଏହି ଧାରଣା ସ୍ପଷ୍ଟ ଜାତ ହେବ, କିନ୍ତୁ 'ସଙ୍ଗୀତ ସଦାନନ୍ଦ' ରଚନାଟି ପାଠ କଲେ କବି ଯେ ବହୁମୁଖୀ ପ୍ରତିଭାର ଅଧିକାରୀ ତାହା ସ୍ପଷ୍ଟ ପ୍ରତୀୟମାନ

---

* Cat No cy 331 No of Pages-46, ବାଣୀବିହାର ପୋଥି ବିଭାଗ

ହୁଏ । ସଙ୍ଗୀତ ଶାସ୍ତ୍ରରେ ଯେ କବିଙ୍କର ଅସାଧାରଣ ପାରଦର୍ଶିତା ଥିଲା, ତାହା ଉକ୍ତ ଗ୍ରନ୍ଥ ପାଠରୁ ସହଜରେ ଅବଧାରଣା କରିଯାଏ ।

ରଚନାକାଳ ଦୃଷ୍ଟିରୁ ଏହି ରଚନାର ସମୟ ନିରୂପଣ କରିବା କଷ୍ଟସାଧ୍ୟ । ତେବେ ସଙ୍ଗୀତ କ୍ଷେତ୍ରରେ ସେ ଏଭଳି ସିଦ୍ଧହସ୍ତ ଥିଲେ ଯେ, ସଂସ୍କୃତ ସଙ୍ଗୀତ ଶାସ୍ତ୍ରରୁ ଓଡ଼ିଆରେ ଅନୁବାଦ କରିବା କିମ୍ବା ଭାବାନୁବାଦ ରୂପେ ବିଭିନ୍ନ ଲେଖାରେ ଗ୍ରହଣ କରିବା କବିଙ୍କ ପକ୍ଷରେ କଠିନ ନ ଥିଲା । ସେ ତାଙ୍କର କେତେକ ଗ୍ରନ୍ଥରେ ସ୍ୱୀକାର କରିଅଛନ୍ତି ଯେ, ଯଦିଓ ସେଗୁଡ଼ିକ ନିଜ ନାମରେ ନାମିତ ହୋଇଛି, ତାହା କବିଙ୍କର ମୌଳିକ କୃତିତ୍ୱ ନୁହେଁ, ବରଂ ସଂସ୍କୃତରୂପୀ ଦେବଭାଷାକୁ ଉତ୍କଳୀୟ ପାଠକମାନଙ୍କ ପଠନ ମନନ ପାଇଁ ଉତ୍କଳ ଭାଷାରେ ଅନୁବାଦ କରିଅଛନ୍ତି । ପ୍ରାଚୀନ କବିବୃନ୍ଦ ସ୍ୱଆଶ୍ରୟ-ଦାତା ରାଜନ୍ୟମଣ୍ଡଳୀଙ୍କ ଅନୁରୋଧ କ୍ରମେ ବା ଆଶ୍ରୟଦାତାଙ୍କ ଗୁଣକୀର୍ତ୍ତନ ନିମିତ୍ତ ବିଭିନ୍ନ କାବ୍ୟ ରଚନା କରୁଥିଲେ । ସେତେବେଳେ ତତ୍କାଳୀନ ରାଜନ୍ୟବର୍ଗଙ୍କ ମଧ୍ୟରେ ସଙ୍ଗୀତ ପ୍ରତି ବହୁଳ ଅନୁରାଗ ଥିଲା । ତେଣୁ ଏହା କବିଙ୍କୁ ଉକ୍ତ ରଚନା କରିବା ନିମନ୍ତେ ପ୍ରଭାବିତ କରିଥିବା ସମ୍ଭବ ହୁଏ ।

•

**ପ୍ରଥମ ଛାନ୍ଦ—**

ସେ ଲିଙ୍ଗେଶ୍ୱରଙ୍କୁ ହୋଇ ପ୍ରଣିପତ୍ୟ ।
ମାଗୁଅଛି ତୋଳା କରି ବର୍ଣ୍ଣିବି ସଙ୍ଗୀତ ॥
ଗ୍ରନ୍ଥ ଥିଲେ ସର୍ବେ କେହି ବୁଝିବେ ସଂସ୍କୃତ ।
ଏଣୁ ପରାକୃତେ କହିବାକୁ ହୋଏ ଚିତ୍ତ ॥
ସଙ୍ଗୀତ ଅଟଇ ଅଗମ୍ୟ ବାରିଧି ସମାନ ।
ସାଧୁଙ୍କ ଅବଲମ୍ବନେ ପାର ହେ ବାମନ ॥ ୨ ॥

× × ×

ବିଧି କଳ୍ପିଲେ ପଞ୍ଚମ ବେଦ ଯେ ସଙ୍ଗୀତ ।
କାହିଁକି ଆଣିଲେ ତାହା ଶୁଣ କରି ଉକ୍ତ ॥ ୫ ॥
ଋକ୍ ବେଦରୁ ନଟ ଜନ୍ମ ହୋଇଲା ଭରତ ।
ସାମରୁ ଗୀତ ହୋଇଲା ସେ ପ୍ରକାରେ ଜାତ ॥ ୬ ॥

ଅଭିନୟ ଯଜୁର୍ବେଦେ ଅଥର୍ବରୁ ରସ ।
ସଙ୍ଗୀତ ଜନ୍ମ ଯେମନ୍ତେ କଲାଇଁ ପ୍ରକାଶ ॥ ୭ ॥

× × ×

ଏ ସଙ୍ଗୀତ ବିଦ୍ୟା ସମ୍ପ୍ରଦାରେ ଯେ ପ୍ରସିଦ୍ଧ ।
ସେମାନଙ୍କ ନାମ କିଛି କହିବା ହେ ବୁଧ ॥ ୮ ॥

ବ୍ରହ୍ମା ଶିବ ଦୁର୍ଗା ନନ୍ଦୀ ନାରଦ ଭରତ ।
କୋହଳ ରାବଣ ବାୟୁ ରମ୍ଭାଦି ସହିତ ॥ ୯ ॥

ସଙ୍ଗୀତ ପ୍ରଚାରକ ଅଟନ୍ତି ଏହିମାନେ ।
କହିବା ପ୍ରଶସ୍ତ ଏହି ବିଦ୍ୟା ସେ ଯେସନେ ॥ ୧୦ ॥

ଶ୍ରୁତି, ସ୍ମୃତି ସାହିତ୍ୟ ଆଦିର ଜାଣିଥାଇ ।
ସଙ୍ଗୀତ ନ ଜାଣେ ଦ୍ୱିପାଦ ପଶୁ ସେହି ॥ ୧୧ ॥

ଦାନ ଯଜ୍ଞ ସ୍ତବାଦି ଏ ତ୍ରିବର୍ଗ ଦିଅନ୍ତି ।
ଏକା ସଙ୍ଗୀତରେ ଚତୁର୍ବର୍ଗ ଫଳ ପ୍ରାପ୍ତି ॥ ୧୨ ॥

କୃଷ୍ଣ ସ୍ତୁତି ଗାନେ ଧର୍ମ ଧନ କାମ ମିଳେ ।
ନିଷ୍କାମେ ତା କଲେ ମୋକ୍ଷ ଅଭ୍ୟାସ ସକଳେ ॥ ୧୩ ॥

କି ସ୍ୱରୂପ ସଙ୍ଗୀତ ଏବେ କହିବା ଶୁଣ ।
ଶିରୋମଣିରେ ଏ କଥା ଅଟଇ ପ୍ରମାଣ ॥

ଗୀତ ବାଦ୍ୟ ନୃତ୍ୟ ମିଳି ସଙ୍ଗୀତଟି ଏହି ।
ଗୀତ ବାଦ୍ୟ ଦୁଇ ପୁଣ କେହି କେହି କହି ॥

ଗୀତର ଲକ୍ଷଣ ଆଦି ପରବର୍ତ୍ତୀରେ କହିବାପାଇଁ କବି ପ୍ରଥମତଃ ସଙ୍ଗୀତସାର, ସଙ୍ଗୀତ ପ୍ରକାଶ, ନାରଦ ସଂହିତା ପ୍ରଭୃତିର ଅବଲମ୍ବନରେ ସ୍ୱର ନିରୂପଣ ନାମରେ ପ୍ରଥମ ଛାନ୍ଦ ସମାପ୍ତ କରିଛନ୍ତି ।

ଦ୍ୱିତୀୟ ଛାନ୍ଦରେ ବିଭିନ୍ନ ରାଗ ରାଗିଣୀ ଉଲ୍ଲେଖ କରିବାକୁ ଯାଇ କବି ଭରତ ଉକ୍ତି ଅନୁସାରେ ଗୋପୀମାନଙ୍କ କୃଷ୍ଣଙ୍କପ୍ରତି ଅନୁରାଗ ସ୍ୱଭାବ ବିକାରରୁ ହିଁ ରାଗର ସୃଷ୍ଟି ବୋଲି କହିଅଛନ୍ତି । ଏହି ରାଗରୁ ହିଁ ରାଗର ଉଦ୍‌ଗାର ହୋଇ ସହସ୍ର ରାଗ ଜାତ ହୋଇ କେଉଁ କେଉଁ ଦେଶରେ ଖ୍ୟାତ ହେଲେ, ଏହି ରାଗ ମଧ୍ୟରୁ ୭ଟି ରାଗ ଓ ଛତିଶ ରାଗିଣୀର ସୃଷ୍ଟି । ଏହି

ଛଅ'ଟି ରାଗ ହେଲା କର୍ଣ୍ଣାଟ, ନାଟ, ମହ୍ଲାର,ଦେଶାକ୍ଷ,ମାଳବ, ବସନ୍ତ । ଏହି ରାଗମାନଙ୍କର ନାୟିକାରୂପେ ରାଗିଣୀ ମାନଙ୍କର ସୃଷ୍ଟି । ସେଥିମଧ୍ୟରୁ କର୍ଣ୍ଣାଟ ରାଗର ଚନ୍ଦନା, ମାଳଶ୍ରୀ, ସିନ୍ଧୁଡ଼ା, ବେହ୍ଲାବଳୀ, ତୁବାରୀ ଇତ୍ୟାଦି ନାୟିକାରୂପେ ଖ୍ୟାତ ହେଲେ । ନାଟରାଗର କାମ୍ବୋଜ, ନାଟଭାଷା, ନାଟିକା ଗୁଣମଞ୍ଜରୀ, ରେଖରୀ, ମୁଖରୀ ଇତ୍ୟାଦି ନାୟିକାରୂପେ ଖ୍ୟାତ । ମହ୍ଲାର ରାଗର ମହ୍ଲାର, ଲଳିତା ପାଠିନ ମଞ୍ଜରୀ, ମଧୁକରୀ, ଦୁଗ୍ଧକାରୀ, ଦେଶୀ ଇତ୍ୟାଦି ମହ୍ଲାର ରାଗର ନାୟିକା ଅଟନ୍ତି । ଦେଶାକ୍ଷ ରାଗର ଗୁଜ୍ଜରୀ, ରାମକେରୀ, ଗୁଣ୍ଡକରୀ, ସୁରହଟା, ଧନାଶ୍ରୀ ଓ ବରାଡ଼ି ଆଦି ନାୟିକାରୂପେ ବନ୍ଦିତ । ମାଳବ ରାଗର ଶ୍ରୀକେଦାର, ସଙ୍କା, ମେଘମାଳମା, ବଧୂଚନ୍ଦ୍ରା, ନରଣି ଇତ୍ୟାଦି ନାୟିକା । ବସନ୍ତ ରାଗର ଭୈରବୀ, ବଙ୍ଗରା, ମେଘ, ପଞ୍ଚମୀ, ଚତୁର୍ଥୀ ଅମରତୋଡ଼ି ଇତ୍ୟାଦି ନାୟିକା ।

ଏହି ଗୀତଗୁଡ଼ିକ ଗାୟକମାନଙ୍କ ଗାଇବା ଭେଦରେ ଏକୋଇଶ ପ୍ରକାରରେ ବୋଲାଯାଇଥାଏ ।

"ରାଗ ରାଗିଣୀ ବିଷୟ କହିଲ ଏହୁ ଦ୍ୱିତୀୟ ଛାନ୍ଦରେ ।
କେବଳ ଗ୍ରାମଭାଷାରେ ପ୍ରକାଶିତ ଅଜ୍ଞ ବୁଝିବା ନିମନ୍ତେରେ" ॥ ୨୭ ॥

ତୃତୀୟ ଛାନ୍ଦରେ ରାଗମାନଙ୍କର ମୂର୍ତ୍ତି ବିଷୟ ନାନା ଗ୍ରନ୍ଥାଦିରୁ ସଂଗ୍ରହ କରି କବି ଏକତ୍ର କରିଅଛନ୍ତି । ତାହା ହେଉଛି ସଙ୍ଗୀତ ନାରାୟଣ, ସଙ୍ଗୀତ ଦାମୋଦର, ସଙ୍ଗୀତ କଳାଙ୍କୁର, ସଙ୍ଗୀତ ଚନ୍ଦ୍ରିକା, ସଙ୍ଗୀତ ରତ୍ନମାଳା ଓ ନାରଦ ସଂହିତା ଇତ୍ୟାଦି ।

ଚତୁର୍ଥ ଛାନ୍ଦରେ ଗାୟନ କାଳର ବର୍ଣ୍ଣନା କରାଯାଇଅଛି । ଏହି କାଳ ବିଷୟରେ ସଙ୍ଗୀତ ଦାମୋଦର ଭରତ ମୁନି, ସଙ୍ଗୀତକୌମୁଦୀ ନାରଦ ସଂହିତା ଇତ୍ୟାଦିରେ ବିସ୍ତୃତଭାବେ ବର୍ଣ୍ଣନା ହୋଇଥିବାରୁ କବି ତାହା ପରାକୃତରେ ଗ୍ରହଣ କରିଅଛନ୍ତି ।

"ସଂସ୍କୃତ ପ୍ରାକୃତ ବନ୍ଧେ କହିଲଇଁ ଏ ନିବନ୍ଧେ
ସର୍ବେ ବୁଝିବେ କଲେ ତ ଏ ଅଭିଳାଷ
ଏ ସଙ୍ଗୀତ ସଦାନନ୍ଦ ଯେ,
ସଦାନନ୍ଦକବିସୂର୍ଯ୍ୟ ସଙ୍ଗୀତ ସର୍ଜେ ॥ ୧୫ ॥

ପଞ୍ଚମ ଗ୍ରନ୍ଥଟିରେ କବି ତାଳ ବିଷୟ ଉଲ୍ଲେଖ କରି ଏହି ତାଳର ପରିଭାଷା ପାଇଁ ତାର ବିଷୟ ବୁଝାଇବାକୁ ଯାଇ ବହୁ ସଂସ୍କୃତ ଗ୍ରନ୍ଥରୁ ସାହାଯ୍ୟ ନେଇଛନ୍ତି ।

ଷଷ୍ଠ ଛାନ୍ଦରେ ତାଳର ଲକ୍ଷଣ, ଉଦାହରଣ ସଂସ୍କୃତ ବଙ୍ଗଳା ଏବଂ ଓଡ଼ିଆ ଭାଷାର ଉଦାହରଣ ଦେଇ ଉତ୍ତମରୂପେ ଅଜ୍ଞ ଲୋକଙ୍କୁ ବୁଝାଇଛନ୍ତି । ଏହିଭଳି ଭାବରେ ମନୁ ଧ୍ରୁବାଦି ଭେଦରେ ଏକାଦଶ ତାଳ ବର୍ଣ୍ଣନା କରି ଛାନ୍ଦ ସମାପ୍ତ କରିଛନ୍ତି ।

ସପ୍ତମ ଛାନ୍ଦରେ ଚଞ୍ଚପୁଟ ଆଦି ସ୍ୱର୍ଗୀୟ ସଙ୍ଗୀତ ହେତୁ ତାହା ଏହି ଛାନ୍ଦରେ ଆଲୋଚନା କରିଛନ୍ତି । ଏହା ସାତତାଳ ବିଶିଷ୍ଟ ଓ ଏହା ବ୍ୟତୀତ ଆହୁରି ୮୧ଟି ତାଳ ଅଛି ।

ଅଷ୍ଟମ ଛାନ୍ଦରେ କବି ଗ୍ରହ ଲୟ, ମାନ ପ୍ରଭୃତିର ଆଲୋଚନା କରିଅଛନ୍ତି ।

ନବମ ଛାନ୍ଦରେ ଆଳାପ, ଅନିବଦ୍ଧ, ନିବନ୍ଧ, ପାଟତାଳ ଭେଦ ପ୍ରଭୃତିର ଉଲ୍ଲେଖ ଅଛି । ଏହାଛଡ଼ା ତନ୍ତୁ, ବୀଣା, ମୁରଜ, ଆନନ୍ଦ ପ୍ରଭୃତି ବିଭିନ୍ନ ବାଦ୍ୟର ମଧ୍ୟ ଆଲୋଚନା ହୋଇଅଛି । ବଂଶୀର ନିର୍ମାଣ ଶୈଳୀ, କରତାଳ ଇତ୍ୟାଦିର ଲକ୍ଷଣ ଓ ଗାନ ଇତ୍ୟାଦିର ଆଲୋଚନାଦ୍ୱାରା ଏ ଛାନ୍ଦଟି ସମାପ୍ତ ହୋଇଛି ।

ଦଶମ ଛାନ୍ଦରେ ନାଟ୍ୟର ଲକ୍ଷଣ ବର୍ଣ୍ଣନା କରାଯାଇଅଛି ।

"ଯେ ପୁଣି ଅଟନ୍ତି ବହୁ ପ୍ରକାର । ନର୍ତ୍ତନ ନାଟ୍ୟ ନୃତ୍ୟ କର୍ମ ତାର ॥
ଯେ ଯେଉଁ ସ୍ୱଭାବେ ଧରେ ଲୋକରେ । ନାଟ ଅବସ୍ଥା ଅଟେ ଦଇବରେ ॥
ଅଙ୍ଗ ଅଭିନୟ ଯୁକ୍ତ ଯେ
ନାଟ ବୋଲି ତାକୁ ଏମନ୍ତ ପଣ୍ଡିତମାନେ କହିଛନ୍ତି ଉକ୍ତ ଯେ" ॥

## (୧୧) ମୋହନଲତା ବା ମୋହନକଳ୍ପଲତା—

ଏହି ନାମରେ ଏକ ପାଣ୍ଡୁଲିପି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ନିକଟରୁ ମିଳିଥିଲା । ଏହାପରେ ଭୁବନେଶ୍ୱର ବାଣୀବିହାରସ୍ଥ ଗ୍ରନ୍ଥାଗାରରୁ

'ମୋହନଲତା' ନାମରେ ଏକ ତାଳପତ୍ର ପୋଥି ମଧ୍ୟ ମିଳନ୍ତି । କେବଳ ନାମକରଣ ଭିନ୍ନ ଦୁଇଟିଯାକ ରଚନାରେ ଅନ୍ୟ କୌଣସି ପାର୍ଥକ୍ୟ ନାହିଁ ।※

ସମାପ୍ତି ବର୍ଣ୍ଣନା-ସ୍ୱଗ-ମଙ୍ଗଳ

"ମଧୁପୁର ଶ୍ରୀ ଶ୍ରୀ ଭୂପ ଧୀର ବୀରବର ।
ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ବାହାଦୁରଙ୍କର ॥
ମୋହନକଳ୍ପଲତା ବୋଲି ଯେ ଗ୍ରନ୍ଥ ନାମ ।
ଛପ୍ନାଳିଶ ଛନ୍ଦରେ ଲେଖି କଲି ସମ୍ପୂର୍ଣ୍ଣ ॥
ଶ୍ରୀରାମଚନ୍ଦ୍ର ଦେବଙ୍କ ଅଷ୍ଟବିଂଶାଙ୍କରେ ।
ମିଥୁନ ମାସର ଭୋଗ ପନ୍ଦର ଦିନରେ ॥
କୃଷ୍ଣ ଏକାଦଶୀ ତିଥି ଭୃଗୁର ବାସରେ ।
ଏ ଦିନ ଯେ ବେଳା ଭୋଗ ଦଶ ଦଣ୍ଡଠାରେ ॥
ଗଡ଼ର ଉତ୍ତର ପାର୍ଶ୍ୱ ଭୋଗଡ଼ା ଗ୍ରାମରେ ।
ଲେଖି ପୂର୍ଣ୍ଣ କଲି ଗୀତ ଧାଡ଼ି ପ୍ରବନ୍ଧରେ" ॥

କାବ୍ୟ ରସିକମାନଙ୍କ କଳ୍ପଲତା ସଦୃଶ ଏହି 'ମୋହନଲତା' କବିଙ୍କ ଲେଖନୀ ନିସୃତ ଦ୍ୱିତୀୟ କାଳ୍ପନିକ କାବ୍ୟ । ପ୍ରଥମ କାଳ୍ପନିକ କାବ୍ୟ 'ଲଳିତଲୋଚନା' ରଚନା ପରେ ଏହି ଦ୍ୱିତୀୟ କାଳ୍ପନିକ କାବ୍ୟଟି ରଚିତ ହୋଇଥିବା କବିଙ୍କ ଲେଖାରୁ ଜଣାଯାଏ ।

"ଲଳିତଲୋଚନା ଗ୍ରନ୍ଥ ବାଉନ ଛନ୍ଦରେ ।
ସମ୍ପୂର୍ଣ୍ଣ ହୋଇଛି ଜାଣ କଳ୍ପନା ବେଗରେ ।" (ମୋହନଲତା)

କବି ସଦାନନ୍ଦ ଯଦି ଏହି ଦୁଇ କାଳ୍ପନିକ କାବ୍ୟ ପରି ଅନ୍ୟ କାବ୍ୟ ଗୁଡ଼ିକ ରଚନା କରିଥାନ୍ତେ, ତେବେ ତାଙ୍କୁ ବୈଷ୍ଣବ କବିରୂପେ ଅଭିହିତ ନ କରି ରୀତିଯୁଗୀୟ ଶୃଙ୍ଗାରୀ କବିମାନଙ୍କ ପରି ସମାନ ପଦମର୍ଯ୍ୟାଦା ଦିଆଯାଇ ପାରିଥାନ୍ତା । କିନ୍ତୁ କବିଙ୍କର ଅନ୍ୟାନ୍ୟ ମୌଳିକ ଗ୍ରନ୍ଥ ତଥା ଅନୁବାଦ ଗ୍ରନ୍ଥାଦିରେ ରାଧାକୃଷ୍ଣ ଯୁଗଳ ଉପାସନା ଓ ବୈଷ୍ଣବ ଦର୍ଶନକୁ ମୁଖ୍ୟ ଉପଜୀବ୍ୟରୂପେ ଗ୍ରହଣ କରିଅଛନ୍ତି । ଏପରିକି ପ୍ରୋକ୍ତ କାବ୍ୟ ଏହି

---

※ Cat No. OL. 60 Folio-156, ବାଣୀବିହାରସ୍ଥ ଗ୍ରନ୍ଥାଗାର

ଯୁଗଳ ଉପାସନାରୁ ବ୍ୟତିକ୍ରମ ହୋଇନାହିଁ । କାବ୍ୟର ସ୍ତରେ ସ୍ତରେ ରାଧାକୃଷ୍ଣଙ୍କ ଭାବନା ପୂରି ରହିଅଛି । କାବ୍ୟଟି ୫୨ ଛାନ୍ଦ ବିଶିଷ୍ଟ ଏକ ଦୀର୍ଘ ରଚନା । ପ୍ରଥମ ଛାନ୍ଦରେ ମଙ୍ଗଳାଚରଣରେ କବି ବିଶାଖା ପ୍ରଭୃତି ଅଷ୍ଟସଖୀଙ୍କ ବନ୍ଦନା ପରେ ସୁବଳ ପ୍ରଭୃତି ସଖାମାନଙ୍କର ବନ୍ଦନା କରି-ଅଛନ୍ତି । ଏହାପରେ ଭାରତୀ ବିଦ୍ଧ୍ନ ରାଜଙ୍କର ମଙ୍ଗଳଗାନ କରାଯାଇ ବିଷୟବସ୍ତୁ ଆରମ୍ଭ ହୋଇଅଛି । କବି ସମସ୍ତ ଗ୍ରନ୍ଥସମୁଦ୍ର ଆଲୋଡ଼ନ ପରେ ମୋହନଲତାର ଜନ୍ମବୃତ୍ତାନ୍ତ ଆରମ୍ଭ କରିଛନ୍ତି ।

**ପ୍ରଥମ ଛାନ୍ଦ—**

ବିସ୍ତରୁଛି ଶବ୍ଦ ଯେଣୁ ଅଟେ ନିର୍ବିଶେଷେ ।
ଏହିକ ତକଣ୍ଡା ଇଚ୍ଛା ଯାଗେ ସଦୃଶ ହେ ॥ ୧୩ ॥

ଅଭିଧାନ ନୀର ବ୍ୟାକରଣ ସେ ତରଙ୍ଗ ।
ଶାସ୍ତ୍ର ଜଳପତି ଶ୍ରୁତି ସ୍ମୃତି ଆତ୍ମା ସଙ୍ଗ ହେ ॥

ଷୀର ଶିଳ୍ପ ଶାସ୍ତ୍ର ଦୁଇ ତଟ ଅଟେ ତାର ।
ବିଧି ଅବିଧି ଏ ମୀନ ଶାସ୍ତ୍ରରେ ସୁବାର ହେ ॥

ବୈଦ୍ୟ ଶାସ୍ତ୍ର ସୁକ୍ତି ଶାଳକ ହୋଇ ମଗର ।
ପିଙ୍ଗଳ ସେ ବାନଳ ସମୁହଂଧା ବାର ହେ ॥

ବୈଷ୍ଣବ ଗ୍ରନ୍ଥି ତହିଁ ମଧ୍ୟରେ ରାଜିବ ।
ପୁରାଣ ସକଳ ଜଳଚର ମନେ ଭାବ ହେ ॥

ଜ୍ୟୋତିଷ ବୋଇତ ରାଗମାଳା ହିଁ ଗର୍ଜନ ।
ସ୍ୱର ଶାସ୍ତ୍ର ପୀୟୂଷ ନିର୍ଜ ଅଙ୍କ ଅସନ ହେ ॥

ବିସ୍ତରୁଛି ମୋ ସୁମନ ସୁମନା ପ୍ରକାର ।
ନେହଯୁଗ ପୁଷ୍ପବନ୍ତ ନିଶ୍ୱାସ ସମୀର ହେ ॥

ଅନୁଭବ ବୃହସ୍ପତି ବେଗତା ସେ କବି ।
ବୁଦ୍ଧି ବାସୁଦେବ ଚଇତନ୍ୟ ମେରୁ ଭାବି ॥

ସେ ସିନ୍ଧୁ ମନ୍ଥନରୁ ବହୁତ ଜାତ ରତ୍ନ ।
ମୋହନ କଳ୍ପଲତା ଜନ୍ମକୁ ଏବେ ଯତ୍ନ ॥

× × ×

କୃଷ୍ଣଚନ୍ଦ୍ରଙ୍କର ମଥୁରାରେ ଜନ୍ମ ହୋଇ ଗୋପରେ ଆଶ୍ରୟ ଗ୍ରହଣ କରିବା ଓ ସେଠାରେ ପୌଗଣ୍ଡ ପ୍ରାପ୍ତିରେ ଗୋପୀକାମାନଙ୍କ ମନହରଣ ତଥା ଅସୁରବର୍ଗଙ୍କ ବିନାଶ କରି ମଥୁରା ପ୍ରତ୍ୟାବର୍ତ୍ତନ ଓ ମଥୁରାରେ କଂସବଧ ଓ ଉଗ୍ରସେନଙ୍କୁ ରାଜଦଣ୍ଡ ପ୍ରଦାନ, ଜରାସନ୍ଧ ଭୟରେ ଦ୍ୱାରକା ଗମନ ଆଦି ବୃତ୍ତାନ୍ତ ସଂକ୍ଷିପ୍ତ ଭାବରେ ଏଥିରେ ଅବତାରଣା କରାଯାଇଅଛି ।

## ଦ୍ୱିତୀୟ ଛାନ୍ଦ—

ଏହି ଛାନ୍ଦରେ କୃଷ୍ଣଙ୍କର ଦ୍ୱାରକା ଅବସ୍ଥାନ ଫଳରେ ଗୋପାଙ୍ଗନା-ମାନେ କପରି ବିରହାନଳରେ ଘାରି ହୋଇଛନ୍ତି ତାହାର ବର୍ଣ୍ଣନା କରାଯାଇଅଛି ।

ନିଜ ତନୁ ହୋଏ ଭାରି କି ବେଶ ବସନ ।
ହାରି ହେଲା ନେତ୍ରକଧାରି ଯେ ଅଙ୍ଗ ବିଛନ୍ନ ॥ ୨ ॥

ହାସ ଗଲା ପ୍ରବାସ ସେ ପୀତବାସ ସଙ୍ଗେ ।
ଦନ୍ତବାସେ ରହିଲେ ବେପଥୁ ବିରସ ରଙ୍ଗ ଭଂଗେ ॥ ୩ ॥

ଉଦର କୃଶତା ସର୍ବ ପ୍ରଦେଶେ ଭରିଲା ।
ନଖର ମୁଖରତା ମହୀରେ ଘୋରନ୍ତେ ଶେଷ ହେଲା ॥ ୪ ॥

ଭୁବନ ମଂଗଳ ଗଲାଦିନୁ ଗୋପପୁର ।
ନ ଦିଶଇ ଶୋଭା ସେ ଯେମନ୍ତ ବାସରେ କଳାକର ॥ ୫ ॥

×　　　×　　　×

ଏକଦିନେ ଯମୁନା ନିକଟେ ସର୍ବେ ମିଳି ।
ମଧ୍ୟେ ଶ୍ରୀରାଧାଙ୍କୁ ବସାଇ ବୋଧନ୍ତି ବ୍ରଜବାଳୀ ॥ ୧୨ ॥

ହେ ରାଧେ ତୁମ୍ଭେ ଏ ସର୍ବ ସଖୀଙ୍କ ଜୀବନ ।
ତବ ପାଦ ପଙ୍କଜ ବିହୁନେ ନ ଜାଣୁ ଆନ ॥ ୧୩ ॥

ଏମନ୍ତ ରୋଦନ କରିବାରେ ବ୍ରଜ ନାରୀ ।
ଏକ ଜନ୍ମ ଗର୍ଭେ ହେ ଭରିଲା ବହିଣ ନେତ୍ରବାରି ॥

ତାହା ଦେଖି ବୃନ୍ଦା ତହୁଁ ମୃତ୍ତିକା ସାଜିଣ ।
କଲେ ନାରୀ ରୂପରେ କୌତୁକେ ପ୍ରତିମା ସୁନିର୍ମାଣ ॥

ଶ୍ରୀରାଧିକା ଏକାକ୍ଷର ମନ୍ତ୍ର କର୍ଣ୍ଣ ମାନେ ।
ସାକ୍ଷାତ ହୋଇଲା ସେ ଯୁବତୀ ନମିଲା ପାଦାଗ୍ରତେ ॥ ୨୭ ॥

× × ×

କି କରିବ ବୋଲି କରଯୋଡ଼ି ପଚ୍ଛରଇ ।
ବୃନ୍ଦା ବୋଲେ ଯାଅ ତୁ ଦ୍ୱାରକା ଶ୍ରୀ ଗୋପୀନାଥ ଯହିଁ ॥ ୨୯ ॥
ଏମନ୍ତ ସ୍ଥାନରେ ଭେଟ ହୋଇବୁ କୃଷ୍ଣଙ୍କୁ ।
କହିବୁ ଏତକ ତୁମ୍ଭେ ହତ କଲ ହେ ସୁବର୍ଣ୍ଣକୁ ॥ ୩୧ ॥

ଏହିପରି ଅଶ୍ରୁଜାତ କନ୍ୟା ପାଦୁକା ମନ୍ତ୍ର ବଳରେ ଦ୍ୱାରକାରେ ପ୍ରବେଶ କରି ନବବୃନ୍ଦାବନରେ ଅବସ୍ଥାନ କଲା । ସେହିଦିନ ସ୍ୱପ୍ନରେ କୃଷ୍ଣ ଗୋପୀମାନଙ୍କର ଅବସ୍ଥା ଦର୍ଶନ କରି ବିହ୍ୱଳ ଅବସ୍ଥାରେ ଉକ୍ତ ବନରେ ପ୍ରବେଶ କଲେ ଓ ସେଠାରେ ଅଶ୍ରୁଜାକୁ ଦେଖିଲେ ।

"ଏମନ୍ତେ ନୀପ ବିଟପ ସନ୍ନିକଟେ ବଜେ ।
ପଡ଼ିଲା ନୟନ ସେ ଏକାଳେ ଅଶ୍ରୁଜା ଉପରି ଲଜେ" ॥ ୩୯ ॥

ଅଙ୍ଗବାସେ ରଞ୍ଜି ଭୃଙ୍ଗ ଭ୍ରମର ନିକର ।
ନିବାରନ୍ତେ କରେ ତା କଙ୍କଣ କରଇ ଝଣାତ୍କାର ॥

ଖସାଇ ଓଢ଼ଣୀ ପୁଣ ଦିଏ ବାର ବାର ।
ଫିଟଇ କୁନ୍ତଳ ସେ ବସଇ ବାନ୍ଧଇ ଟେକ କରି ॥
କକ୍ଷ କୁଚ କୁଚ ନାନା ଛଳେ ପ୍ରକାଶିଲା ।
ଗମନ ବ୍ୟାଜରେ ସେ ପାଦୁକ ନୂପୁର ଚମକାଲା ॥

ଶ୍ରୀକୃଷ୍ଣ ଉକ୍ତ ତରୁଣୀକୁ ଦେଖିବାମାନେ ପୂର୍ବ ରାତ୍ରିର ସ୍ୱପ୍ନ ବୃତ୍ତାନ୍ତ ମନେ କରନ୍ତେ ଅଶ୍ରୁଜାଠାରୁ ସମସ୍ତ ବିଷୟ ଅବଗତ ହୋଇଅଛନ୍ତି ଏବଂ ସେ ରାଧାଙ୍କ ଅଂଶଜ ହୋଇଥିବାରୁ କିଛିଦିନ ତାଙ୍କ ସହ କ୍ରୀଡ଼ା କୌତୁକ କରି ପୁନର୍ବାର ମାନବୀ ଗର୍ଭରେ ଜନ୍ମ ହେବାକୁ ନିର୍ଦ୍ଦେଶ ଦେଇ କହିଛନ୍ତି ,

"ମନୁଷ୍ୟ ବିହୀନେ ରସ ନୋହେ ଭକ୍ତି ରସ ।
ଅନ୍ୟୋନ୍ୟରେ ଦୁର୍ଲ୍ଲଭ ହେଲେ ସେ ପୀରତି ପଥେ ଯଶ" ॥ ୬୦ ॥

ମହାତପା ନାମେ ବିପ୍ର ମୋର ସେ ଭଗତ ।
ବୀରବାହୁ ନାମେ ତା ହୋଇବ ଧନେଶ କୁଳେ ଜାତ ॥
ତା ମହିଷୀ ସ୍ୱର୍ଣ୍ଣରେଖା ଉଦରୁ ଉଦ୍ଭବ ।
ହୋଇବୁ ତୁ ନାମ ତୋ ହରିଚନ୍ଦନ ହୋଇବ ॥
ଜ୍ଞାନସେତୁ ନାମେ ବୃଷଭାନୁ ରାଜା ମିତ୍ର ।
ଧର୍ମଶୀଳ ଆଖ୍ୟା ସେ ବହିବ ନରେଶ କୁଳେ ଜାତ ॥
ତା ମହିଳା ସୁଶୀଳା ଗର୍ଭରୁ ଏହୁ ଜାଣ ।
ଜନମିବ ନାମ ତା ହୋଇବ ମୋହନଲତା ପୁଣ ॥
ବିଧି ଘଟଣାରେ ବିଭାହେବୁ ତୁ ଏହାକୁ ।
ଅଖଣ୍ଡ ମଣ୍ଡଳରେ ଈଶ୍ୱର ହେବୁ ତୁ ସେ କାଳକୁ ॥
କେତେକାଳ ଦମ୍ପତି ଏ ସୁଖକୁ ଭୁଞ୍ଜିବୁ ।
ତଦନ୍ତରେ ଆମ୍ଭ ଚରଣ ପଙ୍କଜ ପ୍ରାପ୍ତ ହେବୁ ॥

× × ×

ପୂର୍ବ ଜନ୍ମ ପ୍ରସଙ୍ଗେ ଏ ଛାନ୍ଦ ହେଲା ଖ୍ୟାତ ।
ଜାତିସ୍ମର କବି ସେ ଜାଣଇ ଆନକୁ ବିପରୀତ ॥ ୭୯ ॥
ସତ୍ୟାନନ୍ଦ ନନ୍ଦନ ପଦାମ୍ବୁଜ ମିଳିନ୍ଦ ।
ସଦାନନ୍ଦ ଦାସ କି ହୋଇବ ତେବେ ସର୍ବାନନ୍ଦ ॥ ୭୦ ॥

(ଆଦ୍ୟ ଅନୁପ୍ରାସ)

**ତୃତୀୟ ଛାନ୍ଦ**—ମୋହନଲତା ନାୟିକ ଜନ୍ମପୂର୍ବ ବର୍ଣ୍ଣନା ।

"ଏ ସ୍ଥଳ ମାନ ଶଇଳ କ୍ଷେତ୍ର ତୁଳ ଶ୍ରୀବିମଳା ବୃତ ବିଦିତ ।
ସନ୍ତାନ ବହୁ ପାଦରେ ପ୍ରକାଶିତ ମୁକ୍ତିଦ ବେଳା ସନ୍ନିହିତ ।
ଦ୍ୱାରକା ତର୍କ ଲେଖନରୁ ଲେଖକର ବ୍ରହ୍ମ ସୁତାହରେ
ଅଙ୍କୁର ଉଦ୍ଭବ ସଦା ଯହିଁ ବହ୍ନ ବିଗ୍ରହ" ॥ ୮ ॥

ତାହାପରେ କଟକର ବର୍ଣ୍ଣନା ଏବଂ ସ୍ୱାଧୀନ ଭର୍ତ୍ତୃକା ପ୍ରଭୃତି ନାୟିକାସହ ତୁଳନା କରାଯାଇଅଛି ଏବଂ ନବଗ୍ରହ ସହ ମଧ୍ୟ ତୁଳନା କରାଯାଇଅଛି ।

"ଏ ଦେଶ ନରେଶ ଅଧର୍ମେ ଉଦାସ, ଧର୍ମ କର୍ମରେ ଯେ ବିଶ୍ୱାସ ।
ବୀରବାହୁ ନାମ ପ୍ରକାଶ, ପ୍ରତାପ ଯଶ ସୂର୍ଯ୍ୟ ଶଶୀ ସଦୃଶ ।
ଯା ରାଜଧାନୀ ରତ୍ନଦନ ପ୍ରକାରେ, ଧ୍ୱାନ୍ତଭର ଧ୍ୱସ୍ତ କଲେ
ଯେ ସୁରନ୍ଦ ବେଶ୍ମ ବସେ ରସି ବାରେ" ॥ ୪୧ ॥

× × ×

ସେ ଯେଉଁ ରାଜନ ରାଜ୍ୟେ ସର୍ବପୂର୍ଣ୍ଣ କର୍ଦ୍ଦନ ଶୁଣିନାହିଁ କର୍ଣ୍ଣ ।
ଦାନ ବୀର ମୂର୍ତ୍ତି ଦାନ ବୀରରେ ସେ ସର୍ବରସକଳା ସମ୍ପୂର୍ଣ୍ଣ ।
କେବଳ ଅପତ୍ୟ ବିନା ଖେଦଚିତ୍ତ, ଶ୍ରୀନନ୍ଦାତ୍ମଜ ପଦାମାନ ।
ଏ ପୁତ୍ରକାମେ କରଇ ପଦ୍ମେ ବ୍ରତ ॥ ୪୭ ॥

× × ×

ତାହାର ମହିଷୀ ସ୍ୱର୍ଣ୍ଣରେଖା ନାମ ସେ ପତିବ୍ରତା ପରିପୂର୍ଣ୍ଣା ।
ବୁଧ ମଙ୍ଗଳବାର ସେ କରଇ ନିରାହାର ହୋଇ ପ୍ରବୀଣା ।
ଦିନେ ସେ ସ୍ୱପ୍ନ ଦେଖିଲ କାତ୍ୟାୟିନୀ
ହା କି ଦୁଃଖ ପାଉ ଧରଧର ବୋଲି ଫଳଦଉ କଲେ ଭବାନୀ ॥ ୪୯ ॥

ଏହାପରେ ଯଥା ସମୟରେ ରାଣୀ ଏକ ସନ୍ତାନ ପ୍ରସବ କରିବା ବିଷୟ ବର୍ଣ୍ଣନା ହୋଇ ଏହି ଛାନ୍ଦ ଶେଷ ହୋଇଛି ।

## ଚତୁର୍ଥ ଛାନ୍ଦ—ନାୟକ ଗୁଣ ବର୍ଣ୍ଣନ

ଏହି ସନ୍ତାନ କ୍ରମେ ସମସ୍ତ ବିଦ୍ୟାରେ ପ୍ରବୀଣ ହୋଇ ସଂସ୍କୃତ ଅଭିଧାନ, ବ୍ୟାକରଣ, ସନ୍ଧି, ଧାତୁ, କାରକ ତଦ୍ଧିତ, ରଘୁକାବ୍ୟ, ଅଳଙ୍କାର ଶାସ୍ତ୍ର ନାଟକ, ନ୍ୟାୟ, ମୀମାଂସା ପାତଞ୍ଜଳଭାଷ୍ୟ, ସାଂଖ୍ୟ ବେଦାନ୍ତ ପ୍ରଭୃତିରେ ପାରଦର୍ଶିତା ଲାଭ କରିଅଛନ୍ତି । ଏହାଛଡ଼ା ସଙ୍ଗୀତ ଶାସ୍ତ୍ର, ବୈଦ୍ୟ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ଅଶ୍ୱ ଶାସ୍ତ୍ର, ଶିଳ୍ପ, ଧର୍ମ, ପୁରାଣ ପ୍ରଭୃତିରେ ମଧ୍ୟ ଅଗାଧ ଜ୍ଞାନ ଲାଭ କରିବା ବିଷୟ କବି ଉଲ୍ଲେଖ କରିଅଛନ୍ତି । କ୍ରମେ ଯୌବନାବସ୍ଥା ଆସନ୍ତେ ମନ୍ତ୍ରୀ ସୁତ ପ୍ରୀତିକେତନ ଏବଂ ପୁରୋହିତ ସୁତ ଗୁଣନିଧାନ ସହ ପଶା, ଗଞ୍ଜାପା, ସତରଞ୍ଜ, ଚଉପଟ ପ୍ରଭୃତି ଖେଳ ଓ କାବ୍ୟ ନାଟକାଦି ଆଲୋଚନାରେ ମଜ୍ଜି ରହିଲେ ।

**ପଞ୍ଚମ ଛାନ୍ଦ—**

"ମୋହନଲତା କଳ୍ପଲତା ଏଥି ହୋଇବ ଜନ୍ମ ।
ତା ଚରିତ ସୁଷମା ସେ ରମା ରମ ଲଂଘି ସେ ଜାଣିମ" ॥ ୪ ॥

× × ×

"ସମସ୍ତ ମହାଦେବୀ ପୁତ୍ରବନ୍ତୀ ନାହିଁ ଦୁହିତା ।
ଅନ୍ତରଗତେ ହରନ୍ତରେ ଏହି ସକାଶୁ ଚିନ୍ତା" ॥ ୫୯ ॥
ସୁଦ୍ବିଜ ବଚନେ ସୁଶୀଳା ସହଜେ ଶାନ୍ତଶୀଳ ।
ଦୁହିତା ପ୍ରାପ୍ତି କାମେ କଲ ପୟୋବ୍ରତ କେବଳ" ॥ ୬୦ ॥

× × ×

ଏମନ୍ତେ ରାଣୀ ସ୍ବପ୍ନରେ ଚତୁର୍ଭୁଜ, ଶୁଭ୍ର ଆୟୁଧ ସହିତ ଉପେନ୍ଦ୍ର ଦର୍ଶନ ଲାଭ କରି ଏକ କନ୍ୟା ରତ୍ନ ନିମନ୍ତେ ବର ପ୍ରାର୍ଥନା କରନ୍ତେ, ଉକ୍ତ ବରଲାଭ ଫଳସ୍ୱରୂପ ମୋହନଲତା ଜନ୍ମ ଗ୍ରହଣ କରିବା ବିଷୟ ଏ ଛାନ୍ଦରେ ବର୍ଣ୍ଣନା କରାଯାଇଅଛି ।

ଷଷ୍ଠ ଛାନ୍ଦରେ କବି ମୋହନଲତାର ବାଲ୍ୟାବସ୍ଥା ଓ ଶିକ୍ଷାଦୀକ୍ଷାଦି ବର୍ଣ୍ଣନାସହ ଛାନ୍ଦଟି ସମ୍ପୂର୍ଣ୍ଣ କରିଛନ୍ତି ।

**ସପ୍ତମ ଛାନ୍ଦ**—ପୂର୍ବଭେଦ

"ହେ ସୁଜନମାନେ ଏବେ ହୁଅ ସାବଧାନ ।
ଏହିଠାରୁ ତୁମେ ରତୁ ଗୋଚର ବିଧାନ ହେ" ॥ ୧ ॥

ଏହି ଛାନ୍ଦରେ କନ୍ୟାର ବୟଃକ୍ରମ ତଥା କନ୍ୟା ପୁଷ୍ପବତୀ ହେବାର ବର୍ଣ୍ଣନା କରାଯାଇଅଛି । ଶେଷ ପାଦରେ ପ୍ରାପ୍ତ ଯୌବନାବସ୍ଥା ବର୍ଣ୍ଣନା କରାଯାଇଅଛି ।

"ସେ ବିଜୋୟିନ୍ତି ଜଙ୍ଗମ ନାମ ବାଦସିଂହ ।
ହର ଆଜ୍ଞା କଲେ ସ୍ୱପ୍ନେ କରି ଅନୁଗ୍ରହ ଯେ ॥
ବୋଇଲେ ମୋହନଲତା ମୂର୍ତ୍ତି ପଟେ ଲେଖ ।
ଏ'ସ୍ୱକାଶରୁ ତୋ ଯଶ ହୋଇବ ଅଲେଖ ଯେ ॥
ତତ୍ ସଦୃଶ ଲେଖିଲା ଈଶ୍ୱର ଆଜ୍ଞା ପାଇ ।
ସଂସାର ଭ୍ରମିବ ଏହା ଘେନି ବିଗୁରଇ ହେ" ॥ ୧୪୯ ॥

## ଅଷ୍ଟମ ଛାନ୍ଦ—

ଏହି ଛାନ୍ଦରେ କୁମର ନିକଟରେ କେତୁକାର ଚିତ୍ରପଟ ପ୍ରଦର୍ଶନ ଓ ଚିତ୍ରପଟ ଦେଖିବା ପରେ କେତୁକା ଦ୍ୱାରା ବର୍ଣ୍ଣନ । ଏହି ଚିତ୍ରପଟରେ ଜାନକୀ ରାମଙ୍କ ବିବାହ ସର୍ବାଙ୍ଗସୁନ୍ଦରୀ ସହ ସୁଦର୍ଶନଙ୍କ ବିବାହ ପ୍ରଭୃତି ପ୍ରଦର୍ଶିତ ହୋଇଅଛି ।

"ସାବଧାନ ହେଉ କଟାକ୍ଷ ଦାନ । କେତୁକା ଗୁଣୀ କରୁଛି ଦର୍ଶନ ॥
ହେ ବିଶ୍ୱମଙ୍ଗଳ, ରୁକ୍ମିଣୀବିଭା ଶୁଣୁଛି ସେ କାଳ" ॥ ୧୩ ॥
"ଚିତ୍ରକଳା ସୁଦର୍ଶନ ବିବାହ । ସର୍ବାଙ୍ଗ ସୁନ୍ଦରୀ ନାୟିକ ସହ ॥
ପୁଣି ଦେଖାଇଲା କାଞ୍ଚନଲତା । ବସୁଧା ବତଂସ ଧବ ଶୋଭିତା ॥
ତହିଁ ପ୍ରେମଶୀଳା ! କୁମର ସଙ୍ଗେ ମଧୁଶଯ୍ୟା ଲୀଳା ॥

ଏ ଅନ୍ତେ ଦେଖାଇଲା ଲୀଳାବତୀ,
ଚନ୍ଦ୍ରପ୍ରିୟ ସଙ୍ଗେ ଯେମନ୍ତ ରତି ।
ହସି ଦେଖାଏ ଲଳିତ ଲୋଚନା,
ବିରହେ ଯେଉଁରୂପେ ଖେଦ ମନା" ॥ ୧୭ ॥

ଏହି ଚିତ୍ର ପ୍ରଦର୍ଶନ ପରେ କେତୁକା ପୁରସ୍କୃତ ହୋଇ ଜନ୍ମମନ୍ତରେ ରାଜକୁମାରଙ୍କୁ ମୋହିତ କଲାପରେ ଜଣେ ଅବଧୂତଙ୍କର ପ୍ରବେଶ ଏବଂ କେତୁକାଠାରୁ ଚିତ୍ରପଟ ନେଇ ଉକ୍ତ ଚିତ୍ରର ଅସାରତା ସମ୍ବନ୍ଧେ କହି କୁନ୍ତଳ ଦେଶର ଧର୍ମବଳନାମକ ରାଜ୍ୟର ଜେମାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି ଏବଂ ଏଗୁଡ଼ିକ ତାହାର ପଦସେବାକୁ ଅଯୋଗ୍ୟ ବୋଲି ବର୍ଣ୍ଣନା କରିଛନ୍ତି ।

ନବମ ଛାନ୍ଦରେ ଚିତ୍ର ପ୍ରଦର୍ଶନ କରି ମୋହନଲତାର ଅବସ୍ଥା ବର୍ଣ୍ଣନା ପରେ ଦଶମ ଛାନ୍ଦରେ କୁମାରର ମୃଗୟା ବର୍ଣ୍ଣନା କରାଯାଇଅଛି ।

"କେ ତର୍ଜେ ଗର୍ଜେ ପଥ ଛାଡ଼ିଣ ।
କେ ନଳୀ ଡାଳ ତାଟି ଆଡ଼ିଣ ଜନ୍ତୁ ଲୋଡ଼ିଣ ଯେ ।
ଲଇଁ ଗୁଳିଣ ଗୁଳି ମାଡ଼ିଣ ଯେ, ଆଖି ଚିରାଟି ଦାନ୍ତ ଭିଡ଼ିଣ ଯେ ।
କେ ହଣ ବାର ବାର ମୋଡ଼ିଣ, ପ୍ରତିଜ୍ଞା କରେ ଫର ଝାଡ଼ିଣ ।
ଖଣ୍ଡା ଝଲକେ ଅରି ଧଇର୍ଯ୍ୟ ଯାଏ ଉଡ଼ିଣ ଯେ" ॥ ୭ ॥

ଏକାଦଶ ଛାନ୍ଦରେ ଉପବନ ଭ୍ରମଣ । ବସନ୍ତ ଋତୁରେ ବନର ଶୋଭା ଦର୍ଶନରେ ବିମୋହିତ ହୋଇ ରାଜକୁମାର ଓ ତାଙ୍କ ସାଥୀଙ୍କର ତଟିନୀ ନିକଟରେ ପ୍ରବେଶ ଓ ପାର୍ଶ୍ୱରେ ପର୍ବତ କନ୍ଦରରେ ଏକ ପ୍ରାସାଦ ଦର୍ଶନ । ଏକ ଦେବାଳୟ ନିକଟରେ ମଣ୍ଡଳାକୃତି ହୋଇ ବସିଥିବା ରମଣୀମାନଙ୍କ ମଧ୍ୟରେ ଏକ ଅନିନ୍ଦ୍ୟ ସୁନ୍ଦରୀଙ୍କୁ ଦେଖି କୁମାରଙ୍କ ଆସକ୍ତି ଜାତ ଓ ମନ୍ତ୍ରୀ ପୁତ୍ରଙ୍କୁ ପ୍ରେରଣ । ଉକ୍ତସ୍ଥ ଦେବାଳୟସ୍ଥ ଦେବତାଙ୍କୁ ଦର୍ଶନ ନିମନ୍ତେ ଉପକ୍ରମ କରୁଁତେ; ମହେଶଙ୍କ ଦର୍ଶନ ସମୟେ ଏକ ଅଶରୀରୀ ବାଣୀ ଶୁଣିବା, ଅର୍ଥାତ୍ ମୋହନଲତା ରାଧା ଅଙ୍ଗରୁ ଓ କୁମର କୃଷ୍ଣ ଅଙ୍ଗରୁ ଜାତ ହୋଇ-ଥିବାରୁ ଦୁହିଁଙ୍କର ମିଳନ ହେବ । ଏହି ଛାନ୍ଦର ନାମ ଅଷ୍ଟବନ୍ଧମଣି ନାମିତ କରି ଛାନ୍ଦର ସମାପ୍ତି କରିଛନ୍ତି ।

ଦ୍ୱାଦଶ ଛାନ୍ଦରେ କୁମର ନିକଟରେ ଜଙ୍ଗମ ବା ସନ୍ୟାସୀର ଗୃହ ଆଶ୍ରମ ବ୍ୟବସ୍ଥା ଆଲୋଚନା କରି ଗୃହସ୍ଥାଶ୍ରମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ସାହିତ୍ୟରେ ନାୟିକା ଲକ୍ଷଣ ବର୍ଣ୍ଣନା କରିଅଛନ୍ତି ।

ସ୍ୱକୀୟା ସେ ପରକୀୟା ଏ ଦ୍ୱିବିଧ ରସ ।
ପତି ଉପପତି ଦୁଇ ନାୟକ ପ୍ରକାଶ ହେ ॥ ୭ ॥

ପ୍ରତ୍ୟେକ ନାୟକ ଅଷ୍ଟ ପ୍ରକାର ହୁଅନ୍ତି ।
ଧୀରୋଦାତ୍ତ, ଧୀର ଶାନ୍ତ ଧୀରୋଦ୍ଧତ ଖ୍ୟାତି ହେ ॥

ଧୀର ଲଳିତକୁ ମିଶି ହୋଇଲେ ଏ ଗୁରି ।
ଅନୁକୂଳ ଦକ୍ଷିଣ ଶଠ ଧୃଷ୍ଟ ଏପରି ସେ ॥

ସ୍ୱକୀୟା ପରକୀୟାରେ ଘଟନ୍ତି ଏ ଜାଣ ।
ଧୀରା ଅଧୀରା ଧୀରା ଧୀରା ନାରୀ ଲକ୍ଷଣ ସେ ॥

ମୁଗ୍ଧା ମଧ୍ୟା ପ୍ରଗଲ୍ଭା ଏ ତ୍ରିଲକ୍ଷଣ ଯେବେ ।
ଏଥୁ ତହିଁ ମିଶ୍ରିତ ପ୍ରତ୍ୟେକ ହୋନ୍ତି ତେବେ ସେ ॥ ୧୦ ॥

ମୁଗ୍ଧା ଏକ ବିଧ ମଧ୍ୟା ଦିଏ ତିନ ତିନ ।
ଧୀର ମଧ୍ୟା ଅଧୀର ମଧ୍ୟା ଏରୂପେ ବେନି ସେ ॥

ତ୍ରିଲକ୍ଷଣେ ଧୀରା ଧୀର ମଧ୍ୟା ତହିଁ ଏକ ।
ଏ ତୃତୀୟ ପ୍ରକାର ସେ ବୁଝ ସୁବିବେକ ସେ ॥

× × ×

ସମ୍ଭୋଗ ବିପ୍ରଲମ୍ଭ ଏ ଅଟେ ଦୁଇମତ ।
ବନ ଆଦ୍ୟେ ଜଳକ୍ରୀଡ଼ା ବନବିହାରାଦ୍ଧ ଏ ବିହୃତ ॥

ବିପ୍ରଲମ୍ଭ ପୂର୍ବ ରାଗମାନ ଏ ପ୍ରବାସ ।
ତ୍ରିବିଧ ହୁଅଇ ବିପ୍ରଲମ୍ଭର ପ୍ରକାଶ ହେ ॥

ଏଥି ଉତ୍ତାରୁ ନବଯୌବନା ରମଣୀ ସହ ରଙ୍ଗରସ ଜଙ୍ଗମଦ୍ୱାରା ବର୍ଣ୍ଣିତ ହେବା ପରେ ଜଙ୍ଗମ ଅନ୍ୟାନ୍ୟ ବିଦ୍ୟା ଜାଣିଥିବା ବିଷୟ ମନ୍ତ୍ରୀପୁତ୍ର ଆଗରେ ବର୍ଣ୍ଣନା କରିଛି ।

"ଜଙ୍ଗମ କହଇ ଶାଳିହୋତ୍ର ଅଶ୍ୱଶାସ୍ତ୍ର ।
ବୈଦ୍ୟଶାସ୍ତ୍ର ଜ୍ୟୋତିଷ ଶିଳ୍ପୀ ସଙ୍ଗୀତ ମାତ୍ର ଯେ ॥

ଜାଣଇ ବେତାଳ ବିଦ୍ୟା ପୁଣ ଇନ୍ଦ୍ରଜାଲ ।
ଏ ବିଦ୍ୟାରେ ମୋ ଆଗେ କେ ଜଣେ ନାହିଁ ତୁଲ୍ୟ ହେ ॥

ହରଣ ପୂରଣ ପୋଛଣ ସ୍ତ୍ରୀ ଜେ ଉଡ଼ାଣ ।
ଏ ଆଦିର ଗାରେଡ଼ି ବିଦ୍ୟାରେ ମୁଁ ନିପୁଣ ହେ ॥ ୭୦ ॥

ଏହାପରେ ଜଙ୍ଗମର ଚିତ୍ରପଟ ସହ ଭ୍ରମଣ କରିବା ବର୍ଣ୍ଣନା ହୋଇଅଛି ।

"ଯେ ଦେଖିଲା ଏ ଚିତ୍ର ସେ ଚିତ୍ରିତ ହୋଇଲା ।
ଅସନ ଲୋଭେ ଏ ରାମା ଅଧରେ ରଖିଲା ହେ" ॥ ୮୫ ॥

ସପ୍ତଦଶ ଛାନ୍ଦରେ ଜଙ୍ଗମ ମାଧ୍ୟମରେ ଚିତ୍ର ପ୍ରଦର୍ଶନ ସହିତ ପ୍ରୋକ୍ତ ନାୟିକାର ନଖରୁ ଶିଖା ପର୍ଯ୍ୟନ୍ତ ବିସ୍ତୃତ ଭାବରେ ବର୍ଣ୍ଣନା ସାରି ଶେଷରେ କୁମରଙ୍କୁ ପ୍ରଶଂସା କରି ଜଙ୍ଗମ କହିଅଛି । ଏହାପରେ କୁମରଙ୍କ ବିରହାବସ୍ଥା ଜାତ ହୋଇଛି ।

ଚତୁର୍ଦ୍ଦଶ ଛାନ୍ଦରେ ରାଜକୁମାରୀଙ୍କର ଚିତ୍ରପଟ ଦର୍ଶନ କରି କୁମର ଦାରୁଣ ବିରହରେ କୃଶତା ଲାଭ କରିବାରୁ ମନ୍ତ୍ରୀସୁତ ଦୁଇଟି ଶୁକଶାରୀ ଆଣି ଦିଅନ୍ତେ ସେମାନେ ରାଧାକୃଷ୍ଣଙ୍କ ନାମ ସ୍ମରଣ କରିଛନ୍ତି ଓ ବୃନ୍ଦାବନରୁ ବୃନ୍ଦାବତୀଙ୍କ ଆଜ୍ଞାରେ ମୋହନଲତାପାଇଁ ଭ୍ରମଣ କରୁଥିବା ବିଷୟ ପକ୍ଷୀଦ୍ୱୟ ପ୍ରକାଶ କରିଛନ୍ତି ।

ପଞ୍ଚଦଶ ଛାନ୍ଦରେ ମୋହନଲତା ଗ୍ରୀଷ୍ମ ଋତୁରେ ସରୋବରରେ ସ୍ନାନ କରି ଦେବତା ପୂଜା ନିମନ୍ତେ ଆୟୋଜନ କରିଅଛନ୍ତି ଓ ପୂଜା ପରେ ଦେବୀଙ୍କୁ ଆରାଧନା କରିଅଛନ୍ତି । ଏହାପରେ ପ୍ରସାଦ ସେବନ କରି ମୋହନଲତା ପଶାଖେଳରେ ବସିଛନ୍ତି ଓ କ୍ରମେ ରାତ୍ରି ହୁଅନ୍ତେ ରାଜକୁମାରୀଙ୍କର ବିରହ ବେଦନା ଜାଗ୍ରତ ହୋଇଅଛି ।

ଏହାପରେ କବି ମୋହନଲତାର ବିରହ ଦଶା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି ;

"ବିରହୋତ୍କଣ୍ଠିତା ଶୋକ ଜଳେ ଭାସେ ।
ବିପ୍ରଲବ୍ଧା ଶବଦ ତ ରହି କୁଶେ ॥ ୩୮ ।

ଖଣ୍ଡିତା ସମସ୍ତ ନୋହିଇ ମାତରି । କଳହାନ୍ତରି ତା ମାଥେ କି ଟଥରି ॥
ସ୍ୱାଧୀନ ଭର୍ତ୍ତୃକା ଆନନ୍ଦ କଲ୍ଲୋଳେ । ଭାସିଯାଉଅଛି ସ୍ୱାମୀ ସେବାକାଳେ ॥
ପ୍ରୋଷିତ ଭର୍ତ୍ତୃକା ଜୀଇଁବା ମରିବା । ଫଶସ୍ତ ମାନକେ ଆଉ କି କହିବା ॥
ନଷ୍ଟ ଦୂଷଣେ ସଙ୍କେତ ସ୍ଥାନେ ପାଇ । ସମ୍ଭୋଗ ଦେଲେ ନାୟକ ନଟହିଇ ॥

× × ×

ଏକାଳେ ବାଳୀ ନିଦ୍ରାରେ ଅଚେତନ ।
ସ୍ୱପ୍ନଭାବେ ଦେବୀ ଦେଲେ ସ୍ୱଦର୍ଶନ" ॥ ୪୧ ॥

ଦେବୀଙ୍କ ସ୍ୱପ୍ନ ଦର୍ଶନ ପରେ ମୋହନଲତା ଅବଶିଷ୍ଟ ରଜନୀ ବିନିଦ୍ର ରହି କଟାଇଲେ ଓ ଏହାପରେ ଦେବୀ କୁମରଙ୍କୁ ସଚେତନ କରାଇ ଅନ୍ତର୍ଦ୍ଧାନ ହେଲେ ।

## ଷୋଡ଼ଶ ଅଧ୍ୟାୟ—ମୋହନଲତା ସ୍ୱପ୍ନ ଭେଟ

ଶୁଣ ଏମନ୍ତେ ଦିବସ ଅନ୍ତେ ନିଶି ହେଲା ପ୍ରବେଶ ।
ତାରିର କାନ୍ତ ହୋଇଣ କାନ୍ତ ଅମ୍ବରେ ସୁପ୍ରକାଶ ॥ ୧ ॥

ନିଦ୍ରା ସଙ୍ଗରେ ଲୋଚନ ଦ୍ୱାରେ ଏକାଳେ ଉପଗତ ।
ସେ ଦୁଇ ମନ ସ୍ୱପ୍ନ ସଦନ ପ୍ରବେଶ କଲେ ମାତ ॥
ଯେ ଭଗବତୀ ସେ ଦୁଇମତ ଜାଣି ସୁଅନୁଗ୍ରହେ ।
କୁମାରଙ୍କର ଧରି ସତ୍ୱର ଆଣିଲେ ମାୟା ମୋହେ ॥

ଦେଖିଲ ହର ଉପରେ କର ମାଡ଼ି ବସିଲ ଆସେ ।
ପଙ୍କଜ ବାଛୁ କରଣ ଛୁ ଛୁ ହୋଧେ କ ଶୂନ୍ୟେ ଫୁସେ ॥ ୨୯ ॥
ବସି ପଲଙ୍କେ ବସାଇ ଅଙ୍କେ ନରେଖି ଚନ୍ଦ୍ରାନନ ।
ସଞ୍ଚୁ ଚୁମ୍ବନ କରଣ ଦାନ ଅଧରାମୃତ ପାନ ॥ ୭୫ ॥
ମୋହନଲତା ଏତେ ଦୁଃଖିତା ସ୍ୱପ୍ନ ଭାଙ୍ଗି ବାହ୍ୱଲେ ।
ଶଯ୍ୟା ଖୋଜଇ ତହିଁ ନ ପାଇ ହାବନ୍ଧୁ ବନ୍ଧୁ ବୋଲେ ।

**ସପ୍ତଦଶ ଛାନ୍ଦ**—'ମୋହନଲତା ଇନ୍ଦ୍ରଜାଲ ବଲୋକନ'

ନ ଦେଖିବା କଥାହିଁ ଦେଖାଇପାରୁ ବାଳୀ ।
ଶୁଣି ମୂର୍ଚ୍ଛା ତ୍ୟଜି ହସି ନରେଶ ଦୁଲ୍ଲାଳୀ ଯେ ॥

× × ×

ଏହି ଭାବରେ ବହୁ ଦୃଶ୍ୟ ଦେଖାଇ ଶେଷରେ ବାଞ୍ଛିତ ରାଜକୁମାରଙ୍କ ସହ ମିଳନ ଘଟାଇ କେତୁକା ଅନ୍ତର୍ଦ୍ଧାନ ହୋଇଅଛୁ ।

ଅଷ୍ଟାଦଶ ଛାନ୍ଦରେ ବର୍ଷାଋତୁର ବର୍ଣ୍ଣନା କରାଯାଇ ଅଛୁ ।

"ଏକାଳେ ବରଷା ବଶ୍ୱବନ୍ଦନ, ବସିଛୁ ବଡ଼ଘରେ ଏକ ଦନ
ଘନ ଘନ ଘନ ଘଟା ଅନାଇ, ସାଶ୍ରୁଲୋଚନେ ସଖିତେ କହଇ ସେ
ମିତ ଏ ରଖିବ ନାହିଁ ହେ,
ବୋଲେ ଯେ ସ୍ୱର୍ଗେ ଇନ୍ଦ୍ର ଭୂମେନରେନ୍ଦ୍ର ଚକ୍ରବର୍ତ୍ତୀ ଆଉ କାହିଁଯେ" ॥ ୩ ॥

ମଣ୍ଡୁକ ବାଣୀ କାହାକ କର୍ଣ୍ଣାଳ, ବସିଛୁ ବଡ଼ଘରେ ଏକଦନ ।
ମୟୂର ସ୍ୱର ରାଗ ଆଳାପନ, ବରଷା ଧାର ଶବଦ ଗାୟନ ।
ସଙ୍ଗୀତେ ଅଛ ଋତର ଯେ,
ଶିଶୁ ପଶୁ ଫଣୀ କେ ବଶ ନୋହିବ ନପୁଂସକେ ଝର ଝର ଯେ" ॥ ୭ ॥

× × ×

ଉପାସ୍ୟ ଉପଚ୍ଛର କରୁ ମିତ, କଷ୍ଟେ କଷ୍ଟେ ଙ୍ଗର ହେଲ ସଚେତ ।
ରାଧା ବରହେ ଯେହ୍ନେ ବଂଶୀଧର, ସଦାନନ୍ଦ କବସୂର୍ଯ୍ୟ ବ୍ରହ୍ମାର ସେ ।
ସେ କଥା ପଢ଼େ ମାନସ ହେ,
ରସ ମୋଦକ ଏ ଛାନ୍ଦ ନାମ ଏଥି ରସିକ ମାଦକା ପେଷ ହେ" ॥ ୨୫ ॥

ଊନବିଂଶ ଛାନ୍ଦଟିରେ କୁମର ଓ ମୋହନଲତା ମଧ୍ୟରେ ପରସ୍ପର ବିରହଦଶା ଚିଠାଉ ଆଦାନ ପ୍ରଦାନ ହୋଇଛି । ମୋହନଲତା ବିରହରେ ଜର୍ଜରିତ ହୋଇ କୁମରଙ୍କ ନିକଟକୁ ପତ୍ର ଲେଖିବାରେ ଏ ଛାନ୍ଦଟି ସମାପ୍ତ ହୋଇଅଛି ।

ବିଂଶ ଛାନ୍ଦଟି ଶରତ ଋତୁ ବର୍ଣ୍ଣନାରେ ସମାପ୍ତ ହୋଇଛି ।

ଏକବିଂଶ ଛାନ୍ଦରେ ମୋହନଲତା ନିକଟରେ କର୍ଣ୍ଣାଟ ରାଜକୁମାରଙ୍କ ବିଷୟରେ ଜଣେ ଅନିନ୍ଦ୍ୟ ସୁନ୍ଦରୀ କହୁଅଛି ।

“ମୁଁ ଭ୍ରମୁଛି ତା ସମାନ କନ୍ୟା ଖୋଜିବାରେ ।
ଶୁଣିଲି ଏତେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଯେ ॥ ୧୫ ॥
ମୋ ଭଗିନୀ ଗୁଣ୍ଡିଚା ଯାତ୍ରାକୁ ଆସିଥିଲା ।
ଗୁପତ କରି ଏ କଥା ସମସ୍ତ କହିଲା ଯେ ॥ ୧୬ ॥

**ଦ୍ୱାବିଂଶ ଛାନ୍ଦ**—ନାୟିକା ଚିଠାଉ

ବିରହର ଦଶମ ଦଶା ବର୍ଣ୍ଣନା କରି କବି ଲେଖିଛନ୍ତି—

“ଅଳ୍ପ ହସି କହେ ଧନ୍ୟ ସଂସାର । ଏଥିରେ ଅଛି ନବରସ ସାର ॥
ଏ ମଧ୍ୟେ ଶୃଙ୍ଗାର ଅଟଇ ଶ୍ରେଷ୍ଠ । ସେ ସମ୍ବନ୍ଧେ ପ୍ରୀତି ଅତି ଗରିଷ୍ଠ ॥
ସେ ସ୍ନେହ ଯେବେ ସମାନ ଜନେ । ନ ଲଭି କେହି ରହନ୍ତି ଜୀବନେ” ॥୧୪॥

× × ×

ଜନ୍ମ ଅନ୍ଧେ କିବା ନେତ୍ର ପ୍ରଦାନ । ବଧିରେ ହୋଇଲା ବା ଶବ୍ଦଜ୍ଞାନ ।
ରଙ୍କ ହରାଇଲା ଧନ କି ପାଇ । ନରେଶ ନନ୍ଦନ ତେସନ ହୋଇ” ॥ ୨୪ ॥

× × ×

ତ୍ରୟୋବିଂଶ ଛାନ୍ଦରେ ନାୟିକା ଚିଠାଉ ବର୍ଣ୍ଣନା କରାଯାଇଅଛି ଓ ସ୍ୱୟଂବର ଦିନ ରାଜକୁମାରଙ୍କୁ ଉପସ୍ଥିତ ରହିବାପାଇଁ ଅନୁରୋଧ କରାଯାଇଅଛି ।

ଚବିଶ ଛାନ୍ଦରେ ନାୟକଠାରୁ ଚିଠାଉ ପାଇବାର ଛାନ୍ଦଟିର ସମାପ୍ତି ହୋଇଛି ।

**ପଞ୍ଚବିଂଶ ଛାନ୍ଦ**—ନାୟକ ଚିନ୍ତା

"ଲେଖିବାର କେବଳ କର୍ତ୍ତବ୍ୟ ମୋର ।
ସର୍ବାଂଶରେ **ଆସୃତ୍ତ** ବାନ୍ଧିବା ତୋର" ॥ ୭୦ ॥

ନ ପାଇ ତୋ ଶ୍ରୀହସ୍ତ ପତ୍ରିକା ସଖୀ ।
ପିଣ୍ଡେ ପ୍ରାଣ ଆଉ ନ ପାରିବ ରଖି" ॥ ୭୧ ॥

ନବଚ ଛାନ୍ଦରେ ସ୍ୱୟମ୍ବର ନିମନ୍ତେ ଗ୍ରହଣ କରିବା ବିଷୟ ବର୍ଣ୍ଣନା କରାଯାଇଅଛି ।

ସତାଇଶ ଅଧ୍ୟାୟରେ ହିମ ଋତୁରେ ସୁରତ କଳ୍ପନା କରାଯାଇଅଛି । ତତ୍ପରେ ବିବାହର ବିଭିନ୍ନ ଅବସ୍ଥା ପରେ ଯୁଦ୍ଧଖେଳ ଓ ମଧୁଚର୍ଯ୍ୟା ବର୍ଣ୍ଣନା ପରେ ଛାନ୍ଦଟି ସମାପ୍ତ ହୋଇଅଛି । ଏହି ଛାନ୍ଦରେ କେଳାପୁର ବର୍ଣ୍ଣନା ପ୍ରସଙ୍ଗରେ କବି ନିଜ ବିଷୟରେ ଏକ ବାସ୍ତବ ସତ୍ୟ ପ୍ରକାଶ କରିଛନ୍ତି ।

"ମୋ ମାଗୁଣି ରସିକଙ୍କୁ, ଅର୍ଥବିଦ୍ ବୋଲି ଅରସଙ୍କୁ ଯେ
ନ ଶୁଣାଇବ ମୋହ ଗୀତକୁ ସୁଜନେ ହେ ।
କବିସୂର୍ଯ୍ୟ ବ୍ରହ୍ମା କହି, ପାଶୋରି ହେଲେଣି ସେମାନ ମୂର୍ଖ
ଏବେ ଚିହ୍ନେଇ କହି ସୁଜନେ ହେ" ॥ ୯୯ ॥

**ଅଷ୍ଟବିଂଶ ଛାନ୍ଦ**—

"ବରଣ କରିବା ପାଇଁ କେ କେଉଁ ହିଗକୁ ଯାଇ ।
କର୍ଣ୍ଣାଟକ ଦେଶ ନରେଶସୁତ ହାରେ ବ୍ରାହ୍ମଣ ଜଙ୍ଗମ *ଦୁଇ" ॥ ୧ ॥

× × ×

"ଜଙ୍ଗମ ପୃଚ୍ଛେ ବିରସ, କୃମର ଶ୍ରେଷ କେ ରସ
ରସ ଶୃଙ୍ଗାର ପୂର୍ବକେ ବିପ୍ର ଭଣି ଶୁଣି କଲି ଈଷତ ହାସ" ॥ ୨ ॥

---

* ଜଙ୍ଗମ—"ନାଥ ସମ୍ପ୍ରଦାୟର ଏକ ପ୍ରକାର ଗୃହତ୍ୟାଗୀ ଗୋଷ୍ଠୀଙ୍କୁ ଦକ୍ଷିଣରେ ଜଙ୍ଗମ ବୋଲି କୁହାଯାଏ । ଏମାନେ ହଠଯୋଗ ସାଧନାସହ କାବ୍ୟ ଓ ଦର୍ଶନ ଶାସ୍ତ୍ରରେ ମଧ୍ୟ ପାଣ୍ଡିତ୍ୟଲାଭ କରୁଥିଲେ । ଏବେ ମଧ୍ୟ ଦକ୍ଷିଣାଞ୍ଚଳରେ ନାଥ ସମ୍ପ୍ରଦାୟର ଏହି ଗୋଷ୍ଠୀ ଜଙ୍ଗମ ନାମରେ **ଅଭିହିତ** ।"

"ପୁଣି କୁମର ପୁଚ୍ଛଇ, କ କ ମିଶି ରସ ହୋଇ
ବିଭାବ ଅନୁଭାବ ଯେନ ସାତ୍ତ୍ୱିକ ସଞ୍ଚାରି ଗୁଣ ସେ କହ" ॥ ୮ ॥

ବିଭାବ ଦୁଇ ବିଧାନ, ଆଲମ୍ବନ ଉଦ୍ଦୀପନ
ଆଲମ୍ବନ ବେନି ବିଷୟ ଆଶ୍ରୟ ଉଦ୍ଦୀପନ ଗଣନାନ ॥ ୯ ॥

ଭାବକୁ ଜାଣନ୍ତି ଯେହୁ, ତାଙ୍କୁ ଅନୁଭାବ କହ
ନୃତ୍ୟଗୀତ ସଙ୍ଗୀତ ସେ ସାତ୍ତ୍ୱିକ ଅଷ୍ଟ ପ୍ରକାରେ ତ ଲହ ॥ ୧୦ ॥

ବ୍ୟଭିଚାରୀ ଭାବଗଣ, ବତିଶ ପ୍ରକାର ଗୁଣ
ସ୍ଥାୟୀ ଭାବ ପୋଷକା ସେ ତତ୍ସହିତ କାବ୍ୟ ନାଟକ ପ୍ରମାଣ ॥ ୧୧ ॥

ନୃପଜର ସମ୍ଭାଷଣ, କହ ନାଟକ ଲକ୍ଷଣ
ଆଗୁ ପଚାରିବା ହେଲେ ବୋଲି ହସି କହଇ ଭୃଙ୍ଗୀ ବାଣ ॥ ୧୨ ॥

ପଞ୍ଚସନ୍ଧି ଚାରିବୃତ୍ତି, ଚତୁଃଷଷ୍ଟି ଅଙ୍ଗଯୁକ୍ତ
ଷଟ୍‌ତ୍ରିଂଶ ଲକ୍ଷଣ ସହ ସୁଅଳଙ୍କାରରେ ଯେ ଅଳଂକୃତ ॥ ୧୩ ॥

ମହାରସ ମହା ଭୋଗ, ଉଦାତ୍ତ ରଚନା ଯୋଗ
ମହାପୁରୁଷ ସଞ୍ଚାର ସାଧୁ ଗୁଣ ଜନରେ ସେ ଅନୁରାଗ ॥ ୧୪ ॥

ସୁଶ୍ଳିଷ୍ଟ ସନ୍ଧି ଯୋଗ ଏ, ସୁପ୍ରୟୋଗ ସୁଖାଶ୍ରୟେ
ମୃଦୁ ଶବ୍ଦାଭିଧାନେ କବି କରେ ନାଟକ ଏ ରୂପ ହୋଏ ॥ ୧୫ ॥

ଗଦ୍ୟ ପଦ୍ୟ ଯେ ବିଧିରେ, ଘଟନା ସେ ସାଳଙ୍କାରେ
ଏମନ୍ତ ଗ୍ରନ୍ଥ ପ୍ରତିଭାନ୍ୱିତ କବି କରନ୍ତି ସିନା ସଂସାରେ ॥ ୧୬ ॥

× × ×

କାହାକୁ ବୋଲିବା ଗୀତ, ରଞ୍ଜକ ସ୍ୱର ସହିତ
ଅନିବଦ୍ଧ ନିବନ୍ଧ ସେ ହୋଇପୁଣ ଅଟଇ ସେ ଦୁଇମତ ॥ ୧୮ ॥

ତାନ ମାନ ନାହିଁ ଯହିଁ, ଅନିବଦ୍ଧ ତାକୁ କହି
ତାନମାନ ନାଦ ପଦରେ ସହିତ ନିବଦ୍ଧ ବୋଲିଏ ସେହି ॥ ୧୯ ॥

× × ×

କବିସୂର୍ଯ୍ୟ ବ୍ରହ୍ମା ଭଣି, କହିଲି ଜାଣି ନ ଜାଣି
ମଧୁମକ୍ଷି ଯେସନେ ସର୍ବ ପୁଷ୍ପ ମଧୁ ଏକତ୍ର କରଇ ଆଣି ॥ ୪୦ ॥

ଏହାପରେ ରାଜକୁମାରଙ୍କୁ ଚିତ୍ର ମାଧ୍ୟମରେ ଇଚ୍ଛାବରଣ ପାଇଁ ଯିବାକୁ ଅନୁରୋଧ କରି ମହାରାଜାଙ୍କୁ ପୁତ୍ରଙ୍କୁ ପଠାଇବା ନିମନ୍ତେ ସ୍ୱୀକୃତ କରାଇ ବିଦାୟ ନେଲେ ।

ଊନତ୍ରିଂଶ ଛାନ୍ଦରେ ପ୍ରବାସ ଭଙ୍ଗ, ରାଜକୁମାରଙ୍କ ସୈନ୍ୟସାଜ ଓ ଗମନ ଇତ୍ୟାଦି ବର୍ଣ୍ଣନା ହୋଇଅଛି ।

ତ୍ରିଂଶ ଛାନ୍ଦରେ ନାୟକର ଅନୁକୂଳ ଯାତ୍ରା ବର୍ଣ୍ଣନା ହୋଇଅଛି ଏବଂ ଏକତ୍ରିଂଶ ଛାନ୍ଦଟିରେ ନାୟକର ଅଧୈର୍ଯ୍ୟଅବସ୍ଥା ବର୍ଣ୍ଣିତ ହୋଇଅଛି ।

ଦ୍ୱାତ୍ରିଂଶ ଛାନ୍ଦଟିରେ ସ୍ୱୟଂବର ପୂର୍ବରୁ ଉପସ୍ଥିତ ରାଜାମାନଙ୍କର ପରିଚୟ ପ୍ରଦାନ କରାଯାଇଛି ।

"ଆପେ ଜଗନ୍ନାଥ ଦାରୁବ୍ରହ୍ମ ମୂର୍ତ୍ତି ଧରି ଯହିଁରେ ବିଜୟେ ।
ଶ୍ରୀପୁରୁଷୋତ୍ତମେ ନକ୍ଷତ୍ରବର ସେ ଉତ୍କଳଦେଶ ରାଜା ଏଗୋ ॥
ହେଜ ! ଏହା ନାମ ଅଟେ ମୀନ ଧ୍ୱଜ ଗୋ
ଧର୍ମଗଣେ ଜଣେ ରାଜ ରାଜ ଗୋ ॥
ଦ୍ୱିଜଗଣ ମଧ୍ୟେ ଦିବ୍ୟ ତେଜ ଗୋ ।
ସୁଖ ଶୋଭାଜଣି ଦ୍ୱିଜରାଜ ଗୋ" ॥ ୧୨ ॥

୩୩ଶ ଛାନ୍ଦରେ କୁମାରଙ୍କୁ ଦେଖି ସଖୀଗଣ ପରସ୍ପର କଥୋପକଥନ ହୋଇ ମୋହନଲତାଙ୍କୁ ଆଶ୍ୱାସନା ଦେଉଅଛନ୍ତି ।

୩୪ଶ ଛାନ୍ଦରେ ମୋହନଲତା ମାତାଙ୍କ ଆଦେଶ କ୍ରମେ ଦେବୀଦର୍ଶନ ନିମନ୍ତେ ଗମନ କରିଛନ୍ତି । ୩୫ଶ ଛାନ୍ଦରେ ମୋହନଲତାର ସ୍ୱୟମ୍ବର ସଭାକୁ ଗମନ ଏବଂ କର୍ଣ୍ଣାଟ ନରେଶଙ୍କୁ ବରମାଲ୍ୟ ପ୍ରଦାନ ବର୍ଣ୍ଣନା କରାଯାଇଛି । ୩୬ଶ ଛାନ୍ଦଟି ମୋହନଲତାର ବିବାହ ଉତ୍ସବରେ ସମାପ୍ତ ହୋଇଅଛି ।

"କବିସୂର୍ଯ୍ୟ ବ୍ରହ୍ମା କହି, ଏବେ ସେ ମୋ ମନେ ନାହିଁ
ଆରେ ମୋ ପ୍ରଭିଭା, ଅନ୍ୟଜନ୍ମ ଅନୁଭବ ପ୍ରକାଶ କରାଇ" ॥ ୩୩ ॥

୩୭ଶ ଛାନ୍ଦରେ ରତ୍ନପୁର ଗମନ ପୂର୍ବରୁ ମୋହନଲତାର ବେଶ ବର୍ଣ୍ଣନା କରାଯାଇଅଛି ।

୩୮ଶ ଛାନ୍ଦରେ ଅଭିସାର ପ୍ରସଙ୍ଗରେ କବି ଲେଖିଛନ୍ତି ;

ମହାଡମ୍ବରେ ସୁବାସ  କେଳି ସୁବାସକୁ ।
ବାଜେ  କରାଇଲେ କନ୍ଧ୍ର ନୃପ  କୁମରକୁ ଯେ ॥ ୨ ॥

×  ×  ×

"ଇକ୍ଷୁ ପୀଡନେ ଅମୃତ  ରସ ତ ଜନମନ୍ତି ।
ଦଧିମନ୍ଥନେ ସେ ଜନ୍ମଜା କୃଷ୍ଣ  ବେଢ଼ନ୍ତି ଯେ ॥"

**୩୯ଶ ଛାନ୍ଦ**—'କୁମାର ବୃହନ୍ନଳି'

"ଚନ୍ଦ୍ର ଗ୍ଳାଲୁଣୀରେ ବଜୁଳ ଗ୍ଧଣି । ତୋ ରୂପ  କ ବନ୍ଧିଅଛୁ ନିର୍ମାଣି" ॥ ୨ ॥

ଯେହିପରି ୪୦ଶ ଛାନ୍ଦରେ ଗ୍ଳଟିକ୍ତି ପ୍ରସଙ୍ଗରେ କବି  ଲେଖିଛନ୍ତି—

ଅବିଘ୍ନ ମସ୍ତୁ  ଏଥର, ଏ ବଦ୍ୟା ଆରମ୍ଭ  ମୋର
ସନ୍ଧି ଶବ୍ଦ  ବ୍ୟାକରଣେ ଜାଣି
ସନ୍ଧାନ ହେବାରୁ ବୁଦ୍ଧି , ତୋ ଭାବ ମୋ କାବ୍ୟ ସିଦ୍ଧି
ନାଟକ ତୋ ତା ଟଙ୍କ ଚଳନ ବେଣୀରେ ।
ଘନଜଘନେ ଅଳଙ୍କାର  ଅଳଙ୍କାର ଦରଶନରେ
ଶାସ୍ତ୍ର ମାନ ରସ ସୁଚରିତ  ବଚନରେ,
ରତି ପଣ୍ଡିତ ମୁଁ  ବୋଲାଇ  ବଜନରେ ॥ ୧୨ ॥

୪୧ଶ ଛାନ୍ଦରେ ବାହ୍ୟ ସୁରତ ବର୍ଣ୍ଣିତ ହୋଇଛୁ ଓ ୪୨ଶ ଛାନ୍ଦରେ ମୋହନଲତା ସମ୍ଭୋଗ ବର୍ଣ୍ଣନା ହୋଇଅଛୁ ।

ବସନ ପତାକା ଉଡ଼ୁଛୁ  ଖର ଶ୍ୱାସ  ପବନେ ।
କରଜ କୁନ୍ତରେ ସେ  ଅଡ଼ାଅଡ଼ି ନାନା ବଧାନେ ॥
ବନ୍ଧାବନ୍ଧ ବାହୁ ପାଶରେ ଛନ୍ଦାଛନ୍ଦ  ପସ୍ପରେ ।
ହୁଂକାର କରନ୍ତି ଆଟୋପେ ଖଣ୍ଡା କୁଞ୍ଚଳକରେ ॥
ଭଲ ତରବାରି  ଭ୍ରୂଲତା ନାନା ପରିଗ୍ଳନ୍ତି ।
କର୍ଣ୍ଣକମାଣରେ କଟାକ୍ଷ ଶରମାନ ମାରନ୍ତି ॥ ୫ ॥
ମନମତ୍ତ କରି ଆରୋହି  ମାର ସେନାପତି ସେ
ଘୋଟକ ଚଞ୍ଚଳ ତାଟଙ୍କ ପଦ   ପାଦାନ୍ତ କ ସେ" ॥ ୬ ॥

×  ×  ×

ରାଧାକୃଷ୍ଣ ବିଭୂତିରୁ ଯେ ହୋଇଅଛନ୍ତି ଜାତ ।
ମୋହନଲତା ଏ ବିଶ୍ୱବନ୍ଦନ ଅଟେ ରଚିତ ॥ ୫୧ ॥

× × ×

ଅନୁମାନ କର କହିଲି ଏବେ ମୁଁ ବଇରାଗୀ ।
ସଦାନନ୍ଦ କବି ରବିର ଗତି କୃଷ୍ଣାନୁରାଗୀ ॥ ୫୩ ॥

୪୩ଶ ଛାନ୍ଦରେ ରତିବାହୁଡ଼ା ବର୍ଣ୍ଣନା ଓ ୪୪ଶ ଛାନ୍ଦରେ ଅଷ୍ଟମଙ୍ଗଳା ବିଚ୍ଛେଦ ବର୍ଣ୍ଣନା କରାଯାଇଛି ।

**୪୫ଶ ଛାନ୍ଦ—'ଶେଷୋକ୍ତି'**

ଏବେ ଏ କବିତ୍ୱ ବୋଲିବାପାଇଁ, ମନ୍ତ୍ର ଯେସନେ ଔଷଧ ଭକ୍ଷଇ ।
କେତେ ଶ୍ରମରେ କରିଥିଲି ଗୀତ, ବିଘ୍ନରୁ ନୋହିଥିଲି ସମାପତ ଯେ ॥
"ଏଣୁ କଲି ସିନା ପୂର୍ଣ୍ଣ ହେ ।
ଭଣେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ମୋ ଶରଣ ଘନ ବର୍ଣ୍ଣ ହେ" ॥ ୨୧ ॥

**ସମାପ୍ତି ବର୍ଣ୍ଣନା—**

"ମଧୁପୁର ଶ୍ରୀ ଶ୍ରୀ ଭୂପ ଧୀର ବୀରବର ।
ଶ୍ରୀ ଶ୍ରୀ ରାମଚନ୍ଦ୍ର ନରେନ୍ଦ୍ର ବାହାଦୁରଙ୍କର ॥ ୧ ॥
ମୋହନକଳ୍ପଲତା ବୋଲି ଯେ ଛାନ୍ଦ ନାମ ।
ଛୟାଳିଶ ଛାନ୍ଦ ଲେଖି କଲି ଯେ ସମ୍ପୂର୍ଣ୍ଣ ॥ ୨ ॥
ଶ୍ରୀରାମଚନ୍ଦ୍ର ଦେବଙ୍କ ଅଷ୍ଟବିଂଶାଙ୍କରେ ।
ମିଥୁନ ମାସର ଭୋଗ ପନ୍ଦର ଦିନରେ ॥ ୩ ॥
କୃଷ୍ଣ ଏକାଦଶୀ ତିଥି ଭୃଗୁର ବାସରେ ।
ଏ ଦିନ ଯେ ବେଳ ଭୋଗ ଦଶ ଦଣ୍ଡଠାରେ ॥ ୪ ॥
ଗଡର ଉତ୍ତର ପାର୍ଶ୍ୱ ଭୋଟକା ଗ୍ରାମରେ ।
ଲେଖି ପୂର୍ଣ୍ଣ କଲି ଗୀତ ଧାଡ଼ି ପ୍ରବନ୍ଧରେ" ॥ ୫ ॥

## (୧୨) କୀର୍ତ୍ତନ ଉଜ୍ଜ୍ୱଳ

ଏହା କାବ୍ୟଟି ଶ୍ରୀ କିଶୋର ଦାସଙ୍କ କୃତ 'ଶ୍ରବଣ ମଙ୍ଗଳ' ର ଅନୁବାଦ । ଓଡ଼ିଶାବାସୀ ଗୌଡ଼ୀୟ ଭକ୍ତ ଭାବନା କୀର୍ତ୍ତନ ମାଧ୍ୟମରେ ଉତ୍ତମ ରୂପେ ହୃଦୟଙ୍ଗମ କରିପାରିବେ ବୋଲି ଚିନ୍ତା କରି କବି ମିଶ୍ରିତ ବଙ୍ଗଳା ବା 'ବ୍ରଜବୋଲି' ଭାଷାରେ ଅନୁବାଦ କରିଅଛନ୍ତି । ବାଣୀବିହାର ପୋଥି ବିଭାଗରୁ ଏହି ଗ୍ରନ୍ଥଟି ଦେଖିବାକୁ ମିଳିଥିଲା । ଗ୍ରନ୍ଥର ପ୍ରଥମ ପ୍ରସ୍ତାପରେ କବି ଲେଖିଛନ୍ତି ;

"କେମନେ ସାଧକ ନେମ ଯେ ଜାଣି ହିନକୁ ।
କହ ମହାଶୟ ଘଟେ ଯେମନ ମନକୁ ॥ ୧ ॥
ବିଶେଷେ ବ୍ରାହ୍ମନ୍ ତୁମି ବୈଷ୍ଣବ ଉତ୍ତମ ।
ସଦାଶିବ କବିସୂର୍ଯ୍ୟ ବ୍ରହ୍ମା ଯାର ନାମ ॥ ୨ ॥
ଜାନ ହେ ସକଳ ଧର୍ମ ମାର୍ଗେର ବିସ୍ତର ।
ବ୍ରଜେ ରାଧାକୃଷ୍ଣ ଲୀଳା କେମନେ ପ୍ରଚୁର ॥ ୩ ॥
ଆମି ଅତି ଅପାବନ ଦୟା ମୋରେ କର ।
କେମ୍‌ନ ଲୀଳା କେ କାଲେ କହିୟା ବିସ୍ତାର ॥ ୪ ॥

× × ×

"ଶୁନିୟା ଏ ବାଣୀ କବିସୂର୍ଯ୍ୟ ବ୍ରହ୍ମା କହେ ।
ତୁମି ମହା ବଇଷ୍ଣବ ......... ନିଶ୍ଚୟେ ॥ ୫ ॥
ଆମି ଜନ୍ମ ଅନ୍ଧ ମୋରେ ଦିଲେ ଚକ୍ଷୁଦାନ ।
ତାରେ ବିକାଇଲୁ ଅମୋକ୍ଷ କରି ପରାନ ॥ ୧୦ ॥
ଆମାର କଣ୍ଠେ ଥାକିୟା କହିବେନ୍ ସ୍ୱାମୀ ।
ପ୍ରଭୁ ଶ୍ରୀ କିଶୋର ଦାସ ପାଦେ ନମି ॥ ୧୧ ॥
ଶ୍ରବନ୍ ମଙ୍ଗଲ୍ ଶ୍ଳୋକ ସୂତ୍ରେର ବିସ୍ତର ।
ପ୍ରକାଶିବେ ସବ୍ ଲୀଲ୍ କରିୟେ ବିସ୍ତର ॥ ୧୨ ॥

ଗ୍ରନ୍ଥ ଶେଷରେ କବି ଲେଖିଛନ୍ତି ;

ଶୁନ ହେ ବୈଷ୍ଣବଗନ୍ ମୁଁ ତୁମାର ପାୟେ ।
ପଞ୍ଚଗୀତେ ପ୍ରଥମ ପ୍ରସ୍ତାପେ ଶେଷ ହଏ ॥

ଦଶେ ଦଶେ ଦୁଷ୍ପ୍ରେ ତୃଷ୍ଣେ ନର୍ତ୍ତା ହେଲୁ ।
ଷୋହଳ ଗୀତେ ଚତୁର୍ଥ ପ୍ରଦୀପ ସାରିଲୁ ॥

× × ×

ସାକ୍ଷାତ ଚୈତନ୍ୟ ଏହୁ ଗ୍ରନ୍ଥ ନହେ ଆର୍ ।
ଏହାର ଶ୍ରବଣେ ପାପୀ ଭବ ହବେ ପାର୍ ॥

ଇତି ଶ୍ରୀ କୀର୍ତ୍ତନ ଉଜ୍ଜ୍ୱଳ ବଙ୍ଗଳା ଗ୍ରନ୍ଥେ ସର୍ବକାଲ ଲୀଳା ବର୍ଣ୍ଣନେ ନାମ ନବମ ପ୍ରଦୀପ ॥

## (୧୩) ବାଲବୋଧିନୀ ❊

ମାତ୍ର ଗୋଟିଏ ଛାନ୍ଦ ବିଶିଷ୍ଟ କବିଙ୍କ ଏହି କ୍ଷୁଦ୍ର ରଚନାଟି ଓଡ଼ିଶା ମ୍ୟୁଜିୟମରୁ ପଢ଼ିବାକୁ ମିଳିଥିଲା । ଛାନ୍ଦ ଶେଷରେ କବି ବାଳକମାନଙ୍କୁ ମନେ ରଖିବାପାଇଁ ଉପଦେଶ ଦେଇଅଛନ୍ତି ।

"ବାଳକେ ରଖିବ ମନେ ବାଳବୋଧିନୀ ଗୀତ ।
କବିସୂର୍ଯ୍ୟ ବ୍ରହ୍ମାର ସେ କଉତୁକ କଥିତ" ॥

ଏହି ଛାନ୍ଦଟିରେ ବିଭିନ୍ନ ସଙ୍ଗୀତ ରାଗର ଲକ୍ଷଣ ଉଦାହରଣ ସହ ବର୍ଣ୍ଣନା ହୋଇଅଛି ।

"ରାଗ ଚହ୍ଲାଇବା ପାଇଁ । ଶ୍ରୀଗୁରୁ ମନେ ଦରକାଇ ॥
ପଦକୁ ପଦ ରାଗରେ । ନମେ ବଢ଼ିବ ଅକ୍ଷରେ ॥
ନବ ଅକ୍ଷରେ ଭାଗବତ । ରାଗେ ଶୁଣ ଯେଉଁ ଚରିତ ॥
ଯୁଗଳ ଭକ୍ତି ପ୍ରତି ଉକ୍ତି । ଯଉଁ ପ୍ରକାରେ ଶୁଣ ସ୍ତୁତି ॥
ରାଗ ମୁଖାରୀ ଦଶାକ୍ଷରେ । କୃଷ୍ଣ କହନ୍ତି ମଧୁର ସ୍ୱରେ ॥
ମୁଁ କାଳିଆ ଅତି ଅସୁନ୍ଦର । ମୋତେ ରସୁ ବନ୍ଧୁ କି ବନ୍ଧୁର ॥
ପୁଣି କେଦାର ଚକ୍ରକେଳି ବାଣୀ । ଗୋପୀ ଭାଷା ଯେ ଶ୍ରୀରାଧିକା ଭଣି ॥
ଆହେ ମୋହନ ଏ ଚନ୍ଦ୍ର ବଦନ । ଦେଖି ମୋହ ନୋହିବ କେଉଁଜନ ॥
କାମୋଦୀ ଅଣ୍ଟାଳି ବାଣୀରେ ଗୋବିନ୍ଦ । କହନ୍ତି ରାଧାଙ୍କୁ ହସି ମନ୍ଦ ମନ୍ଦ ॥

❊ Cat No. Cy 436, ଓଡ଼ିଶା ମ୍ୟୁଜିୟମ, ଭୁବନେଶ୍ୱର

ମୋତେ ମୋହୁଛ ସମସ୍ତେ ଏହା ସତ ।
ମୁଁ ତତେ ମୋହୁତ ବଡ଼ କେ କହତ ॥
କେଦାର କାମୋଦ ଯେ ବାର ଅକ୍ଷର ।
ଦୁଇ ପାଦ ପ୍ରାନ୍ତେ 'ହେ' ଯେ ଲଗେ ତାହାର ॥
ଶ୍ରୀରାଧିକା କହେ ଆହେ ଗିରିଧର ।
ତୁମ୍ଭଙ୍କୁ ଜଣିବ କେଉଁ ପ୍ରକାର ହେ ॥

"ଚିନ୍ତା ଦଶାକ୍ଷର ରାଗରେ ତେର ଅକ୍ଷର ।
ଗ୍ରୀବା ଗ୍ଳୁଳ କହେ କୃଷ୍ଣ ପ୍ରୀତି ଉତ୍ତର" ॥

× × ×

ମଙ୍ଗଳ ରାଗ ଚଉଦ ଅକ୍ଷରରେ ପ୍ରମାଣ ।
ଚତୁରୀ କହନ୍ତି ରଖ ଚତୁରାଇ ପଣ ॥
ମଙ୍ଗଳ ଗୁର୍ଜ୍ଜରୀ ସେହି ଚତୁର୍ଦ୍ଦଶାକ୍ଷର ।
'ହେ' 'ଯେ' ପ୍ରାନ୍ତେ ଅର୍ଦ୍ଧାକ୍ଷର ବଢ଼ିଲ ଏଥିର ଯେ ॥
"ଧନାଶ୍ରୀ ପନ୍ଦର ଅକ୍ଷର ମନୋହର ହେ ।
ନ ପାରଇ ଏ ଭଙ୍ଗୀକି କଶୋରୀ ଉତ୍ତର ହେ" ॥

× × ×

ରାମକେରୀ ରାଗ ସେ ରୂପ ଷୋହଳ ଅକ୍ଷରେ ।
ଛୁଡ ଛୁଡ଼ ବୋଲ ରମଣୀମଣି ସ୍ମିତ ମୁଖରେ ॥
ଏ ଯେ ଅଠର ଅକ୍ଷରେ ସାର ଚବଣ ମୁକ୍ତାବଳୀ ବାଣୀ ।
ହସି ରସିକ ଧରି ଚିବୁକ ସୁସ୍ୱରେ ଏମନ୍ତ ଭଣି ॥

× × ×

"ଅକ୍ଷରକୁ ଗଣ ବିଂଶତି ପ୍ରମାଣ ବଙ୍ଗଳାଶ୍ରୀ ରାଗ ଏହୁ ।
ଶ୍ରୀହରି ବଚନ ଜାଣିଲୁ ମୋ ମନ ଏଣୁ କି ଏମନ୍ତ କହୁ" ॥

ଅକ୍ଷର କ୍ରମରେ 'ନବାକ୍ଷରୀ' ରାଗଠାରୁ ୨୦ ଅକ୍ଷର ବିଶିଷ୍ଟ 'ବଙ୍ଗଳାଶ୍ରୀ' ରାଗ ପର୍ଯ୍ୟନ୍ତ ଲକ୍ଷଣ ଓ ଉଦାହରଣ ବର୍ଣ୍ଣନା କରି କବି ଅନ୍ୟାନ୍ୟ ରାଗ ଗୁଡ଼ିକର ଲକ୍ଷଣମାନ ଉଦାହରଣ ସହ ବର୍ଣ୍ଣନା କରିଅଛନ୍ତି ।

ଯଥା :-ଗଡ଼ମାଳଆ, ବଙ୍ଗଳ, ମଲ୍ଲୁଣିର, ଭୂପାଳ, ଫୁଲମନସା,ଶଙ୍କରାଭରଣ, କନଡ଼ା, ଗୁର୍ଜ୍ଜରୀ, କଉଶିକ, ସିନ୍ଧୁଡ଼ାହ୍ୱ, ବରାଡ଼ି, ହରଚଉତିଶା, ହଂସଦୂତ, କୁମ୍ଭକାମୋଦୀ, ଲବଙ୍ଗଲତା, କୁନ୍ଦନବରନା, ଘଣ୍ଟଘୋଷବାଣୀ, ଭାଟିଆରୀ, ମାଳଶ୍ରୀ, ପ୍ରଭାତ, ରସକୋଇଲି, ପାହାଡ଼ିଆ କେଦାର ପ୍ରଭୃତି ।

ଗ୍ରନ୍ଥ ଶେଷରେ ବର୍ଣ୍ଣିତ ରାଗମାନଙ୍କର ଅନୁକ୍ରମଣିକା ପ୍ରଦତ୍ତ କରି ଲେଖିଛନ୍ତି ;

"ଅନୁକ୍ରମଣି କି କହିବା ଯେତେ ହେ" ।

"ବଙ୍ଗଳାଶ୍ରୀ ରାଗ ଦାଏ ବିଂଶତି ପ୍ରମାଣ ।
କହଇ ନାଗମ୍ବରଠାରୁ କହିତା ଶୁଣ ॥
ଗଡ଼ମାଳଆ ବଙ୍ଗଳ ଆଦି ମଲ୍ଲୁଣିର ଯେ ।
ଭୂପାଳ ଆଉ ପ୍ରକାରେ ଫୁଲ ମନସା ଯେ ॥
ଶଙ୍କରାଭରଣ କନଡ଼ା ଗୁର୍ଜ୍ଜରୀ ସିନ୍ଧୁଡ଼ାହ୍ୱ ।
କଉଶିକ ବରାଡ଼ି ହରଚଉତିଶା ହ୍ୱ ॥
ହଂସଦୂତ କୁମ୍ଭକାମୋଦୀ ଲବଙ୍ଗଲତା ଯେ ।
କୁନ୍ଦନବରନା ଘଣ୍ଟଘୋଷ ବାଣୀ ସହିତେ ॥
ଭାଟିଆରି ମାଳଶ୍ରୀ ପ୍ରଭାତ ରସକୋଇଲି ।
ପାହାଡ଼ିଆ କେଦାର ପଞ୍ଚବିଂଶ ହୋଇଲି ॥
ବାଳକେ ଶିଖିବ ମନେ ବାଳବୋଧିନୀ ଗୀତ ।
କବିସୂର୍ଯ୍ୟ ବ୍ରହ୍ମାର ଯେ କଉତୁକ କଥିତ ॥"

## (୧୪) ସ୍ୱରଦୀପିକା ବା ସ୍ୱର ଶାସ୍ତ୍ର

ଓଡ଼ିଶା ମ୍ୟୁଜିୟମସ୍ଥ ପୋଥି ବିଭାଗରୁ 'ସ୍ୱରଦୀପିକା' ନାମରେ ଖଣ୍ଡିଏ ତାଳପତ୍ର ପୋଥି ସଂଗୃହୀତ ହୋଇଥିଲି । (କ) ଓ ଭୁବନେଶ୍ୱର ବାଣୀବିହାରସ୍ଥ ପୋଥି ବିଭାଗରୁ 'ସ୍ୱରଶାସ୍ତ୍ର' ନାମରେ ଅନ୍ୟ ଏକ ପୋଥି ସଂରକ୍ଷିତ । (ଖ) କେବଳ ନାମକରଣ ବ୍ୟତୀତ ଉଭୟ ପୋଥିର ବିଷୟ-

(କ) Cat. No. OL/245 Cy/1077 ଓଡ଼ିଶା ମ୍ୟୁଜିୟମ, ଭୁବନେଶ୍ୱର
(ଖ) Cat. No. OL/298 ବାଣୀବିହାର, ଭୁବନେଶ୍ୱର

ବସ୍ତୁ ଅଭିନ୍ନ । ଏହି ଗ୍ରନ୍ଥଟି ମାତ୍ର ୧୨ ଛାନ୍ଦ ବିଶିଷ୍ଟ । କବି ସ୍ୱୟଂ ବ୍ରହ୍ମଚାରୀ ଥିବା ବିଷୟ ପୂର୍ବରୁ ଆଲୋଚିତ ହୋଇଥିଲେ ହେଁ କବିଙ୍କର ଯେ କାମଶାସ୍ତ୍ର ଉପରେ ଯଥେଷ୍ଟ ଜ୍ଞାନ ଥିଲା ତାହା ତାଙ୍କର ଏହି ରଚିତ ଗ୍ରନ୍ଥଟିରୁ ସୁସ୍ପଷ୍ଟ । ତେବେ ଗ୍ରନ୍ଥଟି ପାଠ କଲାପରେ ଏହା ଏକ ଅନୁବାଦ ପରି ବୋଧ ହୁଏ ।

ଶୁଣ ରସିକ ଦେଇ ମନ । ମୀନନାଥର ଯେ କଥନ ॥
ସ୍ମରଦୀପିକା ନାମ ତାର । ପରାକୃତେ କଲି ପ୍ରଚାର ॥
କଠିନ ନୋହିବ କିଞ୍ଚିତ । ଫଳକୁ ବୁଝିବେ ସମସ୍ତ ॥
ପଣ୍ଡିତେ ନୁହନ୍ତି ରସିକ । ପଢ଼ି ନଅନ୍ତି କାଳ ଯାକ ॥
ପରମ ଆନନ୍ଦ ଯେ ରସ । ତାଙ୍କର ନୋହଇ ପ୍ରକାଶ ॥
ମୂର୍ଖ ହୋଇକରି କ ହେବ । ଯାହାର ରସିକ ସ୍ୱଭାବ ॥
ସେମାନେ ଶିଖିବେ ବୁଝିବେ । ମୋ ଶ୍ରମ ସାର୍ଥ ହେବ ତେବେ ॥
ଅନେକ ଶାସ୍ତ୍ର ମାନଙ୍କର । ଆଣି କହିବା ଚଉଁ ସାର ॥
କାମ ଉତ୍ପତ୍ତି ନାରୀଙ୍କର । ରତି ସନ୍ତୋଷ ଯେ ପ୍ରକାର ॥
ପୁରୁଷମାନଙ୍କ ବୋଧକୁ । ରସିକ ମାନଙ୍କ ସୁଖକୁ ॥

× × ×

ଶାସ୍ତ୍ର ଜାଣି ସମ୍ଭୋଗ ଯାର । ରସିକ ଅଟନ୍ତି ସେ ନର ॥
ଅଥ ଗ୍ରନ୍ଥ ଲକ୍ଷଣ ଫଳ । ଅନୁକ୍ରମଣି କରି ମୂଳ ॥
ପ୍ରଥମେ ପୁରୁଷ ଲକ୍ଷଣ । ଲିଙ୍ଗ ଲକ୍ଷଣ ପୁଣ ଜାଣ ॥
ନାରୀ ଲକ୍ଷଣ ସେହିପରି । କନ୍ୟା ଲକ୍ଷଣକୁ ବିଚାରି ॥
ଭଗ ଲକ୍ଷଣ ସେହିମତ । ଅସମ ରତ ସମ ରତ ॥
କାମ ସ୍ଥାନରେ ଯେ ବିଧାନ । ପୁଣି ସେହିକେ କାମ ଗୃଜନ ॥

× × ×

ରସିକ ବୁଝିବାର ପାଇଁ । କାମଶାସ୍ତ୍ରକୁ କହିଲଇଁ ॥
ଏ ଅନୁକ୍ରମଣି ଯେସନ । ଏଥିରେ କରିବା ବର୍ଣ୍ଣନ ॥

× × ×

ଏହାର ୭ଷ୍ଠ ଛାନ୍ଦରେ କବି ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି ;

"ଅନୁଭବି ଏ ଜାଣିବ ଅନୁଭବରେ ଆତ୍ମ ଯାହା ।
ମନ ଯହିଁକି ନୋହିବ କି କହି ହେବ ତାହା ॥
ସଙ୍ଗକ୍ଷ ବିନା ନୋହଇ କବି ସକଳ ଶାସ୍ତ୍ର ଜାଣି ।
ରସିକ ପାଇଁ ଏ କବିସୂର୍ଯ୍ୟ ବ୍ରହ୍ମା ଏ ରସ ଭଣି ॥"

ଦ୍ୱାଦଶ ଛାନ୍ଦ ବା ଶେଷ ଛାନ୍ଦରେ କବି ଲେଖିଛନ୍ତି ;

"ଜାମକୁ ପ୍ରଣମି ସାର, ସୂର ଯପିକା ଅର୍ଥ ବିସ୍ତର ।
ଯାହା ବୁଝିଲି ତାହା କହିଲି, କବିସୂର୍ଯ୍ୟ ବ୍ରହ୍ମା ଭଣି ॥
କେବଳ ମୋ ନାଥ ମୁରଲୀପାଣି ଯେ ।
କେଉଁ ରସ ନାହାନ୍ତି ଜାଣି, ସୁଜନେ ହେ" ॥ ୩୦ ॥

## (୧୪) ଚୌର ଚନ୍ଦ୍ରାମଣି

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଲିଖିତ ଓଡ଼ିଆ ସାହିତ୍ୟର ଇତିହାସ ୩ୟ ଭାଗ ପୃ: ୪୯୪ ରୁ ୪୯୬ରେ ଏହି କାବ୍ୟଟିର ବିଶଦ ଆଲୋଚନା କରାଯାଇଛି । ଏହାର ପାଣ୍ଡୁଲିପି ବା ତାଳପତ୍ର ପୋଥି ଏପର୍ଯ୍ୟନ୍ତ କେଉଁଠାରୁ ହସ୍ତଗତ ହୋଇପାରି ନାହିଁ । ପଣ୍ଡିତ ଦାଶଙ୍କ ବର୍ଣ୍ଣନା ଅନୁସାରେ ଏହା ୨୪ ଛାନ୍ଦ ବିଶିଷ୍ଟ କାବ୍ୟ । ଗ୍ରନ୍ଥ ଆରମ୍ଭରେ କବି ପରମ କାରଣ ନନ୍ଦନନ୍ଦନଙ୍କୁ ବନ୍ଦନା କରି ଶ୍ରୀରାଧାଙ୍କୁ ତାଙ୍କ ଶକ୍ତିରୂପେ ବର୍ଣ୍ଣନା କରିଅଛନ୍ତି ।

ସମସାମୟିକ ପ୍ରତିଭାହୀନ କବିଗଣ ସଦାନନ୍ଦଙ୍କ କବିତା ଚୋରି କରି ନିଜ ନାମରେ ଭଣିତା କରୁଥିବା ହେତୁ କବି କ୍ଷୋଭ ପ୍ରକାଶ କରି ଏହି କାବ୍ୟଟି ରଚନା କରିଥିବା ଜଣାଯାଏ ।

"କବିତା ଚେଷ୍ଟା ଚୋରି କରି
କେତେ ମୋତେ ଶୁଣାନ୍ତି ସଙ୍କୋଚ ଗ୍ରାସ କରି" ॥

କବି ଏହି କାବ୍ୟଟିକୁ ବ୍ରଜପନ୍ଥୀ ବୈଷ୍ଣବ ଓ ଗୁରୁଦତ୍ତ ସିଦ୍ଧଦେହ ରସିକମାନଙ୍କ ନିମନ୍ତେ ରଚନା କରିଥିବା ବିଷୟ ଉଲ୍ଲେଖ କରିଅଛନ୍ତି ।

"ଗୁରୁଦତ୍ତ ସିଦ୍ଧ ଦେହ ଆରୋପଣେ ରସି ।
ଶ୍ରବଣ କର ଏ ଗ୍ରନ୍ଥ ହୋଇ ବ୍ରଜବାସୀ ॥
ବ୍ରଜ ଉପାସକ ବିନା ନ ଶୁଣିବ ଆନ ।
ଏ ବିଷୟେ ସର୍ବଦା ହୋଇବ ସାବଧାନ" ॥ (୧ମ ଛାନ୍ଦ)

## (୧୭) ଶ୍ରୀମଦ୍ ଭାଗବତ ଗୀତା ଅନୁବାଦ

କବିଙ୍କ କୃତ ଏହି ମହାନ୍ ଅନୁବାଦ ଗ୍ରନ୍ଥଟିର ଏକ ତାଳପତ୍ରପୋଥି ପ୍ରଥମେ ଓଡ଼ିଶା ମ୍ୟୁଜିୟମସ୍ଥ ପୋଥି ବିଭାଗରୁ ମିଳିଥିଲା ଓ ପରେ ଅନ୍ୟ ଏକ ତାଳପତ୍ର ପୋଥି ବାଣୀବିହାରସ୍ଥ ପୋଥି ବିଭାଗରୁ ମିଳିଲା । କବି କଟକଟିରେ ଅବସ୍ଥାନ କାଳରେ ଏହାକୁ ଅନୁବାଦ କରିଥିବାରୁ ତାଙ୍କୁ କଟକି କବିସୂର୍ଯ୍ୟ ବ୍ରହ୍ମା ବୋଲି କେହି କେହି କହିଥାନ୍ତି । ଏହି ଗ୍ରନ୍ଥ ଅନୁବାଦର ଆରମ୍ଭରେ ଲେଖିଛନ୍ତି ;

"ସ୍ଫୁରନ୍ତୁ ମୋ ହୃଦେ ଗୋବିନ୍ଦ । ସୁନ୍ଦର ପାଦ ଅରବିନ୍ଦ ॥
ସୁନ୍ଦର ଶ୍ରୀ ନନ୍ଦ ନନ୍ଦନ । ଚରଣେ ମୋହର ବନ୍ଦନ ॥

× × ×

ଧରି ମୁଁ ହରି ପାଦ ତରି । ଭବ ସିନ୍ଧୁକୁ ଯିବି ତରି ॥
ମୋର ଦେବତା ନାରାୟଣ । ଅଟନ୍ତି ଭକ୍ତ ପରାୟଣ ॥
କାଶ୍ୟପ କୁଳରେ ମୋହର । ସ୍ଫୁରିଲା ଉଦୟ ଆମ୍ଭର ॥
କ୍ଷୀର ସାଗରେ ଯେ ରୂପରେ । ମନ୍ଦାର ସୁରତରୁ ସ୍ଫୁରେ ॥
ଶ୍ରୀ ପୀତାମ୍ବର ପିତାମହ । ମୋର ଅଟନ୍ତି ପିତାମହ ॥
ପରମାନନ୍ଦ ବ୍ରହ୍ମାଙ୍କର । ମୁହିଁ ଯେ ଅଟଇ କୁମର ॥
ହରି ସେବକ ନାମ ମୋର । ମୁଁ କବିସୂର୍ଯ୍ୟ ବ୍ରହ୍ମା ଧୀର ॥
ଭଗବତ ଗୀତାଙ୍କର ଗୀତ । ମୋହର ହୋଇଲା ନମିତ୍ତ ॥
ଯେ ଗୀତା ଗୀତ ନବ ସୁଧା । ରସରେ ପୂରିଲା ବସୁଧା ॥
ଏ ଗୀତ ପରମ ମଧୁର । ସୋଦର ଅଟଇ ମଧୁର ॥
ମଧୁର ସାର ଗୀତ ରସ । ମଧୁର ସାର ଯେ ସଦ୍ଗୁଣ ॥
ଭଗବତ ଗୀତା ଗୀତାମୃତ । ମୁଖ ଇନ୍ଦୁରୁ ଉଦ୍ଧୃତ" ॥

—ଧୃତରାଷ୍ଟ୍ର ଉବାଚ—

"ସଞ୍ଜୟଙ୍କର ବାଣୀ ଶୁଣି । ଭଣିଲେ ଧୃତରାଷ୍ଟ୍ର ବାଣୀ ॥
ଅନ୍ତ ପର୍ବତ କୁରୁକ୍ଷେତ୍ର । ବଚନ ସେଥି ଧର୍ମକ୍ଷେତ୍ର ॥
ତହିଁରେ ହୋଇଣ ପ୍ରବେଶ । ପ୍ରକାଶ ରଣ ବାଞ୍ଛା ରସ ॥
ପାଣ୍ଡବେ କୌରବେ ମିଶିଲେ । ଆହେ ସଞ୍ଜୟ କସ କଲେ ॥"

—ସଞ୍ଜୟ ଉବାଚ—

"ଧୃତରାଷ୍ଟ୍ରଙ୍କ ବାଣୀ ଶୁଣି । ସଞ୍ଜୟ କହୁଛନ୍ତି ପୁଣି ॥
ପାଣ୍ଡବ ସେନାରେ ଭରତ । ବ୍ୟୂହ ଯେ ହୋଇଲା ନିର୍ମିତ ॥
ସେ କାଳେ ରାଜା ଦୁର୍ଯୋଧନ । ପାଣ୍ଡବ ସୈନ୍ୟଙ୍କୁ ଚାହିଁଣ ॥
ଦ୍ରୋଣାଚାର୍ଯ୍ୟଙ୍କ ସମୀପକୁ । ଆସି ଭଣିଲେ ବଚନକୁ" ॥

× × ×

## (୧୭) ଜଣାଣ

କବିଙ୍କ ରଚିତ ଅନେକ ଜଣାଣ ଓଡ଼ିଶା ମ୍ୟୁଜିୟମସ୍ଥ ଗ୍ରନ୍ଥାଗାର ଓ ଭୁବନେଶ୍ୱରସ୍ଥ ବାଣୀବିହାର ପୋଥି ବିଭାଗରୁ ସଂଗୃହୀତ ହୋଇଅଛି । ତନ୍ମଧ୍ୟରେ 'ନୂଆଗଡ଼ ଲଡ଼ୁକେଶ୍ୱର' ଙ୍କ ଜଣାଣ ପାଦ ଓ ଶ୍ରେଷ୍ଠ ମନେ ହୁଏ । ଏହି ଜଣାଣଟି ୩୪ ପଦରେ ରଚିତ ଓ ପ୍ରତି ପଦ ଚାରିପାଦ ବିଶିଷ୍ଟ । କବି ନିଜର କୁଳଦେବତା ନୟାଗଡ଼ ଲଡ଼ୁକେଶ୍ୱର ମହାଦେବଙ୍କ ଉଦ୍ଦେଶ୍ୟରେ ଏହା ରଚନା କରିଅଛନ୍ତି ।

"କୃପାଳୁ ଲଡ଼ୁକେଶ, ବୋଲି ଜଗତେ ଘୋଷ
ଶୁଣିବାରୁ ଦୁଃଖିତ ନର
କରି ଦର୍ଶନ ତବ, ଶ୍ରୀମୁଖ ସଦାଶିବ,
ଶୋକାବ୍ଧି ହୋଇବାକୁ ପାର ହେ, ଲଡ଼ୁକେଶ
କରିବ ବୋଲି ହାହି ଈଶ । କଲି ମୁଁ ଶ୍ରୀପଦେ ବିଶ୍ୱାସ" ॥
କେଡ଼େ ଅଦ୍ଭୁତ ଏହି, କୃଶାନୁ ପରି ଦହି
ଦେଲା ମୋ ମନେ ଚିନ୍ତା ହାସ ହେ ଲଡ଼ୁକେଶ" ॥ (୧)

"ଖେଦାର୍ଣ୍ଣବରେ ପଡ଼ି ଗଲ ହେ ଗର୍ଭ ବୁଡ଼ି
ନଦେଲେ ତବ କୃପା ନାବ ।
ଖସିଯିବ ମୋ ଜୀବ ଜୀବ ଧବ ହେ ଶିବ
ଅକାର୍ତ୍ତି ମାତର ରଖିବ ହେ ଲଙ୍ଗୁଳେଶ ॥
ଖରେ ନଶୁଣ ମୋର ଗୀର, ଖିଆଲ ପର କମା କର ।
ଖଟି ତୁମ୍ଭ ଚରଣ ହେଉଛି ଅକାରଣ
କରୁଛ ମୂଢ଼େ କ ବଶ୍ବର ହେ ଲଙ୍ଗୁଳେଶ ॥ ୨ ॥
ଗ୍ରହ ସମୂହ ଗିଳ ହେଉଛନ୍ତି ହେ ଶୂଳ
ଆପଣଙ୍କ ପରଶ୍ବରକୁ ।
ଗଡ଼ିଲେ ହରସ୍କୁଣ୍ଡ ନ ଲାଗଇ ବପତ୍ତି
ଏଣୁ ମୁଁ ଭଜଲ ତୁମ୍ଭଙ୍କୁ ହେ ଲଙ୍ଗୁଳେଶ ।
ଗିରଜା କାନ୍ତ ବନା କେହ୍ବ, ଗତ ଦେବାକୁ ଅନ୍ୟ ନାହିଁ
ଗରଷ୍ଟ ତାପ ସହ୍ବ ନ ପାରଲ ହେ ଲଙ୍ଗୁଳେଶ
କର ତୁମ୍ଭେ ସାହ୍ବ ହେ ଲଙ୍ଗୁଳେଶ" ॥ ୩ ॥

ଏହ୍ବ ଜଣାଣଟିର ଶେଷରେ କବଙ୍କ ନାମରେ ଭଣିତା ଦହ୍ବଅଛି ।

"କ୍ଷମା ସାଗର ଗରଳ- କଣ୍ଠକ ଶ୍ରୀପସ୍କର-
କମଳ ଯୁଗଳ ମକରନ୍ଦ
କ୍ଷାଳିତ ଲାଳସରେ ମନକୁ ଅଳ କରେ
ଅରକ୍ଷ ଦ୍ଵିଜ ସଦାନନ୍ଦ ହେ ଲଙ୍ଗୁଳେଶ ।
କ୍ଷୋଣିରେ କେତେ ମୋହପର, କ୍ଷୀଣକର୍ମାକୁ ଅଛ ତାର
କ୍ଷୋଭ ସିନ୍ଧୁରୁ ପାର କର ହେ ଲଙ୍ଗୁଳେଶ
ଗୁକର ପକାଉଛ ଦୂର ହେ ଲଙ୍ଗୁଳେଶ" ॥

'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଏହ୍ବ କ୍ରମରେ ରଚିତ ଏହ୍ବ ଜଣାଣଟି ଅତ୍ୟନ୍ତ ମର୍ମସ୍ପର୍ଶୀ ।

## (୧୮) ଶ୍ରୀଚୈତନ୍ୟ ଜଣାଣ (ପୋଇବାଣୀ)

"ଆହେ କୃଷ୍ଣ ଚଇତନ୍ୟ ପତିତପାବନ ଏ ଦୀନରେ ବାରେ କୃପା କର ।
କୋଟି କୋଟି ଦୁରାଚାର କରିଛ ଉଦ୍ଧାର, ଦ୍ରବୀଭୂତ ହୁଅ ଏକବାର ॥ ୧ ॥
ତୁମ୍ଭବିନା ଏ ସଂସାର ଭିତରେ ମୋହର, କେ ଅଛି ଶରଣ ମନେ କର ।

ଯେବେ କରୁଅଛ ହେଳା, ଭବଜଳେ ଭେଳା
ବୁଡ଼ିଲାଟି ହେ ଉଦ୍ଧରି ଧର" ॥ ୨ ॥

× × ×

ତବ ପ୍ରିୟ ଗଦାଧର ଯେଠାରେ ତାଙ୍କର,
ଯେଉଁ ରୂପେ ହେବ ସେବାକାଶ ।
ତହିଁ ତୁମ୍ଭେ ଯେଉଁ ମୂର୍ତ୍ତି ତୁମ୍ଭ ତାଙ୍କ ପ୍ରୀତି
ଆସ୍ୱାଦିବ ସଦା ମନ ଭରି ॥ ୧୩ ॥
ଜାଣ ଚତୁର୍ଦ୍ଦଶ ପଦ ସମ୍ପୂର୍ଣ୍ଣ ଏ ଛନ୍ଦ, ଗଉରଚନ୍ଦ୍ରଙ୍କୁ ଏ ଜଣାଣ ।
ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଲଭୁ କାର୍ଯ୍ୟ
ପଢ଼ିଲେ ପାପରୁ ପରିତ୍ରାଣ" ॥ ୧୪ ॥

## (୧୯) ମନଃ ଶିକ୍ଷା ଜଣାଣ

ଏହି ଜଣାଣଟି ମାତ୍ର ପାଞ୍ଚଗୋଟି ପଦରେ ରଚିତ ଓ ଶେଷରେ କବିଙ୍କ ନାମରେ ଭଣିତା ରହିଅଛି ।

"ଭଜିଲୁ ନାହିଁ ହରିନାମ ଦିନେ, ମଜ୍ଜିଲୁ ବିଷୟରେ ନିଶିଦିନେ ॥
ହେଜିଲୁ ନାହିଁ, ଦିବ୍ୟମାନବ ତନୁ ବହି
ବୃଥା ସକଳ କୃଷ୍ଣ କଥା ବିନେ ॥
ବରଜ କୁସଙ୍ଗ ସଙ୍ଗ ଏବେ । ଅରଜ ତୁ ସାଧୁସଙ୍ଗ ଲବେ ।
ବରଜବନ୍ଧୁ ଗୁଣ ଗାଥା ଗାଇବା କର
ନିତ୍ୟ ହେଳା ନୋହୁ ଲବେ ॥ ୧ ॥

× × ×

କଦାପି ନକର ଆନ କାମନା
ସଦାନନ୍ଦ କାରଣ, ପଦାମ୍ବୁଜେ ଶରଣ
ସଦା ହୁଅଛୁ ଦିନେ ତୋଷମନା" ॥ ୫ ॥

## (୨୦) ଶ୍ରୀ ନୀଳାଦ୍ରିନାଥ ମହିମା ଜଣାଣ

ରାଗ-କାମୋଦୀ

କବିଙ୍କର ଏହା ସର୍ବ ଜନାଦୃତ ଲୋକପ୍ରିୟ ଜଣାଣ ।

"ମହିମା ଶୁଣିମା ହେଉ ଗର୍ବବ ଡ଼ାକ, ନିରକ୍ଷ ଜନକୁ ରଖ ପଙ୍କଜ ମୁଖ ।
କୃପା ସାଗର କାହିଁକି, ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେଁ ସଳଖ ॥ ୧ ॥

× × ×

କହେ ସଦାନନ୍ଦ ଛାର, ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେତ୍ରେ ନ ଦେଖ" ॥ ୪ ॥

## (୨୧) ଚଉତିଶା

କବିଙ୍କ ରଚିତ କେତେଗୁଡ଼ିଏ ଚଉତିଶା ଯଥା : ଦୂତୀ ଚଉତିଶା, କୋଇଲି ଚଉତିଶା, ସଙ୍ଗିନୀ ଚଉତିଶା ପ୍ରଭୃତି ଓଡ଼ିଶା ମ୍ୟୁଜିୟମ ଓ ବାଣୀବିହାର ପୋଥି ବିଭାଗରେ ସୁରକ୍ଷିତ । ଏଗୁଡ଼ିକ ୩୪ ପଦ ବିଶିଷ୍ଟ ଓ ରାଧାକୃଷ୍ଣ ଲୀଳାତ୍ମକ ।

### ଦୂତୀ ଚଉତିଶା *

"କହନ୍ତି ରାଧିକା ଦୂତୀ କାଲି ଘର ଆଣି,
କାଳିନ୍ଦୀରେ ସ୍ନାନ କରି ବୁଡ଼ାଇଲି ପାଣି
କାଖେ କୁମ୍ଭ ଘେନି ମୁଁ ଆସିବାର ବେଳେ,
କୋଟିଏ କନ୍ଦର୍ପକଳା ଉଭା ତରୁ ମୂଳେ ଦୂତୀପୋ ଗୋ ॥ ୧ ॥

× × ×

ଜଗତ ଜୀବନ ହରି ଯଶୋଦା ନନ୍ଦନ,
ଯମୁନାରେ ପଶି କଲେ କାଳୀୟ ମର୍ଦ୍ଦନ ।
ଯାହାର ମହିମା କଥା କହୁଁ ନ ସରଇ,
ଯୁବତୀମାନଙ୍କର ସେ ଗରବ ଗଞ୍ଜାଇ ଦୂତୀପୋ ଗୋ ॥ ୮ ॥

---

* Cat. No. OL/751 (w) ଓଡ଼ିଶା ମ୍ୟୁଜିୟମ, ଭୁବନେଶ୍ୱର

"ଝିନ ବସନ ପାଟ ପିନ୍ଧଥାଇ ଟାଣି,
ଝଟ ଝଟ ବସ୍ତ୍ରଜଇ ରତ୍ନ ଯୋଡ଼ଆଣି ॥
ଝୁମ୍ପା ଝମ୍ପା ପାଟ ଥୋପି ବେଣୀରେ ଲମ୍ବାଇ,
ଝମକ ଗୁଲନ୍ତେ ପାଦେ ନୂପୁର ବାଜଇ, ଦୂତୀସ୍ୱେ ଗୋ" ॥ ୯ ॥

× × ×

"ଟେକଣ ନୟନ ଦୂତୀ ଗୁହିଁଦେଲେ ମୋତେ,
ଟହ ଟହ ହସୁଛନ୍ତି କହିବଲିଁ କେତେ ।
ଟାଣ ପଣ ସବୁ ମୋର କେଣିକ ଗୋ ଗଲା,
ଟଳି ପଡୁଥିଲି ମୋତେ ଦଇବ ରଖିଲା, ଦୂତୀସ୍ୱେ ଗୋ" ॥ ୧୫ ॥

## କୋଇଲି ଚଉତିଶା *

"କୋଇଲି, କି କଲେ କମଳମୁଖୀ,
କରିଗଲେତ ମୋତେ ନିରେଖି
କାନ୍ତ ଯେ ଆଲିଙ୍ଗନେ ସ୍ୱାମୀ
କାହିଁ ଗୋପପୁର କାହିଁ ମଥୁରା ଲୋ
କମଳ ଭବ କାହାନ୍ତ କରେ,
କି କରିଥିଲି କି କଲା ମୋହରେ ଲୋ କୋଇଲି ॥ ୧ ॥
"କୋଇଲି ଘଟଣ ନନ୍ଦନନ୍ଦନ ଘନ ବରନଆ ସୁବରଣ,
ଯେନ ଘୂମିତ ପଙ୍କଜ ଡୋଳା ଘୋଷିଲେ ନ ସରେ
ତା ଭଙ୍ଗି ଲୀଳା ଲୋ
ଘର ତ କଲା ମନନୟନ, ଘୋଷି ହେଉଛି କପୋଛ ଯେସନ
ଲୋ କୋଇଲି" ॥ ୪ ॥

× × ×

"କୋଇଲି ; ଡଳି ଡ଼ଳି ନାଚିବାର, ଡାଳି ଗ୍ରୀବା ବାଙ୍କେ ମୋଡ଼ିବାର
ଡ଼ଗ ମେଳିବାର ଡ଼ୋଳା ନିଖୋଷି, ଡ଼ମ ନୋହେ ଏତେ ଆସୁଛି ଦଶି ଲୋ
ଡଳିବଟି ଅଘଟ ଜୀବନ, ଡିର କାଢ଼ କୃଷ୍ଣ ନେଲା କେ ଆନ ଲୋ ॥ ୧୪ ॥

× × ×

* Cat No. OL/896 (A) ବାଣୀବିହାର ପୋଥି ବିଭାଗ

କୋଇଲ, ସ୍ନେହେ ମୁଁ ଯେ ତାଙ୍କ ଗଣ୍ଡେ, ଭିଡ଼ଇ ସେ ଦନ୍ତ ଦଣ୍ଡେ ଦଣ୍ଡେ
ଭଗବାନ କ ସେ ଦୋଷ ଧରି, ସାଇ ସଙ୍ଗେ ଗଲେ ମଥୁରାପୁରୀ ଲୋ
ଭରସା ମୋର ଦେଲେ ତ ସାରି ;
ଭୁଲାଇଲେ ତାଙ୍କୁ କେଉଁ ନାଗରୀ ଲୋ ॥ ୨୪ ॥

× × ×

କ୍ଷୀରଦ ଦେବ ରାଧା କହଇ, କ୍ଷମେ କବିସୂର୍ଯ୍ୟ ବ୍ରହ୍ମା ଲେଖଇ ଲୋ ॥ ୩୪ ॥

## ସଙ୍ଗିନୀ ଚଉତିଶା *

"କେଉଁ ରସିକ ରସନିଧି ବଚନ, ଚନ୍ଦ୍ର········ସଙ୍ଗିନୀ
କେନ୍ଦୁ ପାଶୋରବ ତୋତେ ରେ, କାମଦେବ ଇନ୍ଦ୍ରଜାଲ କରୁଛି କ
କରତେ ଦେଖାଇ ମୋତେ ରେ, ସଙ୍ଗିନୀ ॥ ୧ ॥
କ୍ଷାନ୍ତ ଅଛୁ ଏହା ଅଙ୍ଗ ଯେହ୍ନେ ଯତ୍ନେ ଥରେ ହସାଇ ନ ଜାଣିରେ
କ୍ଷମାନିଧିଙ୍କୁ କହିବୁ ଏବେ ତୁ ଚତୁରାକ୍ଷ କୁଶ ପାଣିରେ ସଙ୍ଗିନୀ
କ୍ଷଣେ ବିଳମ୍ବ ନ ସହୁରେ, କ୍ଷୀଣ ସଦାଶିବ କବିସୂର୍ଯ୍ୟ ବ୍ରହ୍ମା
ପ୍ରେମଧାମ ନାମ ବହୁରେ" ॥ ୩୪ ॥

× × ×

(କ) "କହଇ ନାଗରୀବରରେ ସଖୀ, କେଉଁ ସଜନୀ ଆଗରରେ
କାଢ଼ିଲି ଓଢ଼ଣୀ ହୋଇଲି ବାହାର,
ଶ୍ୟାମବନ୍ଧୁ ହେଉ ମୋର ରେ ॥ ୧ ॥

"ଖଳଙ୍କୁ ନାହିଁ ମୋ ଡ଼ରରେ ସଖୀ, ଖଟିବି ଚରଣେ ତାର ରେ ।
କାଢ଼ିଲି ଓଢ଼ଣୀ ହୋଇଲି ବାହାର, ଶ୍ୟାମବନ୍ଧୁ ହେଉ ମୋରରେ ॥ ୨ ॥
ଜ୍ଞାନ ଧ୍ୟାନ ସବୁ ମୋର ରେ ସଖୀ, ଗୋବିନ୍ଦ ନନ୍ଦକିଶୋର ରେ
ଗୁପତ କରି ମୁଁ କହୁଅଛି ପାପ ପୁଣ୍ୟକୁ ନାହିଁ ମୋ ଡ଼ର ରେ ॥ ୩ ॥

---

* Cat No. OR. Ms/105, ଓଡ଼ିଶା ମ୍ୟୁଜିୟମ
ତାଳପତ୍ର ପୋଥିଟିର ଅନେକ ପତ୍ର କୀଟଦ୍ରଷ୍ଟ ତଥା ଜୀର୍ଣ୍ଣ ହେତୁ
କେତେକ ପଦ ଉଦ୍ଧାର କରିବା ସମ୍ଭବ ହୋଇ ନାହିଁ ।
(କ) Cat. No. OL/896 (A) ଓଡ଼ିଶା ମ୍ୟୁଜିୟମ

ଯେଣୁ ଥା ମନରେ ଏତେ ତରେ ସଖି, ଘୋର ଅରଣ୍ୟ ବନସ୍ତରେ ।
ଘନଶ୍ୟାମ ଚନ୍ଦ୍ରମୁଖ ଚାହୁଁ ଥିଲେ ବୈକୁଣ୍ଠ ଛାର ବା କେତେ ରେ ॥ ୪ ॥

× × ×

ନଷ୍ଟେ ଏହ୍ବ କଥା ମୋତରେ ସଖି ଠୂଳ ପୁରୁଷ ଉତ୍ତମ ରେ ।
ଠିକେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଲଭି ହେଲେ ପୂର୍ଣ୍ଣ କାମ ରେ ॥ ୧୨ ॥
ଶରଣ ଗଲି ପ୍ରମାଣ ରେ ସଖି, ଶ୍ୟାମବନ୍ଧୁ ଶ୍ରୀଚରଣ ରେ ।
ସେ ଯେବେ ଛାଡ଼ିବେ ମୁଁ ତ ନ ଛାଡ଼ିବି ସେ ବିନା କେ ପରିତ୍ରାଣରେ ॥୩୦॥

× × ×

କ୍ଷଣ ରସିକାର ରସରେ ସଖି, କ୍ଷିତିରେ ହେଉ ପ୍ରକାଶ ରେ
କ୍ଷମେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
ମୁଁ ସାଧୁଚରଣ ଦାସ ରେ ॥ ୩୪ ॥

## (୨୨) ଚୌପଦୀ

"ମନ ମୋହନା ରେ, ଅଭସ୍ତେ ମାନ କରନା (୧)
ମଦନ ଜୟ ପତାକା ଉଡ଼ାଇବୁ ସିନା
ଦାସ ଜନଙ୍କୁ ନିରସ କରୁ କ ସକାଶ କର୍ପୂର ହାସୀ ରେ ॥
ଆସ କୋଳେ ବସ ଭାଷ ପରକାଶ ନାଶ ଦୁଃଖ କୃପା ରାଶି ରେ ।
ହାସ ବିଷ ବାହୁ ପାଶ ଦେଇ ବୃଷ ଶରସନେ ଦୃଶ ଯେ
ଶିରେ, ଏକ ପ୍ରଭୁପଣ ପର ହାତରେ ନାଶି ରେ" ॥ ୧ ॥

× × ×

ଶାରଦ ଚନ୍ଦ୍ର ଚକୋରୀ ଅପବାଦ ଅତି ଶ୍ରୀକର ପ୍ରସାରି ରେ ।
ଧାରି ପ୍ରେମମଦ ନାରୀମଣି ହୃଦ ଉଦାର ନୟନୁ ନିବାରି ରେ ।
ସାରି ସବୁ ଖେଦ ଗୃହ ଚନ୍ଦ୍ରବାଦ ଭରି ଅନାଦି ବିସ୍ତାରି ରେ ।
କବିସୂର୍ଯ୍ୟ ବ୍ରହ୍ମା ଚିତେ ବେ ରାଧା ମୁରାରି ରେ" ॥ ୪ ॥
ତୋହରି ଆଡ଼ରୁ ଛାଡ଼ିଲୁ ମୋତେ, ଗଣି ଧନ ମୁଁ କରିଥିଲି ତୋତେ (୨)
କଉଁ ସଖି ଶିକ୍ଷା ଧରିଲୁ ଚିତ୍ତେ, ମୁଁ ଚାହୁଁ ନଚାହୁଁ ଯାହା କାଞ୍ଚତେ ॥ ୧ ॥

---

୧) OR. Ms 105, (୨) Cy. 20 ଓଡ଼ିଶା ମ୍ୟୁଜିୟମ, ଗ୍ରନ୍ଥାଗାର

"କହ କ ଦୋଷକୁ ରୁଷିଣ ଏତେ, ଦାସ ନାଶ ଯଶ ପାଇବୁ କେତେ ।
କୃଷ୍ଣ କାହ୍ନୁଁ ରାଧା ରୁହିଁଲେ ସିଂତେ, କବିସୂର୍ଯ୍ୟ ବ୍ରହ୍ମା ଗାଆନ୍ତି ଗୀତେ ॥ ୪ ॥

× × ×

"ତୋହ ମୋହଭାବ ଭୁବନ ଦୁର୍ଲ୍ଲଭ ରତି ପତି ଜୟ ବାନା ରେ ।
କବିସୂର୍ଯ୍ୟ ଥାଉ ଧୁଣ୍ଡୁରା ଦଆଉ ପ୍ରୀତି କରିବାକୁ ମନାରେ" ॥ ୪ ॥

× × ×

ପ୍ରେମ ବଇକୁଣ୍ଠ ବାସ ଯଶ କରିଥାଇ ଯା ମାନସ ।
ତହିଁରେ ବଧିତ ମତି ପାତାଳ ପୁନର୍ବୃତ୍ତି ।
ପୁଣି ମିଳିବାକୁ ଦୂର ସେ ସୁଖ ସମ୍ପତ୍ତି ।
ସଜନୀ ଭାରତୀ ଇତି ଶ୍ରୁତି ମଣ୍ଡନ କରିଣ ସନ୍ତ ।
ହସିଲ ଯେ ମଥାତୋଳି ଧର୍ଯ୍ୟ ଗାମ୍ଭୀର୍ଯ୍ୟ ଇଙ୍ଗିତ ।
କବିସୂର୍ଯ୍ୟ ବ୍ରହ୍ମା ଭଣେ ଯେଣୁ ବାମା ଜାତି ॥ ୪ ॥

× × ×

ଆସ ପୀତବାସ କୃଶ ଦାସ ପରି ସେବୁ ସେ କ୍ଷଣ
ରାସ ରସେ ରସ ବିରସ ନାଶ ପ୍ରସନ୍ନେ
ବଳି ଶୁଣି ଭଳି ରତେ ରୁହିଁ ଦୂରୁ ରୁହିଁଲ ସିଂତେ
ଆଳି କବିସୂର୍ଯ୍ୟ ତେ ବନମାଳୀ ମିଳନେ ॥

× × ×

## (୨୩) ଶ୍ରୀରାଧାକୃଷ୍ଣ ଝୁଲଣ ଗୀତ

"କୁଞ୍ଜ ମନ୍ଦିରେ ଦମ୍ପତି । ଝୁଲେ ସୁରସ ସମ୍ପତ୍ତି ॥ ୧ ॥
ରଙ୍ଗ ତରଙ୍ଗ ହିନ୍ଦୋଳେ । ଝଂକୃତ ଘଣ୍ଟି କନ୍ଦଳେ ॥ ୨ ॥
କର୍ଣ୍ଣେ ମକର କୁଣ୍ଡଳ । ଆନ୍ଦୋଳେ ଗଣ୍ଡ ମଣ୍ଡଳ ॥ ୩ ॥
ବୃଷ୍ଟି ଶବଦ ଝର୍ଝର । ଆନନ୍ଦ କବି ସୂର୍ଯ୍ୟର" ॥ ୪ ॥

"ରତ୍ନ ଖଚିତ ହିନ୍ଦୋଳେ । ଝୁଲନ୍ତି ରସେ ଯୁଗଳେ ॥ ୧ ॥
ମେଘଙ୍କର ଘଡ଼ଘଡ଼ି । ମଣ୍ଡୁକ ଡାହୁକ ରଡ଼ି ॥ ୨ ॥
ବୃଷ୍ଟି କରଇ ଝର୍ଝର । ନିରଧାର ମନୋହର ॥ ୩ ॥

ବକୁଳ ଚଢନ୍ତି ଉଠେ ।     କୃଷ୍ଣ ଭୁଜ ରାଧା କଣ୍ଠେ ॥ ୪ ॥
ଗୁଞ୍ଜିତ ପୁଚ୍ଛ ତାଳେ ଗୀତ ।     କବିସୂର୍ଯ୍ୟ ବ୍ରହ୍ମା ରତ" ॥ ୫ ॥

ଝୁଲଣ କୁଞ୍ଜେ ଝମ ଝମ ପାହୁଡ଼ରେ ।
କେ ବୋଲେ ଝିଙ୍କ ଦଉଡ଼ିକ ଦଉଡ଼ିରେ ॥ ୧ ॥

କର କଙ୍କଣ ଝମ ଝମ ପ୍ରବଳରେ ।
ପବନରାଜ ବଜାସ୍ତ ପ୍ରବଳରେ ॥ ୨ ॥
ଘନ ଘନ ଘଡ଼ଘଡ଼ି ଧଂସା ରଞ୍ଜନୀ ରେ ॥ ୩ ॥
"ଡାହୁକ ଡାକେ ଖୁଣ୍ଟିଆ ତର୍ଜନରେ ।
ଡ଼େଙ୍କିକା ତାଳେ ଏ ରସ ଉଚ୍ଛୁଳରେ ॥
ଶ୍ରବଣେ କବିସୂର୍ଯ୍ୟର ବୈଭବରେ" ॥ ୩ ॥

"କୁଞ୍ଜେ ଅଳି ଗୁଞ୍ଜେ ମିଳି ରଞ୍ଜକ ସ୍ୱର ଗୋପୀକା ।
ଝୁଲେ ନାଗରବର ମୋହନ ସହ ରାଧିକା ॥
ଗୂଢ଼ ସ୍ନେହ ନଳ କୁବେର କବିସୂର୍ଯ୍ୟର ବରସାଧିକା" ॥

"ଚନ୍ଦ୍ର ବଦନ୍ ରାଧା ପ୍ୟାରୀ, ଯୌବନ୍ ମଦ୍ ରସତେ ଧାରି ।
ଝୁଲତମ୍ ଏ ମତ୍ ହାଥ୍ ସେ ସେ ବାଂଶୀରୀ ।
ଦୌନି ମଗନ୍ ଦୋହେ ପ୍ରବୀନ୍ ଭଗତ୍ ଭାଓଁ ରସ୍ତୁରୀ ।
ବାଜ୍‌କା କୁଳ୍ ତାଲ୍ ସ୍ନେହ କବିସୂର୍ଯ୍ୟ ବ୍ରହ୍ମା ବଦରି" ॥

ଦୋ କୁଞ୍ଜେ ଝୁଲେ, ଗଣ୍ଡମଣ୍ଡଳେ କୁଣ୍ଡଲ୍ ଦୋଲେ ।
ଜୈସେ ଦାମୀ ସେ ଜଗମଗାଓ
ସଜଲ୍ ଜଲଦ୍ ସେ ଏ କବିସୂର୍ଯ୍ୟ ବ୍ରହ୍ମା ଗାଓ ॥

## (୨୪) କବିକୃତ ଅନ୍ୟାନ୍ୟ କ୍ଷୁଦ୍ର କବିତା

"ଶ୍ରୀରାଧିକା ବାଣୀ ସହଚରୀ ଶୁଣି ଆକୁଳ ହୋଇଲ ଲେ ।
ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବୋଲେ ମୋହନ ଅଇଲ ଲେ" ॥

"ଲହୁଛି କଜ୍ଜ୍ୱଳେ ତବ ତ୍ରିଭଙ୍ଗୀ ଶୋହୁଛି ସଜଳେ ନୟନ ଭଙ୍ଗୀ ।

କହୁଛନ୍ତି ପଦେ ଦାସ କବିସୂର୍ଯ୍ୟ ବ୍ରହ୍ମା ରସିକ ରାଜ ।
ତୁମ୍ଭ ଅଭେଦ ରାଧା ପ୍ରାଣେଶ୍ୱରୀ ॥

× × ×

"ଯାହାକୁ ଦେଖିଲେ ତୋହର ପରା ।
ପରତେ ହୁଏ ଆରେ ହେମ ହାରା ॥ ୫ ॥
କୃଷ୍ଣ ବାଣୀ ଶୁଣି କଶୋରୀ ହସି ।
କବିସୂର୍ଯ୍ୟ ବ୍ରହ୍ମା ଯାହାର ଦାସୀ" ॥ ୬ ॥

× × ×

"କ୍ଷଣକରେ ସୁଖ ନଦୀ ବୁହାଇ ତ,
ନିଶ୍ୱାସ ବାତ ପ୍ରଶାନ୍ତ·········ମୋ ଦୁଃଖ କର ନିପାତ ।
କବିସୂର୍ଯ୍ୟ ବ୍ରହ୍ମା ବୋଲେ ନାଥ ସତ୍ୟ" ॥ ୪ ॥



# ତୃତୀୟ ପରିଚ୍ଛେଦ

# ସଦାନନ୍ଦଙ୍କ କୃତିରେ କାବ୍ୟ - ବିଭାବ ଓ ବୈଶିଷ୍ଟ୍ୟ

## ଓଡ଼ିଆ ସାହିତ୍ୟରେ ରୀତିଯୁଗ

ଓଡ଼ିଆ ସାହିତ୍ୟର ରୀତିଯୁଗ ୧୬୫୦ ଖ୍ରୀଷ୍ଟାବ୍ଦରୁ ୧୮୫୦ ମଧ୍ୟରେ ସୀମିତ । ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଏହି ମତର ସମର୍ଥକ (୧) । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ୧୮ଶ ଶତାବ୍ଦୀରୁ ୧୯ଶ ଶତାବ୍ଦୀର ମଧ୍ୟଭାଗର ପରିମିତ ସମୟକୁ ଅର୍ଥାତ ୧୫୦ ବର୍ଷକାଳକୁ ରୀତିଯୁଗ ବୋଲି ମତବ୍ୟକ୍ତ କରିଅଛନ୍ତି (୨) । ପଣ୍ଡିତ ବିନାୟକ ମିଶ୍ର ଓଡ଼ିଆ ସାହିତ୍ୟର ଇତିହାସର ୬ଷ୍ଠ ଅଧ୍ୟାୟରେ ବିନୋଦ ସାହିତ୍ୟର କାଳ ନିର୍ଦ୍ଧାରଣକୁ ସ୍ପଷ୍ଟ ଭାବରେ କରି ନାହାନ୍ତି । କିନ୍ତୁ ତାଙ୍କ ଦ୍ୱାରା କବିମାନଙ୍କର ଯେଉଁ କାଳନିରୂପଣ କରାଯାଇଛି, ତନ୍ମଧ୍ୟରୁ ଜଣାଯାଏ ଯେ, ପ୍ରମୋଦ ଯୁଗର ଆରମ୍ଭ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରୁ ଏବଂ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଶେଷ (୩) । ସେହିପରି ସୁରେନ୍ଦ୍ର ମହାନ୍ତି, ଡ଼ଃ. ମାୟାଧର ମାନସିଂହ ପ୍ରଭୃତି ସାହିତ୍ୟିକଗଣ ୧୬୩୦ ଖ୍ରୀଷ୍ଟାବ୍ଦରୁ ୧୮୫୦ ମଧ୍ୟରେ ଏହି ଯୁଗକୁ ଗ୍ରହଣ କରିଥିବାରୁ ଏକ ସମ୍ମତ ମତ ପ୍ରକାଶିତ ହୁଏ ଯେ, ଓଡ଼ିଆ ସାହିତ୍ୟର ରୀତିଯୁଗର ଆରମ୍ଭ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ଏବଂ ପରିସମାପ୍ତି ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ । ସୁତରାଂ ଓଡ଼ିଆ ସାହିତ୍ୟରେ ରୀତିଯୁଗର ବ୍ୟାପ୍ତିକାଳ ଅନ୍ୟୂନ ଦୁଇ ଶତାବ୍ଦୀ ।

---

(୧) ଓଡ଼ିଆ ସାହିତ୍ୟର ଇତିହାସ, ଦ୍ୱିତୀୟ ଖଣ୍ଡ, ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ।

(୨) ଓଡ଼ିଆ ସାହିତ୍ୟର ଇତିହାସ, ଦ୍ୱିତୀୟ ଭାଗ, ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ. ।

(୩) ଓଡ଼ିଆ ସାହିତ୍ୟର ଇତିହାସ, ପଣ୍ଡିତ ବିନାୟକ ମିଶ୍ର ।

## ରୀତିଯୁଗୀୟ କବିମାନଙ୍କର ପ୍ରକାର ଭେଦ :—

ରୀତିଯୁଗର କବିମାନଙ୍କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇ-ପାରେ । ଯଥା—ଲକ୍ଷଣ କବି, ଲକ୍ଷ୍ୟ କବି ଓ ଉଭୟ କବି । ଲକ୍ଷଣ କବିମାନେ କେବଳ କାବ୍ୟ ଲକ୍ଷଣକୁ ବା ସୂତ୍ରକୁ କବିତା ମାଧ୍ୟମରେ ବ୍ୟକ୍ତ କରୁଥିଲେ । ଲକ୍ଷ୍ୟକବି ଶାସ୍ତ୍ରୀୟ ନିୟମ ପ୍ରତି ଦୃଷ୍ଟି ରଖି କାବ୍ୟ ରଚନା କରୁଥିଲେ ଓ ତୃତୀୟ ଶ୍ରେଣୀ ଅନ୍ତର୍ଭୁକ୍ତ କବିମାନେ କାବ୍ୟର ସୂତ୍ର ସହ ଉଦାହରଣ ପ୍ରଦାନ କରୁଥିଲେ । ଏତଦ୍‌ଭିନ୍ନ ରୀତି ନିୟମ ପ୍ରତି ଦୃଷ୍ଟି ନ ଦେଇ ମଧ୍ୟ ଅନେକ କବି ଏହି ଯୁଗରେ କାବ୍ୟ ରଚନାରେ ରତ ଥିଲେ । ଏମାନେ ରୀତିମୁକ୍ତ ବା ସ୍ୱଚ୍ଛନ୍ଦ କବି ନାମରେ ଖ୍ୟାତ । ଓଡ଼ିଆ ସାହିତ୍ୟରେ ପ୍ରଥମୋକ୍ତ ଦୁଇଶ୍ରେଣୀର ଶାସ୍ତ୍ର କବି ପରିଦୃଷ୍ଟ ହୁଅନ୍ତି । ଆଚାର୍ଯ୍ୟ କବିଙ୍କର ସଂଖ୍ୟା ଓଡ଼ିଆ ସାହିତ୍ୟରେ ଅତି କମ୍ । ଓଡ଼ିଶାରେ ଓଡ଼ିଆ କାବ୍ୟଧାରା ସହିତ ସଂସ୍କୃତ କାବ୍ୟର ଏକ ସମାନ୍ତରାଳ ଧାରା ବହିଚାଲୁ ଥିବାରୁ ଏବଂ ଓଡ଼ିଆ କବିମାନେ ଓଡ଼ିଆରେ ସ୍ୱତନ୍ତ୍ର ଲକ୍ଷଣ ଗ୍ରନ୍ଥ ନ ଲେଖି ସଂସ୍କୃତକୁ ବିଶେଷ ଭାବରେ ଅନୁସରଣ କରୁଥିବାରୁ ଓଡ଼ିଆ ଭାଷାରେ ଏହାର ଆବଶ୍ୟକତା ସ୍ୱତନ୍ତ୍ର ଭାବେ ଉପଲବ୍‌ଧ ହେଉ ନଥିଲା । ଓଡ଼ିଆ କବିମାନଙ୍କ ମଧ୍ୟରୁ ଅଧିକାଂଶ ସଂସ୍କୃତ ସାହିତ୍ୟରେ ପ୍ରବୀଣ ଥିଲେ ଏବଂ ସେମାନେ ସଂସ୍କୃତର ମୂଳଶାସ୍ତ୍ରକୁ ଅଧ୍ୟୟନ କରୁଥିଲେ ।

ରାଜଦରବାରମାନଙ୍କରେ କବି ଓ ପଣ୍ଡିତମାନଙ୍କୁ କଠିନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡୁଥିଲା । ତେଣୁ ସାଧାରଣ ଓଡ଼ିଶାବାସୀଙ୍କ ପକ୍ଷରେ କବିତ୍ୱ ଓ ପାଣ୍ଡିତ୍ୟ ଅନାୟାସରେ ଲାଭ କରିବା ସହଜ ହେଉନଥିଲା । ସପ୍ତଦଶ ଶତାବ୍ଦୀର କବି ଘନକୃଷ୍ଣ ଦାସ ଓ ଉପେନ୍ଦ୍ର ଭଞ୍ଜ, ଅଷ୍ଟାଦଶ ଶତାବ୍ଦୀର କବି କବିସୂର୍ଯ୍ୟ ବଳଦେବ ରଥ, ଯଦୁମଣି ପ୍ରଭୃତି କବିମାନେ ରାଜପ୍ରତିଷ୍ଠା ତଥା କବିଯଶର ପ୍ରୟାସୀ ହୋଇ ଏହି ପରୀକ୍ଷାର ସମ୍ମୁଖୀନ ହୋଇଥିବାର କିମ୍ବଦନ୍ତୀ ଅଦ୍ୟାବଧି ଲୋକମୁଖରେ ପ୍ରଚଳିତ । ଯେଉଁ-ମାନଙ୍କର ସଂସ୍କୃତରେ ପାଣ୍ଡିତ୍ୟ ଥିଲା ଏବଂ ଓଡ଼ିଆ କାବ୍ୟ ରଚନା ପ୍ରତି ଆଗ୍ରହଥିଲା, ସେମାନେ କାବ୍ୟ ବା ଶାସ୍ତ୍ର ମଧ୍ୟରେ କତିପୟ ସଂସ୍କୃତଶବ୍ଦ ଯୋଗକରି ନିଜ ସଂସ୍କୃତ ଜ୍ଞାନର ପରିଚୟ ଦେଉଥିଲେ । କେତେ ପଣ୍ଡିତ ମଧ୍ୟ ସ୍ୱ ରଚିତ ଓଡ଼ିଆ ରଚନାକୁ ସଂସ୍କୃତ କାବ୍ୟର ସମକକ୍ଷ ବୋଲି ବ୍ୟକ୍ତ କରୁଥିଲେ । ଉଦାହରଣ ସ୍ୱରୂପ ଶିଶୁଶଙ୍କର ଦାସ ସ୍ୱରଚିତ ଉଷାଭିଳାଷ କାବ୍ୟରେ ଏହା ବ୍ୟକ୍ତ କରିଛନ୍ତି—

"ପ୍ରଣମ୍ୟ ପୀତାମ୍ବର ପାଦପଦ୍ମଂ ।
ପ୍ରକୃଷ୍ଟଗୋପୀ କୁଳକେଳି ସଦ୍ମଃ ॥
ଉଷାଭିଳାଷଃ ଶିଶୁଶଙ୍କରେଣ ।
ପ୍ରକାଶ୍ୟତେ କେଳିରସା କରେଣ ॥
ଉଷାନିରୁଦ୍ଧ ରତିକେଳି କଥା ସୁଧେବ ସଂଗୃହ୍ୟତେ ।
ସୁରତସାର-ବିନୋଦମନୁଷ୍ୟାଃ ॥
ଯଦ୍ଭିଦାନମତ୍ତରସିକାଃ ବିବୁଧାମୁଦା କିଂ ସାହିତ୍ୟସାର-
ରସିକା ଭୁବି ନ ତ୍ୟଜନ୍ତି ॥"

ଅଭିମନ୍ୟୁକୃତ ବିଦଗ୍ଧଚିନ୍ତାମଣି କାବ୍ୟର ପ୍ରଥମ ଛାନ୍ଦରେ ମଧ୍ୟ ଏହାର ଉଦାହରଣ ସୁସ୍ପଷ୍ଟ । କେତେକ କବି ମଧ୍ୟ ସଂସ୍କୃତ ପଣ୍ଡିତମାନଙ୍କର ସମାଲୋଚନା ପ୍ରତି ଦୃଷ୍ଟି ରଖି ସଂସ୍କୃତ ଭାଷାର ପ୍ରାଧାନ୍ୟକୁ ଅସ୍ୱୀକାର କରିଛନ୍ତି ଏବଂ ଭାବ ସମନ୍ୱିତ କାବ୍ୟକୁ ଯଥାର୍ଥ କାବ୍ୟ ଭାବରେ ଗ୍ରହଣ କରିଛନ୍ତି । ଭୂପତି ପଣ୍ଡିତଙ୍କ ପ୍ରେମପଞ୍ଚାମୃତରେ ଏହା ପରିଦୃଷ୍ଟ ହୁଏ ।

"ଯେବେ ନଥାଇ କୃଷ୍ଣରସ । ସେ ସଂସ୍କୃତେ କାର୍ଯ୍ୟ କିସ ॥
ପାଟ ବସନେ ଗୁଞ୍ଜଫଳ । ଥିଲେ ନୁହଇ ବହୁମୂଲ ॥
ଚିରାକନାରେ ମାଣିକର । ଥିଲେ ନ ତୁଟେ ମୂଲ୍ୟ ତାର ॥
ସେ ସୁରଭାଷା ରସମୟେ । ସେ ନାରିକେଳ ଫଳ ପ୍ରାୟେ ॥
କ୍ଲେଶେ ହୁଅଇ ରସଭୋଗ । ସବୁଙ୍କୁ ନୋହେ ଉପଯୋଗ ॥"

## ଅଲଙ୍କାର ଗ୍ରନ୍ଥର ପରିମାଣାତ୍ମକ ତୁଳନା :—

ଓଡ଼ିଆ ସାହିତ୍ୟରେ ଯଦୁମଣି ସର୍ବାଙ୍ଗ ନିରୂପକ ପରମ୍ପରାର ଏକମାତ୍ର ଆଚାର୍ଯ୍ୟ । ସେ 'କବି କଳ୍ପଦ୍ରୁମ' ଗ୍ରନ୍ଥରେ କାବ୍ୟ, ରୂପ, ରସ, ନାୟକ-ନାୟିକା, ଦୂତ, ବିଦୂଷକ, ଧ୍ୱନି, କାବ୍ୟଭେଦ, ଚିତ୍ରକାବ୍ୟ ଭେଦ, ଗୁଣ ଅଳଙ୍କାର, କାବ୍ୟଦୋଷ, ଶବ୍ଦାର୍ଥ, ରାଜା, ରାଜନେତ୍ରୀ, ରାଜକୁମାରୀ, ପୁରୋହିତ, ସେନାପତି, ପ୍ରାସାଦ, ଜଳାଶୟ, କ୍ରୀଡ଼ାବନ ପ୍ରଭୃତି ବିଭାବ ଅନୁଭାବର ସ୍ୱରୂପ ଏବଂ ରାଗ, ଗୀତ, ତାଳ, ଲୟ, ମାନ ଓ ନୃତ୍ୟର ବର୍ଣ୍ଣନା କରିଯାଇଛନ୍ତି ।

ଦ୍ୱିତୀୟ ଆଚାର୍ଯ୍ୟ ପରମ୍ପରା ହେଲା ରସପରମ୍ପରା । ରୀତିକାଳରେ ଶୃଙ୍ଗାରରସ ଅଧିକ ପ୍ରାଧାନ୍ୟ ଲାଭ କରିଥିବାରୁ ଶୃଙ୍ଗାରରସର ପୁଙ୍ଖାନୁପୁଙ୍ଖ ଆଲୋଚନା କରି ଏହାର ଆଲମ୍ବନ-ବିଭାବ, ଉଦ୍ଦୀପନ-ବିଭାବକୁ ନେଇ ବହୁ

ଅଳଙ୍କାର ଗ୍ରନ୍ଥ ସୃଷ୍ଟି ହୋଇଅଛି । ନାୟିକାଭେଦ ଏବଂ ବାରମାସ ବା ଋତୁଚକ୍ର ପରମ୍ପରାର ସୃଷ୍ଟି, ତନ୍ମଧ୍ୟରୁ ହିଁ ସମ୍ଭବ ହୋଇଛି । ଆଚାର୍ଯ୍ୟ ନରସିଂହ ସେଣ ଓଡ଼ିଆ ସାହିତ୍ୟରେ ପ୍ରଥମ ରସାଚାର୍ଯ୍ୟ । ତାଙ୍କ ରଚିତ ଚିନ୍ତାମୁକ୍ତାବଳୀର ପ୍ରଭାବ ରସମୁକ୍ତାବଳି ଓ ରସପଞ୍ଚକ ଉପରେ ପଡ଼ିଥିବାର ଅନୁମାନ କରାଯାଏ । ଶୃଙ୍ଗାର ରସର ହାବଭାବହେଳା ଆଦି ନାୟିକାଳଙ୍କାରର ବର୍ଣ୍ଣନା ଏଥିରେ ପରିଦୃଷ୍ଟ ହୁଏ ।

ପୁନଶ୍ଚ ତତ୍କାଳୀନ କବିମାନେ ନିଜର ପ୍ରତିଷ୍ଠାପାଇଁ ସମସାମୟିକ ବା ପୂର୍ବବର୍ତ୍ତୀ କବିମାନଙ୍କୁ ବଳିପିବା ନିମିତ୍ତ ଚେଷ୍ଟା କରୁଥିଲେ । ତେଣୁ ପ୍ରତିଦ୍ୱନ୍ଦିତା ନିମିତ୍ତ ସଂସ୍କୃତ ଅଳଙ୍କାର ଶାସ୍ତ୍ର ଅଧ୍ୟୟନର ଆବଶ୍ୟକତା ରହିଥିଲା । କାରଣ ଉକ୍ତ ପ୍ରତିଦ୍ୱନ୍ଦିତା କାବ୍ୟର ଭାବ ଦୃଷ୍ଟିରୁ ନହୋଇ ଛାନ୍ଦ, ଶବ୍ଦ ପାଣ୍ଡିତ୍ୟ, ଶବ୍ଦ ଯୋଜନା ତଥା କାବ୍ୟର କଳାତ୍ମକତା ବା ବହିଃରଙ୍ଗ ସୌନ୍ଦର୍ଯ୍ୟ ଉପରେ ନିବଦ୍ଧ ହେଉଥିଲା । ପ୍ରେମଶାଳାର ରଚୟିତା ରାଜକବି କୁଞ୍ଜବିହାରୀ ଭ୍ରମରବରଙ୍କର ରଚନାରେ ସ୍ପଷ୍ଟ ସୂଚନା ମିଳେ । ଯଥା—

"ବିଷ୍ଣୁଦାସ ଆଦି ଯେତେ ଛାନ୍ଦକାରୀ କବି
ତାହାଙ୍କ ଶବ୍ଦପର୍ବତ ଗର୍ବହର ପବି ।" (୧୭ଶ ଛାନ୍ଦ)

ନିଜ କାବ୍ୟକୁ ପଣ୍ଡିତମାନଙ୍କ ଦ୍ୱାରା ଆଦୃତ କରାଇବାକୁ କାବ୍ୟ ମଧ୍ୟରେ ରୀତିଶାସ୍ତ୍ରୀୟ ନିୟମକୁ ଯେତିକ ପ୍ରାଧାନ୍ୟ ଦିଆଯାଇ ଅନୁସରଣ କରାଯାଉଥିଲା, ସେତିକ ପରିମାଣରେ ମଧ୍ୟ ଏହି କାବ୍ୟ ତଥା ଶାସ୍ତ୍ର ରଚନାର ସଂଖ୍ୟା କ୍ରମଶଃ ସଙ୍କୁଚିତ ହେଉଥିଲା ।

ତତ୍କାଳୀନ ରୀତିକବିମାନେ ସଂସ୍କୃତ ଅଳଙ୍କାର ଶାସ୍ତ୍ର ଅଧ୍ୟୟନ କରି କାବ୍ୟାଦି ରଚନା କରୁଥିଲେ ହେଁ ସଂସ୍କୃତ ପଣ୍ଡିତମାନଙ୍କର ଦୋଷଦର୍ଶୀ ଦୃଷ୍ଟିରେ ସମାଲୋଚନାର ଶରବ୍ୟ ହେଉଥିଲେ । ତେଣୁ କବିମାନେ ନିଜର ରଚନାକୁ ଦେବଦେବୀଙ୍କର ନିର୍ଦ୍ଦେଶରେ ରଚିତ ମୁଖ ନିଃସୃତ ବାକ୍ୟର ଲିପି ରୂପବୋଲି ବ୍ୟକ୍ତ କରୁଥିଲେ । ଉତ୍କଳୀୟ ଆଚାର୍ଯ୍ୟ ଉପେନ୍ଦ୍ର ଭଞ୍ଜ ଏହି ରସ ସରଣୀର କର୍ଣ୍ଣଧାର । ସେ ସମସ୍ତ ରସର ନାମକରଣ ସହିତ ଉଦାହରଣ ମାଧ୍ୟମରେ ନବରସ ନିରୂପଣ କରିବା ସହିତ ଶୃଙ୍ଗାର ରସକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି ଏବଂ ନାୟକନାୟିକା ଭେଦ ନିରୂପଣ କରିଛନ୍ତି । ଏହାଙ୍କ ରକାରପଞ୍ଚକରେ ଉଦାହରଣ ଉଦ୍ଦୀପନ ବିଭାବ, ବସନ୍ତ ବର୍ଣ୍ଣନା,

ଅନୁରାଗଗୃହୀକ୍ତି, ପଶ୍ଚାତାପ, ଦୂତୀନବେଦନ, ପ୍ରାପ୍ତି ଇଚ୍ଛା, ଗ୍ରାବଗର୍ଭଉଦୟ, ବୟସନ୍ଧ, ବଦେଶଗମନ, ଚନ୍ତା, ମେଲଣି ଓ ବିବିଧ ଚଟାଉ ବର୍ଣ୍ଣିତ । ସକାର ପଞ୍ଚକରେ ନାୟକନାୟିକା ଭେଦ, ପକାରପଞ୍ଚକରେ ପ୍ରାନ୍ତଃ ବର୍ଣ୍ଣନା, ହାବ, ଭାବ, ହେଳା, ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟର ବର୍ଣ୍ଣନା ସହିତ ବପରୀତରଜ୍ଞାନ ରତିଚନ୍ତା, ମଧ୍ୟା ଓ ମୁଗ୍‌ଧା ନାୟିକା, ରତିସ୍ପୃହା, ପ୍ରଗଳ୍‌ଭା, ପ୍ରୀତିଉତ୍କଣ୍ଠା, ଆରୂଢ଼ମୁଗ୍‌ଧା ଓ ଅଭିଳାଷ, ସ୍ତୁତି ଓ ସଂଗୃହଭାବର ବର୍ଣ୍ଣନା ରହିଛି । ଅବଶିଷ୍ଟ ଦୁଇ ଚକାର ଓ କକାର ପଞ୍ଚକରେ ଅଳଙ୍କାର ଓ ବାତ୍ସାୟନଙ୍କ କାମସୂତ୍ରର ଉଦାହରଣ ରହିଅଛି । ଅନ୍ୟ ଏକ ଗ୍ରନ୍ଥ ରସମଞ୍ଜରୀର ତିନୋଟି ଗୁଚ୍ଛରେ ଏହି ପ୍ରକାର ବର୍ଣ୍ଣନା ଥିବା ଜଣାଯାଏ ।

ବଳଭଦ୍ର ଭଞ୍ଜଙ୍କର 'ରସମୁକ୍ତାବଳୀ' ମଧ୍ଯ ଓଡ଼ିଆ ସାହିତ୍ୟରେ ରସ ସମ୍ବନ୍ଧୀୟ ଅନ୍ୟତମ ଗ୍ରନ୍ଥ । ଏଥିରେ ଉଭୟ ଲକ୍ଷଣ ଓ ଲକ୍ଷ୍ୟପଦ ପରିଦୃଷ୍ଟ । ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ କାବ୍ୟ ରସମଞ୍ଜରୀ ମଧ୍ଯ ଏକ ଅଳଙ୍କାର ଗ୍ରନ୍ଥ । ଏହାର ପ୍ରଥମ ଗୁଚ୍ଛର ଚତୁର୍ଥ ପୃଷ୍ଠରେ ଉତ୍‌ପ୍ରେକ୍ଷା, ବର୍ଣ୍ଣଶ୍ଳେଷ, ଭାବଶ୍ଳେଷ, ସଭଙ୍ଗଶ୍ଳେଷ, ପର୍ଯ୍ୟାୟଭଙ୍ଗଶ୍ଳେଷ, ଭଙ୍ଗାଭଙ୍ଗଶ୍ଳେଷ, ଆଦି ବହୁବିଧ ଶ୍ଳେଷର ଉଦାହରଣ ଏବଂ ବୃତ୍ତ୍ୟାନୁପ୍ରାସ, ଅକ୍ଷରାନୁପ୍ରାସ, ଛେକାନୁପ୍ରାସ ପ୍ରଭୃତି ବିଭିନ୍ନ ଅନୁପ୍ରାସ ଅଳଙ୍କାରର ଉଦାହରଣ ପରିଦୃଷ୍ଟ ହୁଏ । ଦ୍ୱିତୀୟ ଗୁଚ୍ଛର ପ୍ରଥମ ପୃଷ୍ଠରେ ଆଦ୍ୟଯମକ, ପ୍ରାନ୍ତଯମକ, ମଧ୍ୟଯମକ, ଆଦ୍ୟପ୍ରାନ୍ତଯମକ, ବିଭଙ୍ଗ ଯମକ, ମାଳଯମକ ଓ ମହାଯମକ, ଦ୍ୱିତୀୟ ପୃଷ୍ଠରେ ରୂପକ, ତର୍କରୂପକ, ଶ୍ଳେଷରୂପକ ଏବଂ ଚତୁର୍ଥ ପୃଷ୍ଠରେ ଗୋମୂତ୍ରଛନ୍ଦ, ପଦ୍ମବନ୍ଧ, ସ୍ୱସ୍ତିକବନ୍ଧ, ଛତ୍ରବନ୍ଧ, ସିଂହାବଲୋକନ, ଶାର୍ଦ୍ଦୁଳ ବକ୍ରୀଡ଼ିତ ଶୃଙ୍ଖଳା ଆଦି ଛନ୍ଦର ଉଦାହରଣ ପରିଦୃଷ୍ଟ ହୁଏ । ତାଙ୍କ କୃତ ଚତ୍ରକାବ୍ୟବନ୍ଧୋଦୟ ଚତ୍ରାଳଙ୍କାର ଗ୍ରନ୍ଥ ଭାବରେ ପ୍ରସିଦ୍ଧି ଲାଭ କରିଅଛି । ଏଥିରେ ଶାର୍ଦ୍ଦୁଳ ବକ୍ରୀଡ଼ିତ, ମଣ୍ଡୂକପ୍ଲୁତି, ଲୋମବଲୋମ, ତରଙ୍ଗଗତି, ପାଞ୍ଚ ପ୍ରକାର ବହିର୍ଲିପିକା, ଛଅ ପ୍ରକାର ଅନ୍ତର୍ଲିପିକା, ପ୍ରଶ୍ନୋତ୍ତର, ଅଜାମେଷଯୁଦ୍ଧ, ସିଂହାବଲୋକନ, ଶୃଙ୍ଖଳା, ଗୋମୂତ୍ର, ଚ୍ୟୁତାକ୍ଷର, ସୌଷ୍ଠ୍ୟ, ନିରୋଷ୍ଠ୍ୟ, ଏକାକ୍ଷର, ଦ୍ୱିଅକ୍ଷର ଆଦି ଅଳଙ୍କାର ଓ ଅମ୍ବୁଜ, ଚକ୍ର, କମ୍ବୁ, ଶମ୍ଭୁ, ଗଦା, ଶୂଳ, ରଥ, ପରଶୁ, ଖଡ୍‌ଗ, ହାର, କବାଟ, ସର୍ବତୋଭଦ୍ର, କଙ୍କଣ, କଚ୍ଛପ, ପ୍ରାସାଦ, ନାଗ, ଗବାକ୍ଷ, ମୁରଜ, ଲତା, ବୀଣା, ଶକଟ, ଗୁଚ୍ଛ, ଶର, ଫଣି, ଧନୁ, କୁକ୍‌କୁଟ ଆଦି ବହୁ ପ୍ରକାର ଚତ୍ରବନ୍ଧର ଉଦାହରଣ ଦିଆଯାଇଅଛି ।

ଓଡ଼ିଆ ସାହିତ୍ୟରେ ମହାକବି ଉପେନ୍ଦ୍ର ଭଞ୍ଜ ପ୍ରଥମତଃ କବି ଓ ଦ୍ୱିତୀୟତଃ ଆଳଙ୍କାରିକ ଥିଲେ । ଉଭୟ ପ୍ରବନ୍ଧ ଓ ମୁକ୍ତକ କାବ୍ୟ ରଚନାରେ ତାଙ୍କର ଦକ୍ଷତା ଥିଲା । ଅଭିମନ୍ୟୁଙ୍କ ବିଦଗ୍ଧଚିନ୍ତାମଣି ଏକାଧାରରେ କାବ୍ୟ ଓ ଅଳଙ୍କାର ଶାସ୍ତ୍ର । ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ବ୍ରଜନାଥ ବଡ଼ଜେନା ପ୍ରଭୃତି କବିମାନେ ବିଶୁଦ୍ଧ ରୀତି ପରମ୍ପରାକୁ ରକ୍ଷା କରିଥିବା କବିମାନଙ୍କ ମଧ୍ୟରେ ଅନ୍ୟତମ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରୀତିକାଳର ବଶିଷ୍ଟ କବି । କାଳପ୍ରଭାବ ଦ୍ୱାରା ସେ ପ୍ରଭାବିତ ହେବା ସ୍ୱାଭାବିକ । ମାତ୍ର କବି ଥିଲେ ଭକ୍ତ ଓ ତାହାଙ୍କ କାବ୍ୟ ରଚନାର ଉଦ୍ଦେଶ୍ୟ ଥିଲା ଧର୍ମ ଓ କୃଷ୍ଣପ୍ରେମର ପ୍ରଚାର । କବି ରୀତିକାଳୀନ କାଳ୍ପନିକ କାବ୍ୟ, କୃଷ୍ଣ ବିଷୟକ ପ୍ରବନ୍ଧକାବ୍ୟ ଓ ମୁକ୍ତକ-କାବ୍ୟ, ରୀତିକାଳୀନ ଶାସ୍ତ୍ରୀୟ କାବ୍ୟମାନ ରଚନା କରିବାରେ ବିଶେଷ ପାରଦର୍ଶିତା ଅର୍ଜନ କରିଅଛନ୍ତି । ମୋହନଲତା ଓ ଲଳିତଲୋଚନା କାବ୍ୟ; କାଳ୍ପନିକ କାବ୍ୟଶ୍ରେଣୀ ଅନ୍ତର୍ଭୁକ୍ତ । ଯୁଗଳ ରସାମୃତ ଲହରୀ, ଯୁଗଳ-ରସାମୃତଭଞ୍ଜିରୀ, ପ୍ରେମ ତରଙ୍ଗିଣୀ, ପ୍ରେମକଳ୍ପଲତା ଆଦି କୃଷ୍ଣ ବିଷୟକ ପ୍ରବନ୍ଧ କାବ୍ୟ । ନିସ୍ତାରମଣି, ନାମଚିନ୍ତାମଣି, ବିଶ୍ୱମ୍ଭରବିହାର, ପାଠ ରତ୍ନାବଳୀ, କୀର୍ତ୍ତନଉଜ୍ଜ୍ୱଳ, ବ୍ରଜଲୀଳାମୃତସମୁଦ୍ର ଆଦି ମୁକ୍ତକକାବ୍ୟ ଏବଂ ବାଳବୋଧିନୀ, ସଙ୍ଗୀତସଦାନନ୍ଦ, ସ୍ୱରଦୀପିକା ପ୍ରଭୃତି ଶାସ୍ତ୍ରୀୟ କାବ୍ୟଶ୍ରେଣୀ ଅନ୍ତର୍ଭୁକ୍ତ କାବ୍ୟ ।

ସଦାନନ୍ଦଙ୍କ କାଳ୍ପନିକ ଓ କୃଷ୍ଣଲୀଳା ବିଷୟକ କାବ୍ୟମାନ ପରମ୍ପରା ପ୍ରଚଳିତ କଥାବସ୍ତୁ ପ୍ରଣାଳୀକୁ ଅନୁସରଣ କରିଅଛନ୍ତି । ନାୟକ, ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ, ରାଜକୁଟୁମ୍ବରେ ଜନ୍ମ, ସୌନ୍ଦର୍ଯ୍ୟର ପ୍ରଶଂସା ଶ୍ରବଣ କରି ଓ ଚିତ୍ରପଟରେ ସୁନ୍ଦର ରୂପ ଦେଖି ପରସ୍ପର ପ୍ରତି ଆକୃଷ୍ଟ ହେବା, ପୂର୍ବରାଗ, ବିରହ, ମିଳନ ପ୍ରଭୃତି ସ୍ଥୂଳଧାରା କବି ରକ୍ଷା କରିଅଛନ୍ତି । କାଳ୍ପନିକ କାବ୍ୟରେ ସ୍ୱୟମ୍ବରର ବ୍ୟବସ୍ଥା ମଧ୍ୟ କରିଅଛନ୍ତି । କବି ଅଳଙ୍କାର ଶାସ୍ତ୍ରାନୁମୋଦିତ ବହୁ ଅଳଙ୍କାରର ବ୍ୟବହାର କରିଅଛନ୍ତି ଏବଂ ସ୍ଥାନେ ସ୍ଥାନେ କେତେକ ଅଳଙ୍କାରର ଲକ୍ଷଣ ନିର୍ଦ୍ଦେଶକରି ବିଷୟାନୁକୂଳ ଦୃଷ୍ଟାନ୍ତ ମଧ୍ୟ ଦେଇଅଛନ୍ତି । ସଦାନନ୍ଦଙ୍କ କାଳ୍ପନିକ ଓ କୃଷ୍ଣଲୀଳା ବିଷୟକ କାବ୍ୟ-ମାନ ମୁଖ୍ୟତଃ ରାଧାକୃଷ୍ଣଙ୍କ ମାଧୁର୍ଯ୍ୟଲୀଳାର ଗନ୍ତାଘର । କବି ରାଧାକୃଷ୍ଣଙ୍କର ଏକାନ୍ତ ଭକ୍ତ ଥିବାରୁ କାଳ୍ପନିକ କାବ୍ୟମାନଙ୍କୁ ମଧ୍ୟ ରାଧାକୃଷ୍ଣଙ୍କ ପ୍ରଭାବରୁ

ମୁକ୍ତକଣ୍ଠ ନାହାନ୍ତି । ସଂପୂର୍ଣ୍ଣ ପ୍ରାସଙ୍ଗିକ ନହେଲେ ମଧ୍ୟ ଲଳିତଲୋଚନା ଓ ମୋହନଲତାରେ (୪) ନାୟକ ଓ ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତରେ ରାଧାକୃଷ୍ଣଙ୍କ ସମ୍ପର୍କ ଦେଖାଇଅଛନ୍ତି ଏବଂ କାବ୍ୟର ନାୟକ ନାୟିକାଙ୍କ ପିତାମାତା ଓ ଅନ୍ୟାନ୍ୟ କେତେକ ପାତ୍ରଙ୍କୁ ପରମବୈଷ୍ଣବ ଥିବା ଉଲ୍ଲେଖ କରିଅଛନ୍ତି । ଜଣେ ରଜାଙ୍କୁ ବୃଦ୍ଧାବସ୍ଥା ଉପଗତ ହୁଅନ୍ତେ ସସ୍ତ୍ରୀକ ବୃନ୍ଦାବନ ବାସ କରାଇଅଛନ୍ତି (୫) ।

ଅଷ୍ଟାଦଶ ଶତାବ୍ଦୀବେଳକୁ ଅର୍ଥାତ୍ ସଦାନନ୍ଦଙ୍କ ସମୟକୁ ଓଡ଼ିଶାରେ ବହୁ ବୃନ୍ଦାବନ ଧାମମାର୍ଗୀ ବୈଷ୍ଣବ ଗ୍ରନ୍ଥ ରଚିତ ହୋଇଥିଲା । ଏହି ସମ୍ପ୍ରଦାୟର ତତ୍ତ୍ୱ ଓ ତଥ୍ୟକୁ ନେଇ ସଦାନନ୍ଦ ଅନେକ ଗ୍ରନ୍ଥ ରଚନା କରିଥିଲେ । ଓଡ଼ିଶାରେ ମାଧୁର୍ଯ୍ୟଲୀଳା ତତ୍ତ୍ୱପନ୍ଥୀ କବିମାନଙ୍କ ଭିତରେ ସଦାନନ୍ଦ ଅଗ୍ରଣୀ (୬) ।

## ମାଧୁର୍ଯ୍ୟ ବା ଉଜ୍ଜ୍ୱଳରସ, କାମଶାସ୍ତ୍ର ଏବଂ ଶୃଙ୍ଗାରାଦିରସ—

ମଧ୍ୟଯୁଗୀୟ ସାହିତ୍ୟରେ ଭାରତରେ ପ୍ରଚଳିତ ବିଭିନ୍ନ ଶୃଙ୍ଗାର ପରମ୍ପରାର ଚିହ୍ନ ଦେଖିବାକୁ ମିଳେ । ସଂସ୍କୃତ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ ଯେ, ପ୍ରଥମତଃ ଦୁଇପ୍ରକାର ଶୃଙ୍ଗାର ବର୍ଣ୍ଣନା ଦ୍ୱାରା ଏହା ପରିପୁଷ୍ଟ । ପ୍ରଥମତଃ ପ୍ରକୃତ ଘଟଣା ଉପରେ ଆଧାରିତ ଶୃଙ୍ଗାର ବର୍ଣ୍ଣନା ଓ ଦ୍ୱିତୀୟତଃ କଳ୍ପନା ପ୍ରଧାନ ଶୃଙ୍ଗାର ବର୍ଣ୍ଣନା । ପ୍ରଥମୋକ୍ତ ଶୃଙ୍ଗାର ବର୍ଣ୍ଣନା ଦୁଇଭାଗରେ ବିଭକ୍ତ; ଯଥା—ସାମାଜିକ ପରିସ୍ଥିତିଭିତ୍ତିକ ଓ ଧାର୍ମିକ ପରିସ୍ଥିତିଭିତ୍ତିକ । ସାମାଜିକ ପରିସ୍ଥିତି ଉପରେ ନିର୍ଭର କରିଥିବା ଶୃଙ୍ଗାର ତିନି ଭାଗରେ ବିଭକ୍ତ; ଯଥା—ବିବାହମୁକ୍ତ ସ୍ୱତନ୍ତ୍ର ଶୃଙ୍ଗାର, ବିବାହଯୁକ୍ତ

---

୪ । କ) 'ଲଳିତଲୋଚନା'—ପ୍ରଥମଛାନ୍ଦ - ଅପ୍ରକାଶିତକାବ୍ୟ, ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କଠାରୁ ସଂଗୃହୀତ ।

ଖ) 'ମୋହନଲତା'— ପ୍ରଥମଛାନ୍ଦ - ଅପ୍ରକାଶିତ କାବ୍ୟ, ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କଠାରୁ ସଂଗୃହୀତ ।

୫ । 'ଲଳିତଲୋଚନା'—୫୨ ଛାନ୍ଦର ୧୨ ପଦରୁ ୧୬ ପଦ ।

୬ । ଓଡ଼ିଆ ସାହିତ୍ୟର ଇତିହାସ—ତୃତୀୟଭାଗ, ପୃ. ୪୯୭- ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ ।

ଶୃଂଗାର ଓ ବିବାହୋତ୍ତର ଶୃଙ୍ଗାର । ପୁନର୍ବାର ବିବାହଯୁକ୍ତ ଶୃଙ୍ଗାର ଦୁଇ-ଭାଗରେ ବିଭକ୍ତ । ଯଥା—ଏକପତ୍ନୀବ୍ରତ ବା ମର୍ଯ୍ୟାଦା ପ୍ରଧାନ ଶୃଙ୍ଗାର ଓ ଅନେକ ପତ୍ନୀ ସମ୍ବନ୍ଧିତ ଶୃଙ୍ଗାର । ଅନେକ ପତ୍ନୀ ସମ୍ବନ୍ଧିତ ଶୃଙ୍ଗାର ଦୁଇଭାଗରେ ବିଭକ୍ତ । ଯଥା—ବୀରତ୍ଵ ଦ୍ଵାରା ବିଜିତ ପତ୍ନୀ ବା ଶୌର୍ଯ୍ୟ ପ୍ରଧାନ ଶୃଙ୍ଗାର ଓ ସୌନ୍ଦର୍ଯ୍ୟ ଦ୍ଵାରା ବଶୀଭୂତ ପତ୍ନୀ ବା ରସିକପ୍ରଧାନ ଶୃଙ୍ଗାର । ଏହିପରି ସମଗ୍ର ସାହିତ୍ୟରେ ବିଭିନ୍ନ ଶୃଙ୍ଗାର ରସର ବର୍ଣ୍ଣନା କରାଯାଇଥିବା ଜଣାଯାଏ । **ସ୍ଵତନ୍ତ୍ର ଶୃଙ୍ଗାର**—ପ୍ରଥମତଃ ବିବାହମୁକ୍ତ ବା ସ୍ଵତନ୍ତ୍ର ଶୃଙ୍ଗାରର ନିଦର୍ଶନ ବିଶ୍ଵର ପ୍ରାଚୀନତମ ସାହିତ୍ୟ ବେଦରେ ପରିଦୃଷ୍ଟ । ଋଗ୍‌ବେଦସ୍ଥ ଯମଯମୀ ଉପାଖ୍ୟାନରେ ନାରୀ ପ୍ରକୃତିବାସନା ପରିଚାଳିତ ହୋଇ ସ୍ଵୟଂ ପୁରୁଷ ସହିତ ଯୌନ ସମ୍ପର୍କ ସ୍ଥାପନ କରିବା ନିମିତ୍ତ ଯତ୍ନ କରିଛି । ପୁରୁରବା ଉର୍ବଶୀ ପ୍ରସଙ୍ଗରେ ବିବାହ ନିରପେକ୍ଷ ଅସ୍ଥିର ଦାମ୍ପତ୍ୟର ନିଦର୍ଶନ ପରିଲକ୍ଷିତ ହୁଏ । ମହାଭାରତରେ ମଧ୍ୟ ସ୍ତ୍ରୀ ସ୍ଵତନ୍ତ୍ର ଓ ସ୍ଵୈରିଣୀ ହୋଇ ପୁରୁଷ ଅନ୍ଵେଷଣରେ ରହିବାର ଉଦାହରଣ ମିଳେ ।

ଉକ୍ତ ଯୁଗରେ ମଧ୍ୟ ଯୁବତୀମାନେ ବସନ୍ତ ଉତ୍ସବାଦି ମଧ୍ୟରେ ପତି ମନୋନୟନ କରୁଥିଲେ । ଯୌବନ ପ୍ରାପ୍ତିଠାରୁ ବିବାହ ସମୟ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରହୁଥିବାରୁ ଅବିବାହିତ ଜୀବନରେ ସଂମ୍ଭୋଗର ସୁବିଧା ସେମାନେ ମିଳନ, ଅଧିସ୍ଥନ ଅଭିମନନର ପରିପ୍ରେକ୍ଷୀରେ ଚାଉଥିଲେ । ସମାଜରେ ମଧ୍ୟ ତତ୍‌ପ୍ରତି କୌଣସି ପ୍ରତିବନ୍ଧକ ନଥିଲା । ଓଡ଼ିଆ ସାହିତ୍ୟରେ ମଧ୍ୟ ଏହିଭଳି ଶୃଙ୍ଗାର ପରିଲକ୍ଷିତ ହୁଏ । ଓଡ଼ିଆ ସାହିତ୍ୟର ରସିକହାରାବଳୀ, ଇଚ୍ଛାବତୀ, ଉଷାଭିଳାଷ ପ୍ରଭୃତି କାବ୍ୟମାନ ସ୍ଵତନ୍ତ୍ର ଶୃଙ୍ଗାର ଧର୍ମୀ କାବ୍ୟ ଅଟେ ।

**ମର୍ଯ୍ୟାଦା ପ୍ରଧାନ ଶୃଙ୍ଗାର**—ଏକପତ୍ନୀବ୍ରତ ବା ମର୍ଯ୍ୟାଦା ପ୍ରଧାନ ଶୃଙ୍ଗାରର ନିଦର୍ଶନ ସଂସ୍କୃତ ରାମାୟଣରେ ଦେଖାଯାଏ । ବୈଦିକଯୁଗ ପରେ ଆର୍ଯ୍ୟମାନଙ୍କର ଅନାର୍ଯ୍ୟମାନଙ୍କ ସହିତ ବିବାହ ହେତୁ କ୍ରମେ ନାରୀମାନଙ୍କର ଅବସ୍ଥା ନ୍ୟୁନସ୍ତରକୁ ଆସିଲା । କାରଣ ବିଜୟୀ ବିଜିତ ସମାଜରୁ ଗ୍ରହଣ କରିଥିବା ସ୍ତ୍ରୀକୁ ଗୃହରେ ଉଚ୍ଚ ସ୍ଥାନ ଦେବାକୁ କୁଣ୍ଠା ବୋଧକଲା । ତତ୍ ସହିତ କ୍ଷତ୍ରୀୟମାନଙ୍କର ଅଭ୍ୟୁଦୟ ହେତୁ ସେମାନଙ୍କର ସମ୍ମାନ ଅଭିବୃଦ୍ଧି ହେଲା । କ୍ଷତ୍ରୀୟମାନେ ସମାଜରେ ଉଚ୍ଚସ୍ଥାନ ଅଧିକାର କଲେ, ତେଣୁ ସେମାନେ ନିଜର କନ୍ୟାମାନଙ୍କୁ ସ୍ଵୟମ୍ବର ମାଧ୍ୟମରେ ନିଜ ଇଚ୍ଛା ଅନୁସାରେ

ପତି ବରଣ କରିବା ପାଇଁ ଅନୁମତି ଦେଲେ । ଫଳରେ ଏକ ପତିବ୍ରତ ବା ପତ୍ନୀବ୍ରତର ଆବଶ୍ୟକତା ସମାଜରେ ଉପଲବ୍ଧ ହେଲା । ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କର ବୈଦେହୀଶ ବିଳାସ, ଧନଞ୍ଜୟ ଭଞ୍ଜଙ୍କ ରଘୁନାଥ-ବିଳାସ, ଯଦୁମଣି ମହାପାତ୍ରଙ୍କ ରାଘବ ବିଳାସ, ଇତ୍ୟାଦି ଏହି ଧରଣର କାବ୍ୟ ।

**ଶୌର୍ଯ୍ୟ ପ୍ରଧାନ ଶୃଙ୍ଗାର**—ଶୌର୍ଯ୍ୟ ପ୍ରଧାନ ଶୃଙ୍ଗାର ବା ବୀରତ୍ୱ ଦ୍ୱାରା ବିଜିତ ପତ୍ନୀ ସୃଷ୍ଟ ଶୃଙ୍ଗାରର ଉଦାହରଣ ମହାଭାରତ ମଧ୍ୟରେ ଦେଖିବାକୁ ମିଳେ । ସମାଜରେ କ୍ଷତ୍ରିୟମାନଙ୍କର ପ୍ରାଧାନ୍ୟର ଅଭିବୃଦ୍ଧି ପରେ ବ୍ରାହ୍ମଣ ମାନଙ୍କର ପ୍ରାଧାନ୍ୟ କମିବାକୁ ଲାଗିଲା । ଶୌର୍ଯ୍ୟର ପ୍ରତିଷ୍ଠା ବଢ଼ିବା ସହିତ ବିଜିତ ରାଜ୍ୟରୁ ଅର୍ଥାଗମର ପଥ ପରିଷ୍କାର ହେଉଥିବାବେଳେ ଅର୍ଥ ଜନିତ ବିଳାସିତାର ବୃଦ୍ଧି ମଧ୍ୟ ହୋଇଥିଲା । କାମିନୀ କାଞ୍ଚନର ସମ୍ଭୋଗ ତନ୍ମଧ୍ୟରେ ମୁଖ୍ୟ ଆସନ ଲାଭ କରିଥିଲା । ଓଡ଼ିଆ ସାହିତ୍ୟରେ ପୁରୁଷୋତ୍ତମ ଦାସଙ୍କ କାଞ୍ଚିକାବେରୀ, ଉପେନ୍ଦ୍ର ଭଞ୍ଜଙ୍କ ସୁଭଦ୍ରା ପରିଣୟ, ଘନକୃଷ୍ଣଙ୍କର ସୁଭଦ୍ରା ହରଣ ପ୍ରଭୃତି କାବ୍ୟ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

**ପରକୀୟା ଶୃଙ୍ଗାର**—ପରକୀୟା ଶୃଙ୍ଗାର ବା ବିବାହୋତ୍ତର ଶୃଙ୍ଗାର; ଶୃଙ୍ଗାର ପରମ୍ପରାରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ବୈଷ୍ଣବ କବିମାନେ ରାଧାକୃଷ୍ଣଙ୍କ ପରକୀୟା ଶୃଙ୍ଗାରର ଅବଲମ୍ବନରେ ଶୃଙ୍ଗାର ମଧ୍ୟରେ ପରକୀୟାକୁ ଶ୍ରେଷ୍ଠ ସ୍ଥାନ ଦେଇ ଅଛନ୍ତି । ଏହି ଶୃଙ୍ଗାରର ଜନ୍ମ ଏକ ଧାର୍ମିକ ଓ ମାନସିକ ପରିବେଶ ମଧ୍ୟରୁ । ମନ୍ୱାଦି ଶାସ୍ତ୍ରରେ ବାଲ୍ୟବିବାହର ଅନୁମୋଦନ ହେତୁ ସ୍ୱତନ୍ତ୍ର ଶୃଙ୍ଗାରର ଅବକାଶ ଆଉ ରହି ନ ଥିଲା । କାରଣ ଏଥିପାଇଁ ଆବଶ୍ୟକୀୟ ସମସ୍ତ ଯୌବନ ପ୍ରାପ୍ତି ଓ ବୈବାହିକ ଯୌନ ମିଳନ ମଧ୍ୟରେ ନ ଥିଲା ଏବଂ ଭଲ ପାଇବାର ସ୍ୱତନ୍ତ୍ରତା ଲୁପ୍ତ ହୋଇ ବୈବାହିକ ଶୃଙ୍ଖଳା ମଧ୍ୟରେ ନିବଦ୍ଧ ହୋଇଥିଲା । ସମ୍ଭୋଗ ପ୍ରବଣ ମନ ଏହା ଭିତରେ ସୀମିତ ହୋଇ ରହି ପାରି ନ ଥିଲା । ଅଧିକନ୍ତୁ ଅପାରଗ ନାୟକ ନାୟିକା ଏହି ବୈବାହିକ ପରମ୍ପରାର ବୃତି ମଧ୍ୟରେ ପାରଗ ଭଳି ପ୍ରତୀୟମାନ ହେଉଥିଲେ । ଓଡ଼ିଆ ସାହିତ୍ୟରେ ଲିଖିତ କୃଷ୍ଣ କାବ୍ୟ ସମୂହ ଏହି ପରକୀୟା ଶୃଙ୍ଗାରର କମନୀୟ ରୂପ ଧାରଣ କରି ଅଦ୍ୟାବଧି ମୂର୍ତ୍ତିମନ୍ତ ହୋଇଅଛନ୍ତି ।

**ଧର୍ମ ସମନ୍ୱିତ ଶୃଙ୍ଗାର**—ଧର୍ମ-ସମନ୍ୱିତ ଶୃଙ୍ଗାରର ସୃଷ୍ଟି ଓ ସ୍ଥିତି କୌତୂହଳପ୍ରଦ । ଆର୍ଯ୍ୟ, ଅନାର୍ଯ୍ୟ ସଭ୍ୟତାର ସମନ୍ୱୟ ମଧ୍ୟରେ ବୈଦିକ ଦେବତା ବିଷ୍ଣୁ ଓ ସୂର୍ଯ୍ୟ ଅନାର୍ଯ୍ୟ ଦେବତା ପଶୁପତି ଶିବଙ୍କ ସହ ଏକ ପର୍ଯ୍ୟାୟରେ ଅବସ୍ଥାନ କଲେ । ଶକ୍ତିଯୁକ୍ତ ଲିଙ୍ଗର ପୂଜା ଓ ପ୍ରକୃତିପୁରୁଷ ସମନ୍ୱିତ ଦେବଦେବୀ ପୂଜାଧର୍ମ କ୍ଷେତ୍ରରେ ଶୃଙ୍ଗାର ଚେତନାକୁ ଦୃଢ଼ୀଭୂତ କଲା ।

**ପ୍ରତିବନ୍ଧିତ ଶୃଙ୍ଗାର**—ଏହି ଶୃଙ୍ଗାରରେ ନାୟକ ନାୟିକା ବିଭିନ୍ନ ଦୈବୀମାନବୀ ସୃଷ୍ଟ ପ୍ରତିବନ୍ଧକକୁ ଏଡ଼ାଇଦେଇ ପରସ୍ପରର ସହିତ ମିଳିତ ହୁଅନ୍ତି । ଏହି ଶୃଙ୍ଗାରର ଚିତ୍ର ମୃଚ୍ଛକଟିକ, ଦଶ କୁମାର ଚରିତ, କାଦମ୍ବରୀ ଓ ନୈଷଧ ଆଦି ସଂସ୍କୃତ କାବ୍ୟରେ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟରେ ଏହି ପ୍ରତିବନ୍ଧିତ ଶୃଙ୍ଗାର ପରିମଳା, ପ୍ରେମଲୋଚନା ପ୍ରଭୃତି କାବ୍ୟରେ ଦେଖାଯାଏ ।

**ରତିବନ୍ଧ ଶୃଙ୍ଗାର**—ଏହି ପ୍ରକାର ଶୃଙ୍ଗାର ପ୍ରଥମେ ଜୟଦେବଙ୍କ ଗୀତଗୋବିନ୍ଦରେ ଦେଖିବାକୁ ମିଳେ । ଏହି ଶୃଙ୍ଗାର ଚିତ୍ରରେ ଅଳଙ୍କାର ଶାସ୍ତ୍ରଗତ ଶୃଙ୍ଗାର ନିୟମକୁ ଉଲ୍ଲେଖମୂଳକ ଭାବରେ ସ୍ଥାନ ଦିଆଯାଇଅଛି । ଭରତ, ଦଣ୍ଡୀ, ବାମନ, ମମ୍ମଟ ପ୍ରଭୃତି ଆଚାର୍ଯ୍ୟମାନେ ଜୟଦେବଙ୍କ ପୂର୍ବରୁ ନିଜର କାବ୍ୟଶାସ୍ତ୍ରମାନ ରଚନା କରିସାରିଥିବାରୁ ତତ୍‌ପ୍ରଭାବରେ ଜୟଦେବ ନିଜ ରଚିତ କାବ୍ୟରେ ରାଧାଙ୍କଠାରେ ନାୟିକାଭେଦ ଆରୋପ ପୂର୍ବକ ପ୍ରୋଷିତ ଭର୍ତ୍ତୃକା, ବାସକସଜ୍ଜା, ବିପ୍ରଲବ୍‌ଧା, ଉତ୍କଣ୍ଠିତା, ଖଣ୍ଡିତା କଳହାନ୍ତରିତା, ଅଭିସାରିକା ଓ ସ୍ୱାଧୀନ ଭର୍ତ୍ତୃକା ପ୍ରଭୃତି ଅଷ୍ଟନାୟିକାକୁ ଉଲ୍ଲେଖ କରିଅଛନ୍ତି । ରୀତିକାଳୀନ ଓଡ଼ିଆ ସାହିତ୍ୟରେ ଏହାର ଚିତ୍ର ସୁସ୍ପଷ୍ଟ । ରୀତିକାଳୀନ କବିମାନେ ବହୁ କାବ୍ୟରେ ନାମୋଲ୍ଲେଖ ପୂର୍ବକ ଶାସ୍ତ୍ରୀୟ ଶୃଙ୍ଗାରର ବର୍ଣ୍ଣନା କରିଯାଇଅଛନ୍ତି । କବି ଅଭିମନ୍ୟୁ ଶାସ୍ତ୍ରୀୟ ନିୟମର ଅବଲମ୍ବନରେ 'ବିଦଗ୍ଧ ଚିନ୍ତାମଣି' ର ଏକବିଂଶ ଛାନ୍ଦରେ ଚନ୍ଦ୍ରାବଳୀର ସମ୍ଭୋଗ ବର୍ଣ୍ଣନା ମଧ୍ୟରେ ବାହ୍ୟାସ୍ତନ ସ୍ପର୍ଶ, ନୀବୀମୋକ୍ଷ, ଚୁମ୍ବନ ଦନ୍ତକ୍ଷତ, ନଖକ୍ଷତ, ଶୀତ୍କାର, ହୁଂକାର ପ୍ରଭୃତିର ବର୍ଣ୍ଣନା କରିଯାଇ ଅଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ ରଚନାରେ ଅନୁରୂପ ବର୍ଣ୍ଣନା ପରିଦୃଷ୍ଟ ହୁଏ ।

**ଶ୍ଳେଷ ଶୃଙ୍ଗାର**—ଓଡ଼ିଆ ସାହିତ୍ୟରେ ଏହି ବର୍ଣ୍ଣନା ଗୁଡ଼ିକ ବହୁସ୍ଥଳରେ ଦୁଇଅର୍ଥବୋଧକ ପଦାବଳୀରେ ପ୍ରକାଶ ଲାଭ କରିଛି । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଭଞ୍ଜ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସହିତ ପୁଷ୍ପକେତୁର ମିଳନକୁ ବର୍ଣ୍ଣନା କରିବାକୁ ଯାଇ ଶରତଭାଦରଋତୁର ବର୍ଣ୍ଣନା କରିଅଛନ୍ତି । ବିଦଗ୍ଧଚିନ୍ତାମଣି କାବ୍ୟର ୮୪ ଛାନ୍ଦରେ ମଧ୍ୟ ଋତୁବର୍ଣ୍ଣନା ଅନୁକ୍ରମରେ ସଂଯୋଗର ରସ ବର୍ଣ୍ଣନା କରାଯାଇଅଛି । କବିସୂର୍ଯ୍ୟ ବଳଦେବ ରଥ ତାଙ୍କ 'କିଶୋର ଚନ୍ଦ୍ରାନନ - ଚମ୍ପୂରେ' ବସନ୍ତ ବର୍ଣ୍ଣନା ଓ ଶ୍ରୀକୃଷ୍ଣ ରାଧାଙ୍କର ସୁରତ ବର୍ଣ୍ଣନାକୁ ଏକ ସମୟରେ କରିଅଛନ୍ତି ।

**ବିପ୍ରଲମ୍ଭ ଶୃଙ୍ଗାର**—ଓଡ଼ିଆ ସାହିତ୍ୟର ବହୁକାବ୍ୟରେ ବିପ୍ରଲମ୍ଭ ଶୃଙ୍ଗାର ଜନିତ ପୂର୍ବରାଗ, ମାନ, ପ୍ରବାସର ରସ ପରିଦୃଷ୍ଟ ହୁଏ । କରୁଣ ରସ କ୍ୱଚିତ୍ ପରିଲକ୍ଷିତ ହୁଏ । ପ୍ରାୟ ମିଳନରେ ଉକ୍ତ କାବ୍ୟର ସମାପ୍ତି ଘଟିଥାଏ । ତନ୍ମଧ୍ୟରୁ କେତେକ କାବ୍ୟର ନାମ ଉଲ୍ଲେଖ କରଗଲା । ଯଥା—ରୁଚି-ଇଚ୍ଛାବତୀ, ପ୍ରେମସୁଧାନିଧି, ଉଷାଭିଳାଷ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଅନଙ୍ଗ ରେଖା, ତ୍ରୈଲୋକ୍ୟ ମୋହିନୀ, ତ୍ରିପୁରସୁନ୍ଦରୀ, ରହସ୍ୟମଞ୍ଜରୀ, ଲୀଳାବତୀ, ହାରାବତୀ, କଳାବତୀ ପ୍ରଭୃତି ।

ଏହି ଭାବରେ ଭାରତୀୟ ପରମ୍ପରାରେ ପରିଦୃଷ୍ଟ ସମସ୍ତ ପ୍ରକାର ଶୃଙ୍ଗାରର ରସ ଓଡ଼ିଆ ସାହିତ୍ୟର ରୀତିକାଳୀନ ରଚନାରେ ଦେଖାଯାଏ । ତେଣୁ ଏହି ଯୁଗର ରଚନା ସମଗ୍ର ଭାରତୀୟ ଶୃଙ୍ଗାର ପରମ୍ପରାର ଏକ ମୂର୍ତ୍ତିମନ୍ତ ବିଗ୍ରହ ।

ଶୃଙ୍ଗାର ରସର ପ୍ରକାଶ ରୀତିକାଳରେ ମୁଖ୍ୟସ୍ଥାନ ଅଧିକାର କରିଥିଲା । ତେଣୁ ଏହାର ବିପୁଳ ବର୍ଣ୍ଣନା କାବ୍ୟକ୍ଷେତ୍ରରେ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟର ମୁକ୍ତକ ଓ ପ୍ରବନ୍ଧ କାବ୍ୟ ମଧ୍ୟରେ ଏହା ଯେପରି ଅଭିବ୍ୟକ୍ତି ଲାଭ କରିଥିଲା । ସେହିପରି ଏହା ବିକଶିତ ହୋଇଥିଲା ସ୍ୱକୀୟା ଓ ପରକୀୟା ପ୍ରେମରେ । ରୀତିଯୁଗୀୟ କାବ୍ୟ ଅଧିକ ପରିମାଣରେ ସ୍ୱକୀୟା ଭାବ ଦ୍ୱାରା ପୁଷ୍ଟ । ଉପେନ୍ଦ୍ରଙ୍କ ଭାଷାରେ 'ପରଦ୍ରବ୍ୟ ପର ସ୍ତ୍ରୀରୀ ହରଣକୁ, ଲେଖୁ ଶୁଭକର ତହୁଁ ମରଣକୁ ।' ଉପେନ୍ଦ୍ରଭଞ୍ଜ ସ୍ୱକୀୟା ଶୃଙ୍ଗାରକୁ ନିଜକାବ୍ୟ ମଧ୍ୟରେ ପ୍ରାଧାନ୍ୟ ଦେଇଥିଲେ । ଏହାଙ୍କ ପୂର୍ବରୁ ଧନଞ୍ଜୟ, ନରସିଂହ ସେଣ, ଅର୍ଜୁନ ଦାସ, ବିଷ୍ଣୁ ଦାସ ପ୍ରଭୃତି ସ୍ୱକୀୟା ଶୃଙ୍ଗାର ଅବଲମ୍ବନରେ

କାବ୍ୟ ରଚନା କରିଥିଲେ । ପରବର୍ତ୍ତୀ କବିମାନେ ମଧ୍ୟ ଭଞ୍ଜଙ୍କୁ ଅନୁକରଣ କରି କାଳ୍ପନିକ କାବ୍ୟରେ ସ୍ୱକୀୟା ଶୃଙ୍ଗାରକୁ ସ୍ଥାନ ଦେଇଥିଲେ । କେବଳ କୃଷ୍ଣଭକ୍ତ ଚରମ୍ପରାର କବିମାନେ ପରକୀୟା ଶୃଙ୍ଗାରକୁ ଭିତ୍ତିକରି ରାଧାକୃଷ୍ଣ ଭକ୍ତିମୂଳକ କାବ୍ୟ ରଚନା କରିଥିଲେ ।

ସଦାନନ୍ଦଙ୍କ କାଳ୍ପନିକ କାବ୍ୟ ମୋହନ ଲତା ଓ ନଳିନ-ଲୋଚନାରେ ସ୍ୱକୀୟା ଶୃଙ୍ଗାର ଓ କୃଷ୍ଣଭକ୍ତିମୂଳକ କାବ୍ୟ ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ପ୍ରେମ ତରଙ୍ଗିଣୀ, ପ୍ରେମ କଳ୍ପଲତା, ବ୍ରଜଲୀଳାମୃତ ସମୁଦ୍ର, ସଙ୍ଗୀତ ସଦାନନ୍ଦ ପ୍ରଭୃତି କାବ୍ୟରେ ପରକୀୟା ଶୃଙ୍ଗାରର ବର୍ଣ୍ଣନା ଦେଖିବାକୁ ମିଳେ । ସଦାନନ୍ଦଙ୍କ ରଚିତ କୃଷ୍ଣ ବିଷୟକ କେତେକ ଚଉପଦୀ, ଚଉତିଶା ପ୍ରଭୃତିରେ ମଧ୍ୟ ପରକୀୟା ଶୃଙ୍ଗାର ରସର ବର୍ଣ୍ଣନା ଦେଖିବାକୁ ମିଳେ । ପୁରାଣମାନଙ୍କରେ ବର୍ଣ୍ଣିତ କୃଷ୍ଣଙ୍କର କୈଶୋର-ଲୀଳା ଅନ୍ତର୍ଗତ ଶୃଙ୍ଗାର ମୁଖ୍ୟତଃ ଶ୍ରୀମଦ୍ ଭାଗବତରୁ ଗୃହୀତ । ଏହା ରାଧାକୃଷ୍ଣ ବିଷୟକ କାବ୍ୟ ସମୂହକୁ ପ୍ରଭାବିତ କଲା ଓ ରୀତିକାଳୀନ କବିମାନେ ନାୟକ ନାୟିକା ରୂପରେ ରାଧାକୃଷ୍ଣଙ୍କୁ ଗ୍ରହଣ କରି ପରକୀୟା ଶୃଙ୍ଗାର ବର୍ଣ୍ଣନା ପାଇଁ ବ୍ୟାପକ ପୃଷ୍ଠଭୂମି ରଚନା କଲେ ।

ଏହି ପରିବର୍ତ୍ତନ ଅପ୍ରତ୍ୟାଶିତ ନୁହେଁ । ଏହା ଭାରତୀୟ ସଂସ୍କୃତିର ବିକାଶୋନ୍ମୁଖୀ କ୍ରମିକ ବିକାଶର ପରିଣାମ । ଚୈତନ୍ୟ ସମ୍ପ୍ରଦାୟର ପ୍ରସିଦ୍ଧ ଆଚାର୍ଯ୍ୟ ରୂପ ଗୋସ୍ୱାମୀଙ୍କର ଭକ୍ତିକାବ୍ୟ ଗୁଡ଼ିକ ସମ୍ପୂର୍ଣ୍ଣ ଭାବେ କୃଷ୍ଣଙ୍କର ଶୃଙ୍ଗାରୀ ଭାବନାତ୍ମକ ଭକ୍ତିର ପୃଷ୍ଠପୋଷକ । ଏହାର ମୂଳପାଠ ଶ୍ରୀଚୈତନ୍ୟ-ଦେବ ନିଜେ କରିଥିଲେ । ରାଧାକୃଷ୍ଣଙ୍କର ଶୃଙ୍ଗାର ପୂର୍ଣ୍ଣ ବୃନ୍ଦାବନ ଲୀଳା ସମ୍ବନ୍ଧିତ ରୂପଗୋସ୍ୱାମୀଙ୍କର ପ୍ରାୟ ୭୦ଟି ସ୍ତୋତ୍ର, ଗୀତ, ପଦାବଳୀ ଆଦିର ବୃହତ ସଂଗ୍ରହ, ସ୍ତବମାଳା ନାମରେ ଶ୍ରୀଜୀବ ଗୋସ୍ୱାମୀ ପ୍ରସ୍ତୁତ କଲେ ।

ମଧ୍ୟକାଳୀନ ରୀତିଯୁଗରେ ଭକ୍ତି ଶୃଙ୍ଗାରର ଚରମ ବିକାଶ ଓଡ଼ିଆ ସାହିତ୍ୟରେ ଦେଖାଯାଏ । କବି ସଦାନନ୍ଦଙ୍କ ମତରେ ବୈକୁଣ୍ଠରେ ଲକ୍ଷ୍ମୀ ଓ ନାରାୟଣଙ୍କ ବିହାର, ଦ୍ୱାରକାରେ କୃଷ୍ଣ ଓ ମହିଷୀମାନଙ୍କ ବିହାର, ହର ଓ ପାର୍ବତୀଙ୍କ ବିହାର, ସୀତାରାମଙ୍କ ବିହାର ଶୃଙ୍ଗାର ରସାତ୍ମକ ହେଲେ ମଧ୍ୟ ତାହା ସମ୍ଭୋଗ ନାମରେ ଖ୍ୟାତ । ମାତ୍ର ବ୍ରଜର ଶୃଙ୍ଗାର ନିଷ୍ଠା ସହିତ ଏ ସବୁ ସମାନ ନୁହେଁ । ଏହି ଯୁକ୍ତି ବାଢିବାକୁ ଯାଇ କବି ସଦାନନ୍ଦ ତାଙ୍କ 'ନିଷ୍ଠାନୀଳମଣି' କାବ୍ୟରେ ଉଲ୍ଲେଖ କରିଅଛନ୍ତି :—

'ଶୁଣ ହେ ବ୍ରଜ ଉପାସକେ । ଅବିଶ୍ୱାସ କର ଅବାକେ । ୧ ।
ବର୍ଣ୍ଣବ ଏକା ବଚନରେ । ଶୃଂଗାର ରସ କ ପ୍ରକାରେ । ୨ ।
ଧଂସାରନ୍ତରେ ସେହି ଆକାର । ବୈକୁଣ୍ଠେ ଯୁଗଳ ବିହାର । ୩ ।
ଦ୍ୱାରକାରେ ସହସ୍ର କୋଟି । ମହିଷୀ ସଂଗେ ବିହରେଟି । ୪ ।
ପାର୍ବତୀ ଶିବ ସହିତରେ । ମହାନନ୍ଦ କୈଳାସେ କରେ । ୫ ।
ଅଯୋଧ୍ୟାରେ ସୀତାରାମର । କେହି ନିଷ୍ଠା ବ୍ରଜେ ଶୃଂଗାର । ୬ ।
ତୁମ୍ଭଙ୍କୁ ତା ବୁଝାଇ କହି । ଗୋରସ ସ୍ୱାଦୁ ସର୍ବ କହି । ୭ ।
ଅଗ୍ନିରେ ସିଦ୍ଧ ସେ ଅଧମ । ସେ ସ୍ୱାଦୁ ଉତ୍ତମୁ ଉତ୍ତମ । ୮ ।
ଗୋପୀକୃଷ୍ଣ ମଧ୍ୟରେ ରସ । ପାଇ ବିରସନକ ଝାସ । ୯ ।
ହେଉଥାଇ ନାନା ବିକାର । ଚର୍ଷ୍ଣାତେ ମିଷ୍ଟତା ଅପାର ।୧୦।
ଆଉ ଯୁଗଳ ମଧ୍ୟେ ରସ । ହେଲେହେଁ ଅସ୍ନିଗ୍ଧତା ଆଶ ।୧୧।
ଆଉ ସ୍ଥାନେ ଯେତେ ଯୁଗଳ । ତହିଁରେ ସମ୍ଭୋଗ କେବଳ' (୭) ।୧୨।

ସଦାନନ୍ଦଙ୍କ ଅଧିକାଂଶ କାବ୍ୟ ଆଦି ରସାପ୍ଳୁତ ଥିବାରୁ କବି ନାୟକ ନାୟିକାମାନଙ୍କର ଯୌବନାବସ୍ଥାର କାର୍ଯ୍ୟକଳାପକୁ ବିଶିଷ୍ଟ ସ୍ଥାନ ଦେଇ ଅଛନ୍ତି । ମୁଖ୍ୟତଃ ପ୍ରୀତିରସ ବା ଆଦିରସର ରାଧାକୃଷ୍ଣ ମିଳନ କବିଙ୍କ ଲକ୍ଷ୍ୟ ଥିଲା ।

ସଦାନନ୍ଦଙ୍କ ସମସ୍ତ କୃଷ୍ଣଭକ୍ତି ଆଧାରିତ ଶୃଙ୍ଗାର ରସକୁ ଉଜ୍ଜ୍ୱଳ ରସ ରୂପରେ ସ୍ୱୀକାର କରାଯାଇଥିଲା । ଗୌଡ଼ୀୟ ବୈଷ୍ଣବକବିମାନେ ରସ ଉପାସନାରେ ଅପାର୍ଥିବ ଶୃଙ୍ଗାରର ଚର୍ଚ୍ଚା ବ୍ୟାପକ ଭାବରେ କରିଥିଲେ । ରାଧାକୃଷ୍ଣଙ୍କର ବିବିଧ ବିହାରଲୀଳା ଯଥା ମୂଳ । ଯଥା—ଦାନଲୀଳା, ମାନଲୀଳା, ଛଦ୍ମଲୀଳା, ଦୋଳକ୍ରୀଡ଼ା, ଜଳକ୍ରୀଡ଼ା, ଉପବନ ବିହାର, ହୋଲି ଆଦି ପ୍ରଭୃତି ପରିମାଣରେ ବର୍ଣ୍ଣିତ ହୋଇଥିଲା । ଏହା ବ୍ୟତୀତ ରାଧା-କୃଷ୍ଣଙ୍କର ରୂପଶୋଭା, ଅଷ୍ଟଯାମ, ଷଡ଼ଋତୁ ପ୍ରଭୃତି ମଧ୍ୟ ଏହି ସମୟରେ ବର୍ଣ୍ଣିତ ହୋଇଥିଲା । ମୋଟ ଉପରେ କହିବାକୁ ଗଲେ ରୀତିକାଳୀନ ବୈଷ୍ଣବ ସାହିତ୍ୟରେ ରସୋପାସନାର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥିଲା । ଭକ୍ତି ଓ ଶୃଙ୍ଗାର ସମ୍ବଳିତ ହୋଇ ଯେଉଁ ସାହିତ୍ୟଧାରା ପ୍ରବାହିତ ହେଲା କାଳକ୍ରମେ

---

୭) ନିଷ୍ଠା ମାଳମଣି, ଏକାଦଶ ଛାନ୍ଦ, ରସନିଷ୍ଠା,
କବି—ଶ୍ରୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ପୃ ୫୦-୫୧ ।

ପରବର୍ତ୍ତୀ ସାହିତ୍ୟ ସୃଷ୍ଟିରେ ପାବନ ଭକ୍ତି ଧାରାର ଉପେକ୍ଷିତ ହୋଇ ଲୌକିକ ଶୃଙ୍ଗାରଧାରାର ପ୍ରାଦୁର୍ଭାବ ଘଟିଲା ।

ଏହି ଶୃଙ୍ଗାର ପୁଣି ଦୁଇ ଭାଗରେ ବିଭକ୍ତ ହେଲା । ସମ୍ଭୋଗ ଶୃଙ୍ଗାର ଓ ବିପ୍ରଳମ୍ଭ ଶୃଙ୍ଗାର । ଦର୍ଶନ, ସଂଳାପ, ସ୍ପର୍ଶ, ପ୍ରାକ୍‌କ୍ରୀଡ଼ା, ଆଲିଂଗନ, ଚୁମ୍ବନ, ନଖକ୍ଷତ, ଦନ୍ତକ୍ଷତ, ରତିକ୍ରୀଡ଼ା, ସୁରତାନ୍ତ, ବିବିଧ ବିହାର, ଫଗୁକ୍ରୀଡ଼ା, ଉପବନ ବିହାର । ଜଳକ୍ରୀଡ଼ା, ଶରତ ବର୍ଣ୍ଣନା ପ୍ରଭୃତି ସମ୍ଭୋଗ ଶୃଙ୍ଗାରର ଅନ୍ତର୍ଗତ । ପୂର୍ବାନୁରାଗ, ମାନ ପ୍ରବାସ ବିପ୍ରଳମ୍ଭ ଶୃଙ୍ଗାର ବା ବିୟୋଗ ଶୃଙ୍ଗାରର ଅନ୍ତର୍ଭୁକ୍ତ । ଗୌଡ଼ୀୟ ସମ୍ପ୍ରଦାୟ ବିରହବିଭାବନା ଉପରେ ଆଶ୍ରିତ ପ୍ରେମକୁ ପ୍ରାଧାନ୍ୟ ଦେଇଅଛନ୍ତି । କାରଣ ପରକୀୟା ପ୍ରେମରେ ବିରହର ମହତ୍ତ୍ୱ ଅନିବାର୍ଯ୍ୟ । ନିମ୍ବାର୍କ ସମ୍ପ୍ରଦାୟ ମିଳନର ପକ୍ଷପାତୀ, କାରଣ ସେମାନଙ୍କ ମତରେ ମିଳନରେହିଁ ରସ ସୃଷ୍ଟି ସମ୍ଭବ ହୁଏ । ବଲ୍ଲଭ ସମ୍ପ୍ରଦାୟରେ ଗୋପୀମାନଙ୍କର ବିରହ ସ୍ଥିତିକୁ ପ୍ରେମର ଉତ୍କର୍ଷ ସ୍ଥିତି କୁହାଯାଇଅଛି (୮) ।

କବି ସଦାନନ୍ଦଙ୍କ କାବ୍ୟରେ ଏହି ଉଭୟ ଶୃଙ୍ଗାରର ବର୍ଣ୍ଣନା କରାଯାଇଅଛି । ନାୟକନାୟିକାଙ୍କ ସମ୍ଭୋଗ ବା ସଂଯୋଗରେ କବି ସମ୍ଭୋଗ ଶୃଙ୍ଗାରର ବର୍ଣ୍ଣନା କରିଅଛନ୍ତି ଓ ନାୟକନାୟିକାଙ୍କ ବିଯୋଗରେ କବି ବିପ୍ରଲମ୍ଭ ଶୃଙ୍ଗାରର ବର୍ଣ୍ଣନା କରିଅଛନ୍ତି । କବି ସଦାନନ୍ଦଙ୍କ ବିଭିନ୍ନ କାବ୍ୟରୁ ଏହାର କେତେକଗୋଟି ଉଦାହରଣ ନିମ୍ନରେ ପ୍ରଦାନ କରାଗଲା । ଆଲୋଚ୍ୟ ବର୍ଣ୍ଣନା ଗୁଡ଼ିକରୁ ଅନୁମାନ କରାଯାଏ ଯେ, କବି ସଦାନନ୍ଦ ଭକ୍ତକବି ହେଲେ ମଧ୍ୟ ଶୃଙ୍ଗାରଶାସ୍ତ୍ର ଓ କାମଶାସ୍ତ୍ରରେ ପ୍ରବୀଣ ପଣ୍ଡିତ ଥିଲେ । ତତ୍‌କାଳୀନ ଲୋକଙ୍କ ରୁଚି ଉପଯୋଗୀ କାବ୍ୟକବିତା ଲେଖିବା କବି ଓ ପଣ୍ଡିତମାନଙ୍କ ପକ୍ଷେ ଅତ୍ୟାବଶ୍ୟକ ଥିବା ହେତୁ କବି ସଦାନନ୍ଦ ଏହି ପଥରୁ ଦୂରେଇ ଯାଇପାରିନାହାନ୍ତି । ପ୍ରକଟ ଶୃଙ୍ଗାର ବର୍ଣ୍ଣନା କବି ସଦାନନ୍ଦଙ୍କର କାବ୍ୟ-ମାନଙ୍କରେ ସ୍ଥଳ ବିଶେଷରେ ଦେଖା ଦେଇଥିଲେବି ସମୟର ସ୍ରୋତ ଅନୁଯାୟୀ ଏହା ବିଶେଷ ଦୋଷାବହ ନୁହେଁ ।

---

(୮) 'ରାଧାବଲ୍ଲଭ ସମ୍ପ୍ରଦାୟ ସିଦ୍ଧାନ୍ତ ଓ ସାହିତ୍ୟ', ପୃ. ୧୩୪ରୁ ୧୩୫ ।

**ସଦାନନ୍ଦଙ୍କ କାବ୍ୟରେ ମାଧୁର୍ଯ୍ୟ ବା ଉଜ୍ଜ୍ୱଳ ରସର ବର୍ଣ୍ଣନା :—**

‘କୃଷ୍ଣ ରଖ ପ୍ରାଣ ବୋଲି ବୋଇଲେ । ଭୁଜେ ଭିଡ଼ି ଓଷ୍ଠେ ସୁଧା ପିଇଲେ ॥
ପୁଣି ଗଣ୍ଡ ମଣ୍ଡି ସରୁ ଚୁମ୍ବନେ । ଏଣ୍ୱଚର କର ବେନି ନୟନେ ॥
ରସେ ଚଳାଇ ତହିଁ ରସନାଗ୍ର । ସ୍ତନ ପୀଡ଼ିଲେ କାମେ ମତ୍ତ ବ୍ୟଗ୍ର ॥
ଓଷ୍ଠ କର୍ଣ୍ଣ ଚୁଚୁକରେ ରସନା । ବୁଲାଇଲେ ସେ କରି କେତେ ଅନା ॥
କେଶା କରଷଣ କରି ବିବାଧ । ଗଣ୍ଡ ଅଧର କୁଚେ ଦନ୍ତଘାତ ॥
ଗ୍ରୀବା ଉରଜ ନିତମ୍ବ ମଣ୍ଡଳେ । ନଖ କ୍ଷତ କଲେ ଅତି ପ୍ରବଳେ ॥
ନାଭି ହୃଦରେ ମୁଷ୍ଟି ଘାତ କରି । ଦୁଇ ପାଣି ସେ ଏକ କରେ ଧରି ॥
ହୃଷ୍ଟ ପେଟିକା ସେ ଶ୍ରୋଣି ଦେଶରେ । କର ତ୍ରିହାରନ୍ତ ମନ୍ଦ ହାସରେ ॥
ଉରୁ ସନ୍ଧିରେ କରଜ ଚଳାଇ । ନାଭି ମର୍ଦ୍ଦିଲେ ସେ ନଖ ହଲାଇ ॥
ସରୁ ଫୁଙ୍କ ଚଳାଇ ଖୁଣ୍ଟଂଗରେ । ଧୁଣି ଭ୍ରମର ଝଙ୍କାର ହୁଙ୍କାରେ ॥
କର୍ଣ୍ଣବିଳେ ପ୍ରବେଶ କଲେ ନେଇ । ସେ ଯେ ଅବଳା ତରଳେ କମ୍ପଇ ॥
ଆଞ୍ଚ ପାଞ୍ଚ ଘୁଞ୍ଚିବାର ଗୃହସ୍ତି । ଜାଣେ ସହଜେ ସେ ନବ ଚତୁସ୍ତି ॥
କାମମୋଦେ ହୋଇବାରୁ ଅଜ୍ଞାନ । ନା ନା ଉଁ ହୁଁ ଏ ପ୍ରକାର ବଚନ ॥
ବାହ୍ୟ ଶୃଂଗାର ସାରି ବନମାଳୀ । ଚତୁଃଷଷ୍ଟି କଳାରେ ମନ ବଳି ॥
ଗ୍ରାମ୍ୟ ଗଜ ନାଗ ପଶୁ ଚନ୍ଦ୍ରାଦି । ବନ୍ଧେ ରସିଲେ ସେ ସୁଖ ଆସ୍ୱାଦ (୯) ॥

**‘ପ୍ରେମତରଙ୍ଗିଣୀ’**ର ୨୫ ଛାନ୍ଦରେ କବି ରାଧାକୃଷ୍ଣଙ୍କ ପ୍ରେମରେ ସ୍ୱକୀୟା ପ୍ରେମଭାବ ସ୍ଥାପନ କରିଅଛନ୍ତି ।

‘ରାଧିକା ଭଣି କ ବୋଇଲୁଟି ମୂର୍ତ୍ତି
ରସନା ନ ଖାଇଲୁ ନ ଗଲି ଛିଡ଼ି ଗୋ
ପ୍ରାଣନାଥଙ୍କୁ ବୋଲୁ ପରପୁରୁଷ
ଯେଉଁ ବନ୍ଧୁ ଆମ୍ଭର ଧନ ସର୍ବସ୍ୱଲେ । ୫ ।

× × ×

କର ଗ୍ରହଣ ମାତ୍ର ଅଭିମନ୍ୟୁର
କୃଷ୍ଣ କେବଳ ମୋର ପ୍ରାଣ ଈଶ୍ୱରଲେ
ପତି ପୁରୁଷ ହେଲେ ଲାଗନ୍ତା ଦୋଷ

---

(୯) ଯୁଗଳ ରସାମୃତ ଲହରୀ—ଛାନ୍ଦ ୧୭

କେଶ ଆକରଷଣ କରି ଗ୍ରୀବାକୁ ବନ୍ଧେ ରଖି କାମେ ରତହେ
ଗଣ୍ଡ ଅଧର ସ୍ତନରେ ଦନ୍ତଘାତ କଲେ ଯା ଶାସ୍ତ୍ର ଉକତ ହେ
ସୁଜନେ
ଗ୍ରୀବା କୁଚ ନିତମ୍ବରେ ହେ
କରଜ ମାରଣ କ୍ଷତ କଲେ ମୁଷ୍ଟି
ଘାତ ନାଭି ହୃଦୟରେ ହେ । ୧୦ ।

× × ×

ଲଭଣ ଚତୁର ଗୃତୁସି ଚତୁଷି ତରଳ ହୋଇ ଚଞ୍ଚଳା ହେ
ମଦନ ମାଦକେ ମତ୍ତହୋଇ ବାଳା ଖେଳାଇ ଆସଇ ଡୋଳା ହେ
ସୁଜନେ
ସୁରତ ଶାସ୍ତ୍ରେ ନ ଥିବ ହେ
ଯେଉଁ ରୂପେ ଚନ୍ଦ୍ରା- ବଳୀ ବନମାଳୀ
କଲେ ପ୍ରୀତି ଅନୁଭବ ହେ । ୧୨ । (୧୦)

ଯୁଗଳ ରସାମୃତ ଭଞ୍ଜିସରେ କବି ସଦାନନ୍ଦ ଶ୍ରୀରାଧାଙ୍କୁ ଅଷ୍ଟମ ଛାନ୍ଦରେ ବାସକ ସଜ୍ଜା, ଦଶମ ଛାନ୍ଦରେ ଅଭିସାରିକା, ଏକୋଇଶ ଛାନ୍ଦରେ ବିରହୋତ୍କଣ୍ଠିତା, ଚବିଶ ଛାନ୍ଦରେ ଖଣ୍ଡିତା, ଛପ୍ପାଳିଶ ଛାନ୍ଦରେ ପ୍ରୋଷିତ ଭର୍ତ୍ତୃକା ନାୟିକା ରୂପେ କଳ୍ପନାକରି ଶୃଂଗାର ବର୍ଣ୍ଣନା କରିଅଛନ୍ତି । ଏହି କାବ୍ୟର ୨୨ ଛାନ୍ଦରେ କବି ବିପ୍ରଲମ୍ଭ ଶୃଂଗାରର ବର୍ଣ୍ଣନା କରିଅଛନ୍ତି ।

**କାମଶାସ୍ତ୍ର ବର୍ଣ୍ଣନା :—**

କବି ସଦାନନ୍ଦ କାମଶାସ୍ତ୍ରକୁ ଅବଲମ୍ବନ କରି ଏକ ସ୍ୱତନ୍ତ୍ର ଗ୍ରନ୍ଥ 'ସ୍ମରଦୀପିକା' ଲେଖିଯାଇଅଛନ୍ତି । ଏହି 'ସ୍ମରଦୀପିକା' ଏକ ଅନୁବାଦ ଶାସ୍ତ୍ର ଥିବା କବି ନିଜେ ବ୍ୟକ୍ତ କରିଅଛନ୍ତି । ଯଥା—

ସ୍ମରଦୀପିକା ନାମ ତାର । ପରାକୃତ କଲି ପୟାର ॥

× × ×

ଅନେକ ଶାସ୍ତ୍ର ମାନଙ୍କର । ଆଣି କହିବା ତହୁଁ ସାର ॥
କାମ ଉତ୍ପତ୍ତି ନାରୀଙ୍କର । ରତି ସନ୍ତୋଷ ଯେ ପ୍ରକାର ॥
ସାର ପୁରୁଷଙ୍କ ବୋଧକୁ । ରସିକମାନଙ୍କ ସୁଖକୁ ॥
କାମଶାସ୍ତ୍ରକୁ ଯେ ଜାଣନ୍ତି । ରମଣୀ ପ୍ରିୟ ସେ ହୁଅନ୍ତି ॥

---

(୧୦) 'ପ୍ରେମତରଙ୍ଗିଣୀ', ଛାନ୍ଦ ୨୦, ପୃ. ୧୦୯-୧୧୦ ।

ଶାସ୍ତ୍ର ନ ଜାଣି ଯା ରମଣ । ସେ ନର ପଶୁ ପର ଜାଣ ॥
ନାନା ବିଧାନରେ ସୁରତ । ଉପଶ୍ଚର ନାରୀ ସୁଖାର୍ଥେ ॥
ଜନ୍ମଫଳ ଏ ମନୁଷ୍ୟର । ସମ୍ଭୋଗ ବିଧି ମତେ ସାର ॥

× × ×

ଶାସ୍ତ୍ର ଜାଣି ଶୃଙ୍ଗାର ଯାର । ରସିକ ଅଟନ୍ତି ସେ ନର ॥
ଆପଣା ନାରୀଙ୍କି ରଖନ୍ତି । ପରଦାର ମନ ତୋଷନ୍ତି ॥
ବନ୍ଧମାନ ଜାଣି ପାରନ୍ତି । ଏ ଶାସ୍ତ୍ର ଫଳ ଏହିମତ ॥
ଅଥଃ ଗ୍ରନ୍ଥ ଲକ୍ଷଣ ଫଳ । ଅନୁକ୍ରମଣି କରି ମୂଳ ॥
ପ୍ରଥମେ ପୁରୁଷ ଲକ୍ଷଣ । ଲିଙ୍ଗ ଲକ୍ଷଣ ଗୁଣ ଜାଣ ॥
ନାରୀ ଲକ୍ଷଣ ସେହିପରି । କନ୍ୟା ଲକ୍ଷଣକୁ ବିଚାରି ॥
ଭଗ ଲକ୍ଷଣ ସେହିମତ । ଅସମରଥ ସମରଥ ॥
କାମ ସ୍ଥାନରେ ଯେ ବିଧାନ । ପୁଣି ଯେମନ୍ତେ କାମ ସ୍ଖଳନ ॥
ଚୁମ୍ବନ ସ୍ଥାନରେ ବିଧାନ । ଯେ ନଖ ଦନ୍ତ ସ୍ଖଳନ ॥
ଷୋଡ଼ଶ ବନ୍ଧ ପୁରୁଷର । ଊର୍ଦ୍ଧ୍ୱ ରତ ଯେମନ୍ତେ ବେଶ୍ୱର ॥
ସୁନ୍ଦରୀ ମାନଙ୍କର ଏହି । ଦୁଇ ପ୍ରକାରେ ବନ୍ଧ ହୋଇ ॥
ତାହାରେ ସୁଖ ରତ ଯେମନ୍ତେ । କହିବା ବିବିଧ ବିଧାନେ ॥
ଶୃଙ୍ଗାର ଦେଶ ଦେଶ ସ୍ଥିତି । ନାରୀଙ୍କ ସୁଖ ଜାତ ମତ ॥
ନାରୀଙ୍କ ସମ୍ଭୋଗ କଥନ । ଲିଙ୍ଗ ବର୍ଦ୍ଧନର ବିଧାନ ॥
କାଳାଦି କଥନ ସହିତେ । ରମଣୀ ଇଙ୍ଗିତ ଯେମନ୍ତେ ॥
ଯେମନ୍ତେ ରମଣୀଙ୍କ ଲକ୍ଷଣ । ନାଗର ଲକ୍ଷଣ ପ୍ରମାଣ ॥
ଦୂତୀଙ୍କ ଲକ୍ଷଣ ଯେମନ୍ତ । ବୁଦ୍ଧି କରଣ ବିଧାନତଃ ॥
ତହିଁ ପୁଣ ଦାରୁଣୀ ଯଥା । କାନ୍ତ ଜୀବନ ଅଟେ ତଥା ॥
ଶୃଙ୍ଗାର ଷୋଡ଼ଶ ବିଧାନ । ନାରୀଙ୍କ ସୁରତ ବର୍ଦ୍ଧନ ॥
ଆଲିଙ୍ଗନକୁ ଆଦି କରି । ପୁରୁଷ ସମ୍ଭୋଗ ଯେପରି ॥
କହୁଁତେ କହିବା ଯେ ଏହା । କାମଶାସ୍ତ୍ରେ ଗୁପତ ଯାହା ॥

ରସିକେ ବୁଝିବାର ପାଇଁ । କାମ ଶାସ୍ତ୍ରରୁ କହିଲଇଁ ॥
ଏ ଅନୁକ୍ରମଣି ଯେସନ । ଏଥିରେ କରିବା ବର୍ଣ୍ଣନ ॥
ପ୍ରଥମ ଛାନ୍ଦ ସମାପତେ । ପୁରୁଷ ଲକ୍ଷଣ ଏମନ୍ତେ ॥
କବିସୂର୍ଯ୍ୟ ବ୍ରହ୍ମା ଉତ୍ତର । ମୋ ନାଥ ମୁରଲୀ ଅଧର ॥ (୧୧)

## ଶୃଂଗାରାଦି ରସର ବର୍ଣ୍ଣନା—

ଶ୍ରୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ବିରଚିତ କାଳ୍ପନିକ କାବ୍ୟ 'ଲଳିତଲୋଚନା' ରେ ଶୃଙ୍ଗାର ବର୍ଣ୍ଣନା—

### (୧) ସମ୍ଭୋଗ ଶୃଙ୍ଗାର—

"ଶ୍ରୀପଯୋଦ୍ଭବ ଏ ଶୁଣି ହୋଇଲି ନିଶାମଣି ।
ମନୋଜା ମଧ୍ୟ ଦ୍ରବିଲି ଚନ୍ଦ୍ରକାନ୍ତ ଜାଣି ॥
ବରୁଣାଳୟା ବଚନ କରକା ହୋଇଲି ।
ଆତଣ୍ଡେ ଥିଲେ କ୍ଷମଣରେ ଦ୍ରବି ଶେଷ ହେଲି ॥
ପତଙ୍ଗ ସମୀପେ ହେଲି ଅନଳ କ ସଙ୍ଗ ।
ବେଳୁ ବେଳ ପ୍ରେମନଦେ ବ୍ୟାପିଲି ତରଂଗ ॥
ଇସି ଇସି ଭାଷି ତୋଳା ଖୋସି ଲଲାଟରେ ।
ଅଧିର ହୋଇ ମିଶିଲା ଶ୍ରୀପଯୋଦ୍ଭବାଂଗରେ ॥
ରଖ ପ୍ରାଣ ବୋଲି ଭୁଜେ ଭିଡ଼ନ୍ତେ ପୁଂସବର ।
ଜୀବ ଯାଇ କେବଳ ରହିଲି କଳେବର ॥

### (୨) 'ଲଳିତଲୋଚନା'ରେ ନାୟକର ସମ୍ଭୋଗ କଳ୍ପନା—

"ମୁଁ ଯେ ହୋଇଲି କଙ୍କର ହେ କୁଚ ଶଙ୍କର
ପାଣିଲଗି କରୁଥିବି ନତ
କମ୍ପା ନୋହି ଦିଗମ୍ବର ବୋଲି ତା ଅମ୍ବର
ଉଲଗି କରିବି ରସେ ମାତ୍ତ ॥ ୨୧ ॥

---

(୧୧) 'ସ୍ମରଦୀପିକା' ପ୍ରଥମ ଛାନ୍ଦ

ଚନ୍ଦ୍ରଚୂଡ଼ ନୋହିଛ କି  ଗୁପତେ ଅଛ କି
ଜହ୍ନି ଟିପିଦେବ ନଖମୂନ
ଉହୁଁ ବୋଲି ଚମକିବ  ମୋତେ ସେ ଝିକିବ
ସେ କାଳେ ପଡ଼ିଣୁ ପ୍ରେମଧନ ॥ ୨୨ ॥

ମୁଁ ଯେ ଚୁମ୍ବନ ବେଳକୁ  ତା ଗଣ୍ଡ ସ୍ଥଳକୁ
ଲୋଭେ ନ ଛାଡ଼ିବ ମୋ ଅଧର
ପିଇ ତାହାର ଓଷ୍ଠ ସୁଧା  ମୋହର ବସୁଧା
ଜନ୍ମିଲା ଫଳ ହୋଇବ ସାର ॥ ୨୩ ॥

ଚଉଷଠି ସୁଜାଣରେ  ବଚନ ରତିରେ
ସେଦିନ ରାତିରେ ରସିବି କି
କଳ୍ପନାରୁ କି ହୋଇବ  ହେମନ୍ତ ଦଇବ
କରିବ ତା ଭଲ ହୋଇବ କି ॥ ୨୪ ॥

(୩) 'ଲଳିତଲୋଚନା'ରେ ମଧୁଶଯ୍ୟା ବର୍ଣ୍ଣନା—

"ଏ ସମୟେ ଫିଙ୍ଗିଦେଲା ଫିଟାଇ ବସନ ।
ନ ଜାଣିଲା ବାମାରସେ ହୋଇଣ ମଗନ ॥ ୮୫ ॥

ସେହି କାଳେ ଅଧରୁ ଅମୃତ କଲା ପାନ ।
ସେ ସ୍ୱାଦୁ ଭକ୍ଷଣେ ଲୋଭି ହୋଇଲା ତା ମନ ॥ ୮୬ ॥

ରଦନ ବସାଇ ଗାଢ଼େ ତାହାକୁ ଛାଡ଼ିଣ ।
ମଣ୍ଡିଲା ଚୁମ୍ବନ ଯହିଁ ଯେତେ ସେ ନିପୁଣ ॥ ୮୭ ॥

କକ୍ଷ ସ୍ଥଳେ କୁଚ ମୂଳେ ଟିପେ ନଖ ମୁନ ।
ଚଳାଇଲା ତହିଁକି ଉଚିତ ଯେତେ ସ୍ଥାନ ॥ ୮୮ ॥

ବ୍ରୀଡ଼ା ହେତୁ ମାନେ ଜ୍ଞାନ ହୁଅନ୍ତେ ଅଳପ ।
ନିର୍ବାପନ କଲା ପୁଂସ ପ୍ରହାରେ ପ୍ରଦୀପ ॥ ୮୯ ॥

× × • ×

(୪) 'ଲଳିତଲୋଚନା'ରେ ଦମ୍ପତି ମିଳନ—

"ନାହିଁ ନାହିଁ ଛାଡ଼ ବୋଲି ନାଗରୀ ଭରତି ହେ ।
ରହ ରହ ହୋଇ ପୁଂସ ଆରମ୍ଭିଲା ରତି ହେ ।

ପଦ୍ମବନ୍ଧ, ନାଗବନ୍ଧ, ଗଜବନ୍ଧ ଆଦି ହେ
ଆରମ୍ଭି ରସିକ ଭାବେ ସେ ଭଙ୍ଗି ଆସ୍ୱାଦ ହେ ।
ଷୋଡ଼ଶ କଳାରେ ପୂର୍ଣ୍ଣ କରଣ ନାଗର ହେ
ନ ବର୍ତ୍ତିଲା ଅଧିକକୁ ନକର ବସ୍ତୁର ହେ ।

× × ×

ଉକ୍ତ 'ଲଳିତଲୋଚନା' କାବ୍ୟରେ କବି ସଦାନନ୍ଦ ଶୃଙ୍ଗାର ଓ କାମଶାସ୍ତ୍ରକୁ ଏକତ୍ର ପରିବେଷଣ କରିଅଛନ୍ତି ।

## 'ମୋହନ କଳ୍ପଲତା' କାବ୍ୟରେ ଶୃଙ୍ଗାର ବର୍ଣ୍ଣନା—

ଏହି କାବ୍ୟର ଦ୍ୱାଦଶ ଛାନ୍ଦରେ କବି ଶୃଂଗାର ଶାସ୍ତ୍ରର ବର୍ଣ୍ଣନା ସହିତ କାବ୍ୟ ଶାସ୍ତ୍ରର ବର୍ଣ୍ଣନା ଯଥା-ପ୍ରେମ ଦ୍ୱିବିଧ ସ୍ୱକୀୟା ଓ ପରକୀୟା, ନାୟକ ନାୟିକା ଭେଦ, ବିପ୍ରଲମ୍ଭ ଶୃଂଗାରର ଲକ୍ଷଣ ଆଦି ବର୍ଣ୍ଣନା କରିଅଛନ୍ତି ।

(୧) "ସ୍ୱକୀୟା ଯେ ପରକୀୟା ଏ ଦ୍ୱିବିଧ ରସ ।
ପତି ଉପପତି ଦୁଇ ନାୟକ ପ୍ରକାଶ ହେ ॥ ୬ ॥
ପ୍ରତ୍ୟେକ ନାୟକ ଅଷ୍ଟ ପ୍ରକାର ହୁଅନ୍ତି ।
ଧୀରୋଦାତ୍ତ ଧୀର ଶାନ୍ତ ଧୀରୋଦ୍ଧତ ଖ୍ୟାତି ହେ ॥ ୭ ॥
ଧୀର ଲଳିତକୁ ମିଶି ହୋଇଲେ ଚାରି ।
ଅନୁକୂଳ ଦକ୍ଷିଣ ଶଠ ଧୃଷ୍ଟ ଏ ଚାରି ଯେ ॥ ୮ ॥
ସ୍ୱକୀୟା ପରକୀୟାରେ ବଟନ୍ତି ଏ ଜାଣ । .
ଧୀରା, ଅଧୀରା, ଧୀରାଧୀରା ନାମ ଲକ୍ଷଣ ଯେ ॥ ୯ ॥
ମୁଗ୍ଧା ମଧ୍ୟା ପ୍ରଗଳ୍ଭା ଏ ତ୍ରିଲକ୍ଷଣ ଯେବେ ।
ଏଥୁଁ ତହିଁ ମିଶ୍ରିତ ପ୍ରତ୍ୟକେ ହୋନ୍ତି ତେବେ ଯେ ॥ ୧୦ ॥
ମୁଗ୍ଧା ଏକବିଧ ମଧ୍ୟା ଦୁହେଁ ତିନ ତିନ ।
ଧୀର ମଧ୍ୟା ଅଧୀର ମଧ୍ୟା ଏରୂପେ ବେନ ଯେ ॥ ୧୧ ॥
ତ୍ରିଲକ୍ଷଣେ ଧୀରା ଧୀର ମଧ୍ୟା ତହିଁ ଏକ ।
ଏ ତୃତୀୟ ପ୍ରକାର ଯେ ବୁଝି ସୁବିବେକ ॥ ୧୨ ॥

ଧୀର ପ୍ରଗଳ୍‌ଭା ଅଧୀର ପ୍ରଗଳ୍‌ଭା ଏମନ୍ତ ।
ଧୀର ଧୀର ପ୍ରଗଳ୍‌ଭାକୁ ଜାଣ ସେହୁ ମତ ଯେ ।। ୧୩ ।।

× × ×

'ମୋହନଲତା' ବା 'ମୋହନ କଳ୍ପଲତା' କାବ୍ୟର ସ୍ୱପ୍ନ ବେଳର ଛାନ୍ଦରେ ଶୃଙ୍ଗାର ବର୍ଣ୍ଣନା—

(୨) "ବସି ପଲଙ୍କେ ବସାଇ ଅଙ୍କେ ନରେନ୍ଦ୍ର ଚନ୍ଦ୍ରାନନ ।
ସନ୍ତୁ ଚୁମ୍ବନ କରଣ ଧ୍ୟାନ ଅଧରାମୃତ ପାନ ।। ୭୫ ।।
କରନ୍ତେ ମନ ହୋଇ ମଗନ ଆନନ୍ଦ ପାରାବାରେ ।
ନିଦ୍ରା ଅନ୍ତର ଏକାଳେ ଚୀର ଜାଗ୍ରତ ପ୍ରବେଶରେ ।।
ହାହାରେ ଚନ୍ଦ୍ରମୁଖୀ ନରେନ୍ଦ୍ର ନନ୍ଦନା ଗଲୁ କାହିଁ ।
ଏବେ ଯେ ମଲି ଏମନ୍ତ ବୋଲି ନିଜ ଉର ଖୋଜଇ ।।

## ମୋହନଲତା ବାହ୍ୟ ସୁରତ ବର୍ଣ୍ଣନା—

(୩) "ପୁଣି ଚୁମ୍ବିଲି ସୁରଙ୍ଗ ଅଧର ସୁଧାରୁ ଯେହୁ ଅଧିକ ମଧୁର ।
ଲୋଚନ ଯୁଗଳେ ଚୁମ୍ବନ ଦେଲି ଗଣ୍ଡ ମଣ୍ଡଳେ ଦନ୍ତାଘାତ କଲି ଯେ
ରସନା ବୁଲିଲି କର୍ଣ୍ଣେ ଯେ ଚମକ ଶୀତ୍କାରେ ନାଗର ତନୁ
କାତର ହୋଇଲି ଚୂର୍ଣ୍ଣେ ଯେ ।। ୨ ।।

ଘନ ଜଘନ ମଦନ ବନ୍ଧନେ ବାହୁମାଳା ଛନ୍ଦ ନାୟକ ଗଳେ
ଉହୁଁ ଘଷି ବକ୍ଷ ସ୍ଥଳରେ ମୁଖ ରଖିବାରୁ ଅତି ଲଭଣ ସୁଖ ଯେ
ସୁରତ ଶାସ୍ତ୍ର ପଣ୍ଡିତ ଯେ ଶିର ଚିବୁକେ କର ଦେଇ ଅଧର
ମଧୁପାନେ ହେଲି ମତ୍ତ ଯେ ।। ୩ ।।

ହୋଇବାରୁ ଅତି ତା ଲୋଭ ମନ ଉଦରେ ପୀଡ଼ିଲି ଉଦ୍ଧ ବସନ
ପୀନ କଠିନ ଉରଜ ଯୁଗଳ କରଜ ଘାତେ କରଣ ପାଟଳ ଯେ
ଚିବୁକେ ଦେଇ ଚୁମ୍ବନ ସେ ରସେ ରସନା ବୁଲନ କରିବାରୁ
ଚଉରା ଅଥିର ମନ ଯେ ।। ୪ ।।

ବାଳୀ ସର୍ବାଙ୍ଗରେ ପୁଲକ ଜାତ ମାନରେ ପ୍ରବୃତ୍ତ ନବେଣୀ ହସ୍ତ
ନିଷେଧ କରି ନବୀନ କଣୋଶା କରେ କାନ୍ତ କର ଆତୁରେ ଧରି

ଦ୍ରହାସେ ଶିର କମ୍ପାଇ ଯେ   କରଜ ମାରଣ   ତରକେ ପ୍ରହାଣ
ବସନଇ ଦେଲ ଫେଇ ଯେ ।। ୫ ।।

ଖର୍ଜୁର ଫଳସଦୋଷ୍ଟଦ କଏ   ଚଳ ଦଳପଦ୍ମ ଆକୃଷ୍ଟ ପ୍ରାପ୍ତେ ଯୌ
ଭପେ୍ର ପୂଜ ରତ୍ତବର ଯେ
କନକ ଉଲଟ ପାର୍ଶ୍ୱରେ ପୂର୍ଣ୍ଣାହବାଚନ   କଲେକ ହର ଯେ ।। ୬ ।।

ମାଂସଳ ନର୍ମ ମୃଦୁ ବସ୍ତାର   ମହା   ମନୋହର ମଦନପୁର
ନୃପ କୁମର ତହିଁ କର ଦେଲ   ଇଷି ମଲ ପ୍ରାଣ ରଖ ବୋଇଲ ଯେ
ଚମକ ଚନ୍ଦ୍ରମା   ମୁହିଁ ଯେ
ଗାଢ଼େ ଭିଡ଼ କାନ୍ତ ଅଧର ମଧୁକୁ ପାନ କଲା ଛା ନ ସନ୍ଧ ଯେ ।। ୭ ।।

× × ×

## (୪) 'ମୋହନଲତା' କାବ୍ୟରେ ସମ୍ଭୋଗ ବର୍ଣ୍ଣନା—

"ଚତୁରେ ଶୁଣ ହେ ଆତୁରେ ସେ ଯେ ନୃପ କୁମର ।
ମଦ ଜଳ ପୂର୍ଣ୍ଣ ହୋଇବା ଜାଣି ସୁର ମନ୍ଦର ।।
ଅନଂଗ ଜସ୍ତ୍ର ଶୃଦୁମ୍ୱରେ ଦୁହେଁ ଅଟନ୍ତି ସମ ।
ଆତୁରେ ଆରମ୍ଭ କଲେ ସେ ରସ ରତ୍ତି ସଂଗ୍ରାମ ।
ବସନ ପତାକା ଉଡ଼ୁଛି ଖର ଶ୍ୱାସ ପବନେ ।
କରଜ କୁନ୍ତରେ ସେ ଅଡ଼ାଅଡ଼ି ନାନା ବଧାନେ ।।
ବନ୍ଧାବନ୍ଧ ବାହୁ ମାଶରେ ଛନ୍ଦାଛନ୍ଦ ପଦ୍ମର ।
ହୁଙ୍କାର କରନ୍ତି ଆଟୋପେ ଖଣ୍ଡା କୁଟ୍ମଳ କର ।।
ଢ଼ାଲ ତରବାରି ଭ୍ରୂଲତା ବାନା ପରିଗୃଳନ୍ତି ।
କର୍ଣ୍ଣ କମାଣରେ କଟାକ୍ଷ ଶରମାନ ମାରନ୍ତି ।।

× × ×

'ମୋହନଲତା' ଓ 'ଲଳିତଲୋଚନା' ଏ ଦୁଇଟି କାଳ୍ପନିକ କାବ୍ୟରେ କବି ସ୍ୱକୀୟା ଶୃଂଗାର ବର୍ଣ୍ଣନା କରିବାକୁ ଯାଇ ମଧୁଶଯ୍ୟା ପ୍ରଭୃତିର ବର୍ଣ୍ଣନା ଛଳରେ ପ୍ରକଟ ଶୃଂଗାର ଚିତ୍ରମାନ ପ୍ରଦାନ କରିଥିଲେ ସୁଦ୍ଧା ଏହା ଅବୈଧ ନୁହେଁ । କବି ସ୍ୱଅନୁଭୂତିରୁ ଏହା ଲେଖି ନାହାନ୍ତି । ଏହା କବିଙ୍କର ଶାସ୍ତ୍ରଗତ

ଜ୍ଞାନ ଓ ଅନୁମାନ ବୋଲି କବି 'ମୋହନଲତା' କାବ୍ୟର ୪୨ ଛାନ୍ଦର ଶେଷରେ ବ୍ୟକ୍ତ କରିଛନ୍ତି ।

କବି ସଦାନନ୍ଦଙ୍କ କାବ୍ୟକୃତି ମାନଙ୍କରେ ଶୃଙ୍ଗାର, ଉଜ୍ଜ୍ୱଳ ବା ମାଧୁର୍ଯ୍ୟ ରସର ବର୍ଣ୍ଣନା ବ୍ୟତୀତ ଅନ୍ୟାନ୍ୟ ରସ ଯଥା-ହାସ୍ୟ, ବୀର, ଭୟାନକ ବୀଭତ୍ସ, ଅଦ୍ଭୁତ, ବାତ୍ସଲ୍ୟ, କରୁଣ, ଶାନ୍ତ ଆଦି ରସର ହୃଦୟସ୍ପର୍ଶୀ ବର୍ଣ୍ଣନା ଯୁଦ୍ଧ, ଶିକାର, ଅନୁଚିନ୍ତା, ପୁତ୍ରସ୍ନେହ, ସଖାସଖୀଙ୍କ ବ୍ୟବହାର, ଓ କଥୋପକଥନ ମାଧ୍ୟମରେ ବର୍ଣ୍ଣିତ ହୋଇଅଛି । ସେସବୁ ସମ୍ବନ୍ଧରେ ସାମାନ୍ୟ ସୂଚନା ପରପୃଷ୍ଠା ଗୁଡ଼ିକରେ ପ୍ରଦାନ କରି ଯାଇଅଛି ।

**ହାସ୍ୟରସ—**

"ମଣି ଗୁମର କାହାଚକୁର ଧରି, କେଜାଣି ହସିଲି ।
ମଣ୍ଡିଣିରେଳି, ଭ୍ରମେ ଚଞ୍ଚଳି, କାହାର କେ ଝିଙ୍କୁଥିଲି ।। ୯ ।।
କମଳମଣି, କେକାହା ପାଣି, ଧରି ଓଷ୍ଠାରଇ ଆଗେ ।
ଏ ସମ୍ପୁଟକ, ଖାଲି କେ ଠେକ, ଉରଜ ଧଇଲା ବେଗେ ।। ୧୦ ।।
କେକାହା ବାଣୀ କର୍ଣ୍ଣରେ ଶୁଣି, ସାରୀ ଭ୍ରମେ ପଢ଼ାଇଲା ।
କେକରେ ଗତି, ଲେଖେ କା ମତି, ହଂସ ବୋଲି ଗୋଡ଼ାଇଲା ।।୧୧।।
କେ ନିଜ ଛାଇ ଚାହିଁ, ବୋଲଇ 'ଅଇଲି କି ଭଲି କଲି' ।
ଯେ ଯହିଁ ଲଗ୍ନ, ସେ ତହିଁ ମଗ୍ନ, ମଣ୍ଡିଲେ କରି ଅମୂଲି" ।। ୧୨ ।।

(ଲଳିତଲୋଚନା-୩୫ ଛାନ୍ଦ)

'ଲଳିତଲୋଚନା' କାବ୍ୟରେ ନାୟକ ରୂପରେ ବିହ୍ୱଳ ହୋଇ ସେବାକାରିଣୀ ବାଳାମାନେ କ'ଣ କରୁଛନ୍ତି ଓ କହୁଛନ୍ତି, କିଛି ବୁଝିପାରୁ ନାହାନ୍ତି । କବିଙ୍କର ଉକ୍ତ ବର୍ଣ୍ଣନାଟି ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ହାସ୍ୟ ଉଦ୍ରେକ କରୁଅଛି । 'ପ୍ରେମ ତରଙ୍ଗିଣୀ' କାବ୍ୟର ଷୋଡ଼ଶ ଛାନ୍ଦରେ ଗୋବର୍ଦ୍ଧନ ମଲ୍ଲ ଓ ଚନ୍ଦ୍ରସେନଙ୍କର ଛଦ୍ମବେଶ ଅତ୍ୟନ୍ତ ହାସ୍ୟ ଉଦ୍ରେକକାରୀ ହୋଇଅଛି ।

"ଗୋବର୍ଦ୍ଧନ ମଲ୍ଲ ମହା ସୁବୁଦ୍ଧି । ଦଇବ କି ତାର ହରିଲା ବୁଦ୍ଧି ।।
ଚିଠାଉ ପାଇବାରୁ ତର୍କ କରି । ନାରୀବେଶ ଧରି ପୁରୁ ବାହାରି ସେ ।।

ମାଉଳଙ୍ଗ ଦୁଇ ଥୋଇ ଯେ
ବକ୍ଷରେ କାଞ୍ଚୁଲି ପିନ୍ଧିଛନ୍ତି ଘାଗରା ମଧ୍ୟେ ବାସେ ଓଢ଼ି ହୋଇ ଯେ ॥

ପ୍ରବେଶ ହୁଅନ୍ତେ ସଙ୍କେତ ସ୍ଥଳୀ । ଚନ୍ଦ୍ରସେନ କୃଷ୍ଣ ବେଶରେ ମିଳି ॥
ହସ୍ତରେ ଏ ରାଧା ବଡ଼ ସାହାସୀ । ଏତେ ଅନ୍ଧକାରେ ଏଠାକୁ ଆସି ॥
ଆଜ ଏହା ତୃପ୍ତିଫଳ ଯେ
ମିଳଇ ସିନା ବସ୍ତ୍ରର ଆରମ୍ଭିଲି କରିବାକୁ ତାକୁ କୋଳ ଯେ ॥ ୧୧ ॥

ମଲ୍ଲ ନାହିଁ ବୋଲି ମାନଗ୍ରା ପ୍ରାପ୍ତେ । ଏଣିକି ତେଣିକି ମୁଖ ଲୁଚାଏ ।
ଚନ୍ଦ୍ରସେନ ବଳେ ଭୁଜ ଭିଡ଼ିଲା । ଉଚ୍ଚ ଉରଜ ଆଉଁସି ପୀଡ଼ିଲା ଯେ
ହସ୍ତରେ ବଡ଼ କଠିନ ଯେ
ଭଣ୍ଡ ଗ୍ରାହକଙ୍କୁ ମିଥ୍ୟା ମାଗୁଣିଆ ପରି ହେଲି ସେ ମିଥୁନ ଯେ” ॥ ୧୨ ॥

× × ×

ମିଥ୍ୟାନାରୀ ମିଥ୍ୟା ପୁଂସ ଆସ୍ପଦେ ଯେ
ବଳେ ଧରି ଓଟାରଇ ଯେ ॥
ଉଡ଼ୁ ବୋଲି ବ୍ୟାଜ ରମଣୀ ସର୍ବଦା ମୁଖକୁ ମୁଖ ନ ଦେଇ ଯେ ॥ ୧୩ ॥

ବଳାତ୍କାରେ ଚୁମ୍ବ ଦିଅନ୍ତେ ଗଣ୍ଡେ । ଖରକେଶ ଥୋଡ଼ ଲାଗିଲା ତୁଣ୍ଡେ ॥
ଦେବ କି ଅସୁର ମନରେ ଭଳି । ମଲିଟି ହାଁ ବୋଲି ଛାଡ଼େ ବୋବାଳି ଯେ
ଭୂତ ହୋ ବୋଲି ଗୋପାଳେ ସେ
କେ ଘରୁ ଦାଣ୍ଡରୁ ଲୋଷ୍ଟ୍ରପାତ କଲେ କେ ଯଷ୍ଟି ପିଟିଲେ ତଳେ ଯେ ॥୧୪॥

ମହା କୋଳାହଳ ଲାଗିଲା ତହିଁ । ଏକାଳେ ମଧୁ ମଶାଲ ଜଳାଇ ॥
ଦେଖି ଦୁହିଁଙ୍କର ଉଦ୍ଭଟ ବେଶ । କରତାଳି ହସ ହେଲା ଅଶେଷ ଯେ
ଚନ୍ଦ୍ରସେନ ମଥା ପୋତି ସେ
ମଲ୍ଲବେଶ ଛାଡ଼ି ବଞ୍ଚାଇ କହଇ କଉତୁକେ ଏତେ ରାତି ଯେ ॥

× × ×

କବି ‘ଯୁଗଳରସାମୃତ ଲହରୀ’ କାବ୍ୟରେ ହାସ୍ୟରସର ଅନେକ ପଦ ରଚନା କରିଅଛନ୍ତି । ଏହା ମଧ୍ୟରୁ କେତେକ ଘଟଣା ଚକ୍ର, ବିପରୀତ ଫଳ ଓ କଥୋପକଥନ ପ୍ରଭୃତିରେ ତୃପ୍ତିଫଳିତ ହୋଇଛି । ଚନ୍ଦ୍ରାବଳୀ ଓ

ରାଧାଙ୍କୁ ସେମାନଙ୍କ ଶାଶୁ ନଣନ୍ଦ ଅଟକ କରିବା ସତ୍ତ୍ୱେ କୌଶଳରେ ଶ୍ରୀକୃଷ୍ଣଙ୍କ ସହ ମିଳନ ହାସ୍ୟରସ ଉଦ୍ଦୀପନ କରିଅଛି । ଶାଶୁ ନଣନ୍ଦଙ୍କର ବୋହୂଙ୍କ ସମ୍ବନ୍ଧରେ ଉଚ୍ଚ ଧାରଣା, ନିଜ ଆକଟ ମାନିବା ସମ୍ବନ୍ଧରେ ଦୃଢ଼ ବିଶ୍ୱାସ, ଯେଉଁ ସଖୀମାନେ ଗୁପ୍ତ ମିଳନରେ ସହାୟକ ସେମାନଙ୍କୁ ଜଗୁଆଳି ନିଯୁକ୍ତ କରିବା ବିଷୟର ବର୍ଣ୍ଣନା ପାଠ କଲାବେଳେ ବିପରୀତ ପରିସ୍ଥିତି ଉଦ୍ଭବ ହେବାର ସମ୍ଭାବନା ମନରେ ହାସ୍ୟ ସୃଷ୍ଟି କରେ ଏବଂ ଶାଶୁନଣନ୍ଦଙ୍କ ଅଜ୍ଞାତା ଦେଖି କୌତୂହଳ ଜାତ ହୁଏ । ସଖୀଙ୍କ ଗହଣରେ ରାଧାଙ୍କ ଯମୁନା ଗମନ, ବନବିହାର ପ୍ରଭୃତି ପ୍ରସଙ୍ଗରେ ସଖୀମାନେ ରାଧାଙ୍କ ପ୍ରେମ କାହାଣୀକୁ ବାରମ୍ବାର ଉପଲକ୍ଷ୍ୟ କରି ସସ୍ନେହ କୌତୁକ କଥୋପକଥନ ମନରେ ସ୍ୱତଃ ହାସ୍ୟ ଜାଗ୍ରତ କରାଏ । ସଖା ଓ ସଖୀମାନେ ନିଜ ନିଜ ମଧ୍ୟରେ ଯେଉଁ ବ୍ୟଙ୍ଗ କଥୋପକଥନ କରିଛନ୍ତି, ତାହା ମଧ୍ୟ ହାସ୍ୟରସର ସୁନ୍ଦର ଉଦାହରଣ । ଶ୍ରୀକୃଷ୍ଣଙ୍କର ନାୟିକା ଭ୍ରମରେ ଦୂତୀସହ କ୍ରୀଡ଼ା କରିବା ଘଟଣା ମଧ୍ୟ କୌତୁକପ୍ରଦ ଏବଂ ହାସ୍ୟରସ ଉତ୍ପାଦକ ।

'ଯୁଗଳରସାମୃତ ଲହରୀ' କାବ୍ୟରେ ଶ୍ରୀକୃଷ୍ଣ ଓ ସଖାମାନଙ୍କ କ୍ରୀଡ଼ାରେ ହାସ୍ୟରସର ବର୍ଣ୍ଣନା କରିଅଛନ୍ତି ।

"ମଧୁମଙ୍ଗଳ ଭକ୍ଷି ତାମ୍ବୁଳ ଦେଖାଇ ଜିହ୍ୱାମୂଳ ସେ
ବୋଲେ ତୁମ୍ଭେ କାହୁଁ ପାଇବ ଗୋପାଳ ସେ
ଭାଷେ ଦେଖ ଆମ୍ଭ ଓଷ୍ଠ ବିମ୍ବାଧୁଳ ସେ ।। ୧ ।।

ଦାମ ବସୁଦାମ ଦୁଇ, ରାଣ ସପଥ ପକାଇ, ବୋଇଲେ ଆମ୍ଭଙ୍କୁ କହ ଭାଇ ।

ମଧୁ କହେ ତାଙ୍କ କର୍ଣ୍ଣେ, ବଣସାରୁ କେ ନ ଚହ୍ନେ ।
ତାକୁ ଓଲୁଅ ସଙ୍ଗତରେ ମିଶାଇରେ କର ଭକ୍ଷଣ
କେତେ ରଙ୍ଗ ହେବ ବୁଝିବ ଏ କ୍ଷଣରେ
ଏକା କାହା ଆଗେ ନ କହିବ ଗୁଣ ରେ
ଏଣୁ କହିଲି ଯେଣୁ ତୁମ୍ଭେ ମୋ ପ୍ରାଣ ରେ ।। ୨ ।।

ତତକ୍ଷଣେ ସେ ତାହା ଆଣି, ଚର୍ବଣ କରି ସେ କ୍ଷଣି କଣ୍ଠୁ କରି ଓଷ୍ଠ ଗଲା ଫୁଲି ।

ନୟନରେ ଅଶ୍ରୁ ଝରେ ରୋଦନ କଲେ ଉଚ୍ଚରେ
ସେ ଯେ ମଲି ମଲି ମାତ ତାତ ବୋଲି ସେ ।

ମଧୂ ହସଇ, କ୍ଷଣେ ମାନକ ସମ୍ଭାଳ ହୋ ଯାଇ ।

ତା ଦେଖି କୃଷ୍ଣ ଗାଳ ଦେଲେ କ୍ରୋଧ ହୋଇ ସେ" ॥ ୩ ॥

× × ×

"ଡକଆ ଶିରେ ଚକ ଆକାରେ ବାଙ୍କିଆ ଜୁଡ଼ା କଟୀରେ ଯେ ।
ପଶିବେ ବନେ ଭୂଷିବେ ପଶୁ ଅଛନ୍ତି ହୋଇ ଆତୁର ଯେ" ॥

(ଲଳିତଲୋଚନା-୧୨ଶ ଛାନ୍ଦ)

'ଲଳିତଲୋଚନା' କାବ୍ୟର ଦ୍ୱାଦଶ ଛାନ୍ଦରେ ନାୟକ ମୃଗୟା ଗମନ ବୃତ୍ତାନ୍ତରେ 'ଫିରଙ୍ଗୀମାନଙ୍କ' ରୂପ ବର୍ଣ୍ଣନାରେ ହାସ୍ୟରସ ସୃଷ୍ଟି ହୋଇଅଛି । ଏଠାରେ ଫିରଙ୍ଗୀମାନେ ମସ୍ତକରେ ପିନ୍ଧିଥିବା ଟୋପିର ବର୍ଣ୍ଣନା କରାଯାଇଅଛି ।

## ବୀର, ଭୟାନକ ଓ ବୀଭତ୍ସ ରସ—

କବି ସଦାନନ୍ଦଙ୍କ କାଳ୍ପନିକ କାବ୍ୟ 'ଲଳିତଲୋଚନା' ଓ 'ମୋହନ ଲତା' ରେ ଯଥାକ୍ରମେ ନାୟକ ନିପୁଣ ତିଳକ ଓ ବିଶ୍ୱବନ୍ଦନଙ୍କ ଶିକାର ଓ ଯୁଦ୍ଧ ପ୍ରସଙ୍ଗରେ ବୀର, ଭୟାନକ ଓ ବୀଭତ୍ସ ରସର ପରିବେଷଣ କରିଅଛନ୍ତି ।

କବିଙ୍କ ସମର ବର୍ଣ୍ଣନା ପ୍ରତ୍ୟକ୍ଷଦର୍ଶୀ ବିବରଣ ସଦୃଶ ହୋଇଅଛି । ସମର ଉପଯୋଗୀ ଉତ୍ତେଜନାପୂର୍ଣ୍ଣ ଭାବ ଓ ପଦାବଳୀ ବିଶେଷ ନ ଥିଲେ ମଧ୍ୟ ବର୍ଣ୍ଣନା ସରସ ଓ ଉପଭୋଗ୍ୟ ହୋଇଛି । ନେପାଳ ରାଜା ଓ ମହାନଗରର ଯୁବରାଜ ନିପୁଣ ତିଳକ ମଧ୍ୟରେ ଘଟିଥିବା ସମରର ବର୍ଣ୍ଣନା ବୀର, ଭୟାନକ ଓ ବୀଭତ୍ସ ରସ ଉଦ୍ରେକ କରିବାରେ ସମର୍ଥ ହୋଇଅଛି ।

"ଦୁଇବଳ ହେଲେ ମିଶାମିଶି ଯେ, ରଙ୍ଗମାଟି କେ ଅଙ୍ଗେ ଘଷାଘଷି ଯେ ।
ହୁଂକାରନାଦ କେ ଅବା ଘୋଷି, କେ ଡେଇଁ ମଧ୍ୟେ ମାରଇ ପଶି
କେ ଭୂଷା ଭୂଷି କେ କଷା କଷି କେ ହଣାହଣି ଯେ" ॥ ୧ ॥
କେ ଦଶବଂଶ ଶର ପ୍ରହାରି ତଦନ୍ତେ ବିଦ୍ଧ ବଶରେ ହାରି ।
ଜୀବନ ମାଗି ହେଲା ମୁହାରି ଆସେ ବାହାରି ଯେ ॥

କେ ଖଣ୍ଡ ଖଣ୍ଡ  କରଣ ମୁଣ୍ଡ  ଭୂଷଣେ ହୋଇଅଛୁ  ପ୍ରଚଣ୍ଡ ।
କେ ବୋଲେ  ଭଣ୍ଡ ଏ ଧଳେ ଗ୍ରୁଣ୍ଡ  ଗଲା ଓହରି ଯେ ।
କେ ଖେଳ କୁନ୍ତ, କାଢ଼ଇ ଅନ୍ତ ଯେ, କେହୁ କାହାର ମାଗଇ ଦନ୍ତ ଯେ ।
ଖଣ୍ଡା ଝଲକ ରୁଧେ ପଲକ ଗନ୍ଧ ବୋଲି କେ ପଳାଏ ଏକ ।
କେ କରେ ଶୋକ କରି ଆଲୋକ ପିତାର ଅନ୍ତ ଯେ ॥ ୨ ॥

× × ×

ସେହିପରି 'ମୋହନଲତା' କାବ୍ୟର ୧୦ମ ଛାନ୍ଦରେ ବୀର ଓ ଭୟାନକ ରସର ଅବତାରଣା କରାଯାଇଅଛି ।

"କୁହାଟି ମୃଗ ସମ୍ବରବତ,  ଉଠନ୍ତି ଦେଖି ଉଚ୍ଚ ହେତ ।
ଶଙ୍କା କାହାକୁ ନାହିଁ ଲବେ ତ, ତାଙ୍କ ଗର୍ବ  ତ  ଯେ" ॥

× × ×

## ବୀଭତ୍ସ ରସ :

"ଜୀବନ୍ତା ଧରି ଚର୍ବନ୍ତା କରି  ଫିଙ୍ଗନ୍ତି ଫୁ ଫୁ  କରଣ ଯେ ।
ରକତ କାହା  ନାକ  ତଳରୁ ଉରୁକୁ  ବହି ଭୀଷଣ  ଯେ ॥
କେକେତି ଅସ୍ଥିର କଣ୍ଠୀ  ପାଟି ଭୁଟିକି ଭୁଟି  ଗୃଳନ୍ତି ଯେ ।
କାହିଁ କଟରି  ଅନ୍ତ୍ରକ ଧରି ଚୂଲିରେ ଶିରି ଗିଳନ୍ତି କେ" ॥ ୨୦ ॥

(ଲଳିତଲୋଚନା-୧୨ଶ ଛାନ୍ଦ)

## ଅଦ୍ଭୁତ ରସ :

'ଲଳିତଲୋଚନା' କାବ୍ୟରେ ଯୁଦ୍ଧ  ଅବସାନ ପରେ  ରଣିରେ ଡାକିଣୀମାନଙ୍କର  ନୃତ୍ୟଗୀତ  ଅଦ୍ଭୁତ ଓ  ଭୟାନକ  ରସର ଉଦ୍ରେକକାରୀ ।

"କାହିଁ ବାସେଳୀ ଅନେକ ଗିଳି  ଅସ୍ଥି ଶୃଙ୍ଖଳାଇ ଗୃହେଁ  ନଚେଲି ।
ଦେଖି କେ ଡରି ଛାଡ଼େ ବୋବାଳି, କେ ହେଉ କଳି ଯେ ।
କାହିଁ ପିଶାଚୀ ଶବରେ ବସି ସେ ଭୁମିରଦ ଫାଳରେ ଚଷି
କବା ସେ ମୁଖ ବିସ୍ତାରି ହସି ଅନେକ ଜଳ ଯେ ।

କେ କଳକଳା ନାଦରେ ଡେଇଁ ଯେ, କେହୁ ହୁଙ୍କାର କରି ଧାବଇ ଯେ ।
କାହା ଭୃଣ୍ଡରୁ କେ କନେ ଖାଇ ନାଚି ବୋଲଇ ତା ଥେଇ ଥେଇ
ହୁଂ ହୁମ ହୁଣ ହୁଣ ଶୁଭଇ ନୂପୁର ଦୁଇ ଯେ" ॥ ୧୦ ॥

(ଲଳିତଲୋଚନା-୧୪ଶ ଛାନ୍ଦ)

**ବାତ୍ସଲ୍ୟ ରସ :**

"ଗୋପ ବାଳକେ ହେଲେ ଆବୃତ ଯେ, ବଂଶୀ ବଜାଇ ଗାବନ୍ତି ଗୀତ ଯେ ।
ହୁରେ ହୁରେରି ବୋଲି ମୋହନ ତରର୍ ଝାଇଁ କରି ଗର୍ଜନ ।
କରନ୍ତି ଧେନୁ ପଛେ ଗମନ, ହସନ୍ତି ମାତ ଯେ ॥ ୪ ॥

ସେହିପରି 'ଯୁଗଳରସାମୃତ ଲହରୀ' କାବ୍ୟର ପଞ୍ଚମ ଛାନ୍ଦରେ କବି ବାତ୍ସଲ୍ୟ ରସର ଅବତାରଣା କରିଛନ୍ତି ।

"ମୋର କଳାକାଇଁଞ୍ଚ, ଦିଶୁଅଛୁ କେଉଁଠେ ସଞ୍ଜ ଲୋ
ଲବଣୀ ମାଗଇ ଲଞ୍ଚ ଲୋ, ବନେ କଲୁ କେଉଁ ପାଞ୍ଚ ଲୋ
ଯଶୋଦା ଉଭା ଦୁଆରେ, ଦେଖନ୍ତି କୁମର ଗାଈ ପଛରେ ସେ
ଆସୁଅଛୁ ଧୀରେ ଧୀରେ ଲୋ" ॥ ୧ ॥

ମୋହେ ପଡ଼ିଥିଲେ ଚେତନା ପାଇଲେ କାନ୍ଦି ଉଚ୍ଚେ ଡାକିଲେ କେତେ ନାରୀ ।
ଘନଶ୍ୟାମଳିଆ, ମୟୂର ଚନ୍ଦ୍ରକ ଚୂଳିଆ ଆହେ ମୁରଲୀଧାରୀ ।
ଛୁଡ଼ିଗଲୁ କାହିଁ, ଦିବସେ ଅନ୍ଧାର ହେଲା ମହୀ ।
ହେ ଡୋଳା ପିତୁଳା ପ୍ରାଣ ତ ନ ଗଲା ବୁଦ୍ଧିବାଟ ଆଉ ଦିଶୁ ନାହିଁ ॥ ୭ ॥

**ଶାନ୍ତ ରସ**

କବି 'ଲଳିତଲୋଚନା' କାବ୍ୟରେ ପଞ୍ଚଦଶ ଛାନ୍ଦରେ ଧ୍ୟାନସ୍ଥ ଯୋଗୀମାନଙ୍କର ଏକ ଚିତ୍ର ପ୍ରଦାନ କରିବାକୁ ଯାଇ ଶାନ୍ତ ରସର ଅବତାରଣା କରିଅଛନ୍ତି ।

"ଦେବ ଖାତ ସଂହିତ ମୁନିମାନଙ୍କ ସ୍ଥିତି ।
ଯୋଗ ସାଧନାରେ ସର୍ବେ ଦିନ ହରନ୍ତି ॥ ୩୧ ॥
ମନ ଦେଇ ବ୍ରହ୍ମରେ ବସି ପଦ୍ମାସନରେ ।
ଅର୍ଦ୍ଧପୂର୍ଣ୍ଣ କମଣ୍ଡଳୁ ଅଛି ଆଗରେ ॥ ୩୨ ॥

× × ×

ବୃକ୍ଷେ ବାନ୍ଧ ପସ୍ୱର  ଅଚ୍ଛ ତଳକୁ ଶିର ।
ସମୀର ଧାରଣେ କେହ୍ଣ ହୋଇ  ତତ୍ପର ॥ ୩୬ ॥
ଗରୁଡ଼ାଦି ବିଧାନ କର  ନାନା ଆସନ ।
ନୟନ ମନ ଗୋଚର ନୋହେ  ସମାନ ॥ ୩୭ ॥

(ଲଳିତଲୋଚନା-୧୫ଶ ଛାନ୍ଦ)

କବି ସଦାନନ୍ଦ ଉପଦେଶ ଛଳରେ ମଧ୍ୟ ଶାନ୍ତ ରସର ବର୍ଣ୍ଣନା 'ଲଳିତଲୋଚନା' କାବ୍ୟରେ କରିଅଛନ୍ତି ।

ନମ୍ର ହୋଇ  ସଗୁଣରେ । କୋଦଣ୍ଡଟି କାର୍ଯ୍ୟ କରେ ॥ ୬୯ ॥
ମାହକ  ଗ୍ରାହକ ଥିଲେ । ଆଦର ପାଏ  ଚହ୍ନିଲେ ॥ ୭୦ ॥
ଘଟ ଦେଖି ଗୁଣ ସ୍ଥାନ । କୂପ ଦିଅଇ ଜୀବନ ॥ ୭୧ ॥
ଜନ୍ମୁ ସ୍ଥାନରେ ଯେ ଶୋଭା । ପାଦରେ କି ଫୁଲ ଗଭା ॥ ୭୨ ॥
ସ୍ତନେ ନରସେ  କେ ପୁଣ । ଆନ ସ୍ଥାନେ ବୋଲି ବ୍ରଣ ॥ ୭୩ ॥
ଦେଖ ଦନ୍ତ ନଖ କେଶ । ସ୍ଥାନ ବିହୀନେ  ଅସ୍ପୃଶ୍ୟ ॥ ୭୪ ॥
ଏଣୁ ଉତ୍ତମ  ଆଗରେ । ପ୍ରକାଶି  ଗୁଣ ବେଭାରେ ॥ ୭୫ ॥
ପିଶୁନେ କଲେ ପ୍ରକାଶ । ଫଳ ପାଇ  ଉପହାସ ॥ ୭୬ ॥

(ଲଳିତ ଲୋଚନା-୧୦ମ ଛାନ୍ଦ)

## ବର୍ଣ୍ଣନା ଚାତୁରୀ

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସ୍ୱରଚିତ କୃଷ୍ଣ ବିଷୟକ କାବ୍ୟ 'ଯୁଗଳରସାମୃତ ଲହରୀ', 'ଯୁଗଳରସାମୃତ ଭଙ୍ଗୀ', 'ପ୍ରେମ ତରଙ୍ଗିଣୀ', 'ପ୍ରେମକଳ୍ପଲତା', 'ନିଷ୍ଠା ନୀଳମଣି' ଓ 'ନାମଚିନ୍ତାମଣି' ପ୍ରଭୃତିରେ ଶ୍ରୀରାଧା, ଶ୍ରୀକୃଷ୍ଣ ଓ ଗୋପୀ ଗୋପାଳାଦିଙ୍କ ରୂପ, ଗୁଣ, ବେଶ ବର୍ଣ୍ଣନା କରିବା ସହିତ ବ୍ରଜପୁରୀ, ବୃନ୍ଦାବନ ପ୍ରଭୃତି ସ୍ଥାନର ଦିବ୍ୟ ଶୋଭାକୁ ମଧ୍ୟ ବର୍ଣ୍ଣନା କରି-ଅଛନ୍ତି । କବି ମୁଖ୍ୟତଃ ବ୍ରଜପନ୍ଥୀ ବୈଷ୍ଣବ ଥିବା ହେତୁ ସ୍ୱରଚିତ 'ନାମଚିନ୍ତାମଣି' କାବ୍ୟର ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ରୂପ ଓ ଗୁଣକୁ ମଧ୍ୟ ବର୍ଣ୍ଣନା କରିଅଛନ୍ତି । କବିଙ୍କର ଅନ୍ୟ ଏକ ଅସମାପ୍ତ କାବ୍ୟ 'ବିଶ୍ୱମ୍ଭର ବିହାର' କାବ୍ୟରେ ମଧ୍ୟ ଶ୍ରୀଚୈତନ୍ୟଙ୍କ ଅନୁରୂପ ବର୍ଣ୍ଣନା ହୋଇଅଛି ।

ଏହାଛଡ଼ା କବି କାଳ୍ପନିକ କାବ୍ୟ ମାନଙ୍କରେ ନାୟକ, ନାୟିକା ତଥା ବିଭିନ୍ନ ପାତ୍ର ପାତ୍ରୀଙ୍କର ରୂପ, ଗୁଣ, ବେଶ, ବର୍ଣ୍ଣନା ଶାସ୍ତ୍ରସମ୍ମତ ପ୍ରମାଣ ଅନୁଯାୟୀ କରିବା ସଙ୍ଗେ ସଙ୍ଗେ ନଗରର ଶୋଭାକୁ ମଧ୍ୟ ଅତି ସୁନ୍ଦର ଭାବରେ ରୂପ ଦେଇ ଅଛନ୍ତି ।

କବି ସ୍ୱରଚିତ 'ପ୍ରେମ ତରଙ୍ଗିଣୀ' କାବ୍ୟର ଦ୍ୱିତୀୟ ଓ ଚତୁର୍ବିଂଶ ଛାନ୍ଦରେ ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା ସୁନ୍ଦର ଭାବରେ କରିଛନ୍ତି ;

**ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା—**

"ଦୂତୀକି କହଇ ଦିନେ ଚନ୍ଦ୍ର ବଦନୀ । କି ରୂପ ଦେଖିଲି ଆଜ ପ୍ରାଣ ସଜନୀ ॥
କର ପଇଠ ଦେଇଛି ସୁବଳ କନ୍ଧେ । ନୀପକୁ ଆଉଜି ଉଭା ତ୍ରିଭଙ୍ଗ ଛନ୍ଦେ ॥
ବିହୁରୁଛି ବିମ୍ବ ତାକୁ ଗଢ଼ିଲା କେହି । ଢ଼ଳ ନ ପଡ଼ିଲା ଚନ୍ଦ୍ର ବଦନ ରହି ॥
ଅଳପ ଫୁଲିଛି ତହିଁ ନାସିକା ପୃଷ୍ଠ । ତହିଁ ମୋତି ମାଗୁଛି କି ଶୁକଙ୍କୁ ଭେଟ ॥
ସସ୍ମିତାଧରୁ ଲାବଣ୍ୟାମୃତ ବରଷି । ବାରବାର ଦୁଇଡ଼ୋଳା ଲଳିତେ ଖୋସି" ॥

(ପ୍ରେମତରଙ୍ଗିଣୀ-୨ୟ ଛାନ୍ଦ)

**ଶ୍ରୀକୃଷ୍ଣଙ୍କ ରୂପ ଓ ବେଶ ବର୍ଣ୍ଣନା—**

"ସରୁ ସୁକୁଞ୍ଚିତ ନୀଳ    ଗହଳ ପ୍ରଲମ୍ବ ବାଳ
ସୁବାସ ରୁଚିର ଧରି ତା ଆଡ଼ମ୍ବର
କେବେ ନୋହିବ କାମର    ଭଣ୍ଡାର ଲୁଚୁ ଚାମର
ଶିଖି ପୁଚ୍ଛ ସୁ ଭ୍ରମର ଯମୁନାନୀର ।
ସେ ପୁଣି ବାମାଂଶକୁ ଢ଼ଳି, ବନ୍ଧା ହୋଇଥାଇ ବେଢ଼ା ପୁଷ୍ପ ମଣ୍ଡଳୀ ॥ ୭ ॥

ଦୁଇ ଦିଗକୁ କି ଆସେ,    ଦୁଇ ଧାଡ଼ିରେ କି ଆସେ
ଉର୍ଦ୍ଧ୍ୱ ରଙ୍ଗ ଜାମୁଡ଼ାଳ ମୟୂର ଚନ୍ଦ ।
ତନଠାରେ ପାଟସ୍ୱର୍ଣ୍ଣ    ସୂତ୍ରସହ ଯେ ବନ୍ଧନ
ସିହାଣିଆ ଫୁଲ ଲମ୍ବିଥାଇ ଯେ ସାନ୍ଦ୍ର ।
ପୃଷ୍ଠ ଅଧେ ତହିଁରୁ ବେଣୀ, ମୋତିଥୋପା ଲମ୍ବିଥାନ୍ତି କଦମ୍ବ ଜିଣି ॥ ୭ ॥

× × ×

କଟି କଣି ପଞ୍ଚାନନ ଗୁରୁ ନିତମ୍ବ ଜଘନ
କଳା କଦଳୀ ପ୍ରକାଣ୍ଡ କି ଉରୁ ଆଦ୍ୟ ।
ନାନା ରତ୍ନ ସମ୍ପୁଟକ ଠାରୁ ଜାନୁ ଦ୍ୱୟ ଟେକ
ଚରଣ ଉଲଟ ସ୍ଥଳ କମଳବାଦ୍ୟ ।
ପ୍ରଣିତ କମଠୁ ସମାନ, ତ୍ରିଭୁବନ ଆକର୍ଷିବାକୁ କୃଷ୍ଣବର୍ଣ୍ଣ ॥

(ପ୍ରେମତରଙ୍ଗିଣୀ-ଚତୁର୍ବିଂଶ ଛାନ୍ଦ)

## ଶ୍ରୀରାଧାଙ୍କ ରୂପ ବର୍ଣ୍ଣନା

ତାହାର ସୁନ୍ଦରପଣ ତ ସଂସାର କଶଛୁ ଯେ କହି ନପାରିବ ।
କହ ହେଲେ କହି କ ବର୍ଣ୍ଣିତା ଛବି ଭାବ ଭବ ଜ୍ଞାନ ନାଶ ହେବ" ॥୧୧॥

× × ×

## ଶ୍ରୀରାଧାଙ୍କ ରୂପ ଓ ଗୁଣ ବର୍ଣ୍ଣନା—

"ଜାଣିଲ ରସିକା ଯେତେ । ବ୍ରହ୍ମାଣ୍ଡେ ହୁଅନ୍ତି ପ୍ରତେ ॥
ଉମା, ରମା, ରତି, ଅରୁନ୍ଧତୀ ଏ ନାରୀ ମାନଙ୍କଠାରୁ
ଏ ବ୍ରଜ ରମ୍ଭୋରୁ ଗୁରୁ, ଏମାନଙ୍କୁ ଶ୍ରୀରାଧିକା ଗୁରୁ ହେ ପ୍ରାଣମିତ !
ଶୁଣି ଋଷି କହନ୍ତି ଏପରି,
ଗୋଲକ ଈଶ୍ୱରୀ ସେ ମୁଁ ଲଭିଲି କପରି ହେ" ॥ ୨୧ ॥

(ଯୁଗଳ ରସାମୃତ ଲହରୀ-୫୭ ଛାନ୍ଦ)

## ଶ୍ରୀ ରାଧାକୃଷ୍ଣ ଯୁଗଳରୂପ ବର୍ଣ୍ଣନା—

"କିଏ ଘନକୋଳେ ସୌଦାମିନୀ ଖେଳେ କଦମ୍ବ ଫୁଲେ କି ଭୃଙ୍ଗ ।
କିଏ ତମାଳ ଦଳେ ନବଚମ୍ପକ ଶ୍ୟାମ ଗୌରୀ ଅଙ୍ଗ ସଙ୍ଗ ॥ ୩ ॥

× × ×

ଧନ୍ୟ ଆମ୍ଭେ ସଖୀ ଧନ୍ୟ ଆମ୍ଭ ଆଖି ଧନ୍ୟ ଧନ୍ୟ ବୃନ୍ଦାବନ ।
ଧନ୍ୟ ରାଧା ହରି ମୂରତି ମାଧୁରୀ ଧନ୍ୟ ଏ କୁଞ୍ଜ ଭବନ" ॥ ୧୪ ॥

(ଯୁଗଳ ରସାମୃତ ଲହରୀ-୫୫ଣ ଛାନ୍ଦ)

## ବ୍ରଜପୁରୀ ଶୋଭା ବର୍ଣ୍ଣନା—

"ଶୁଣ ଦେଇ ମନ ହେ; ଭକତ ସୁଜନ,
ଦଇବେ ବିଚିତ୍ର ଶୋଭା ସେ ଯେ ବ୍ରଜ ସ୍ଥାନ ହେ
ସେ ପୁରମାନ ! ମଧ୍ୟେ ନନ୍ଦର ସଦନ ହେ ॥ ୧ ॥

× × ×

## ଶ୍ରୀ ବୃନ୍ଦାବନ ଶୋଭା ବର୍ଣ୍ଣନା—

ସ୍ଥାନ ଅଛୁ ଏଥି ରତନ ନିର୍ମିତ ଯେ, ବଇକୁଣ୍ଠ ତାହା ଆଗରେ କଳ୍ପିତ ହେ ।
ବୃନ୍ଦା ଦେଖାଇଛୁ ମୋତେ କହି ସତ ହେ ॥ ୭ ॥
ଖଣ୍ଡେ ଦୂର ଯାଇକରି, ଦେଖି ଚମତ୍କାର ହରି ।
ରାତ୍ରି ଦିବସ ନୋହିଲା ବାରି
ଚନ୍ଦ୍ର କିରଣେ ଉଜ୍ଜ୍ୱଳ, ପ୍ରାୟେ ଦିଶେ ଝଳଝଳ ।
ତହିଁ ତରୁ ଅଛୁ ସ୍ୱର୍ଣ୍ଣ ବର୍ଣ୍ଣ ଧରି ସେ
କେବା କେମନ୍ତ; ହୀରା ନୀଳା ମରକତାଦି ସଞ୍ଜାତ ସେ
ସଂପୁଟକବତ ଫଳେ ସର୍ବ ସ୍ଥିତ ସେ
ହାର କଟକ କଙ୍କଣ ନାନା ମତ ସେ ॥ ୮ ॥
କାହିଁ ବଇଦୁର୍ଯ୍ୟ ମଣିସାର,
କାହିଁରେ ଗରୁଡ଼ୋଦ୍‌ଗାର ନାନାମଣି ଗଣେ ଆଳବାଳ ।
ତହିଁ ବାହୁଡ଼ି ଆସିଲେ, ପୂର୍ବେ ଖଣ୍ଡେ ଦୂରେ ଗଲେ ।
ଦେଖିଲେ ସୁନ୍ଦର ସୁପାଚେଷ୍ଣ
ମହାମନୋହର ଦ୍ୱାର, ବ୍ରହ୍ମା ଶିବ ଧ୍ୟାନ ଧର ।
ତହିଁ ପତାକା ଉଡଇ ଫରଫର ସେ
ତହୁଁ ଲେଉଟି, ଯହିଁ ହସନ୍ତ ସୁନ୍ଦର ରତ୍ନକୁଟୀ ସେ
କୁଞ୍ଜଗଳି ରହନ୍ତି ପାଲଟି ସେ
ମଧୁ କହଇ ଏ ଦେବତା ପୁରଟି ସେ" ॥ ୧୨ ॥

(ଯୁଗଳରସାମୃତ ଲହରୀ-୨୯ଶ ଛାନ୍ଦ)

ନିଷ୍ଠା ମାଳମଣି ୮ମ ଗୁଚ୍ଛରେ ମଧ୍ୟ ଶ୍ରୀ ବୃନ୍ଦାବନର ବର୍ଣ୍ଣନା ପରିଲକ୍ଷିତ ହୁଏ ।

## ଶ୍ରୀଚୈତନ୍ୟଙ୍କ ରୂପ ବର୍ଣ୍ଣନା—

କବି ସଦାନନ୍ଦ ଜଣେ ବ୍ରଜପନ୍ଥୀ ବୈଷ୍ଣବ ଥିବା ହେତୁ ଶ୍ରୀଚୈତନ୍ୟଙ୍କୁ ନିଜର ଇଷ୍ଟଦେବତା ବୋଲି ମାନି ନେଇଥିଲେ । ତେଣୁ କବି ଶ୍ରୀଚୈତନ୍ୟଙ୍କ ଜୀବନୀକୁ ଅବଲମ୍ବନ କରି 'ବିଶ୍ୱମ୍ଭର ବିହାର' ନାମକ ଏକ ମହାନ୍ କାବ୍ୟ ରଚନା କରି ଯାଇଅଛନ୍ତି । ଗ୍ରନ୍ଥଟି ସମ୍ପୂର୍ଣ୍ଣ ହୋଇପାରି ନ ଥିଲେ ମଧ୍ୟ ଏହା ବୈଷ୍ଣବ ମାନଙ୍କ ପାଇଁ ଏକ ଅମୂଲ୍ୟ ରତ୍ନ । ଏହି ଗ୍ରନ୍ଥରେ କବି ଶ୍ରୀଚୈତନ୍ୟଙ୍କ ରୂପକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି ।

## ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ରୂପ ଓ ଗୁଣ ବର୍ଣ୍ଣନା—

"ଶ୍ରୀକୃଷ୍ଣ ଚୈତନ୍ୟ ଚନ୍ଦ୍ର ସୁବର୍ଣ୍ଣ ବର୍ଣ୍ଣ ନିମାଇଁ ଆହେ ବିଶ୍ୱମ୍ଭର୍
ଗଉର ନଟବର ଶଚିସୁତ ଈଶ୍ୱର ଜଗନ୍ନାଥ ମିଶ୍ର କୁମର ହେ, ମହାପ୍ରଭୁ
ଆହେ ଦ୍ୱିଭୁଜ, ଚତୁର୍ଭୁଜ, ଷଡ଼ଭୁଜ ହେ ଦେବରାଜ
ହେ ହରିନାମ ମୂର୍ତ୍ତି ହେ ବିଷ୍ଣୁପ୍ରିୟା ପତି ହେ ଲକ୍ଷ୍ମୀକାନ୍ତ ମହାଭୁଜ ହେ ।୧।
ହେ ମାତୃପିତୃଭକ୍ତ ନିଜ ନାମ ଆସକ୍ତ ଭକ୍ତ ଭାବାଙ୍ଗୀକୃତ ହରି
ଅମାୟୀ ମାୟାଧର ହୟଗ୍ରୀବ ଶ୍ରୀକର ଭକ୍ତବତ୍ସଳ ପାଷାଣ୍ଡାରି ହେ ମହାପ୍ରଭୁ
ହେ ଗଦାଧର ପ୍ରାଣନାଥ, ହେ ଦଣ୍ଡକମଣ୍ଡଳ ହାତ
ହେ କପଟ ସନ୍ନ୍ୟାସୀ ଆହେ କରୁଣାରାଶି ମାୟା ମନୁଷ୍ୟ କର୍ମକୃତ ହେ ॥ ୨ ॥

× × ×

ଦାମୋଦର ପଣ୍ଡିତ ଉଚିତ ଦଣ୍ଡପାତ ହେ କର୍ମଜ୍ଞାନୀ କାର୍ଯ୍ୟାଙ୍କୁଶ
କନିଷ୍ଠ ହରିଦାସ ଦଣ୍ଡିଲ ହରିଦାସ ଶିବସମାଦ କର୍ତ୍ତା ଈଶ ହେ
ଉଜ୍ଜ୍ୱଳ ପଞ୍ଚସୂତ୍ରଧାରି ହେ ସପ୍ତାଙ୍ଗୁଳ ଶିଖାଶିର
ସ୍ୱନାମ ଗୁଣବନ୍ତ ସ୍ୱରୂପ ଅନୁରକ୍ତ ଶ୍ରୀଗୁରୁ ସୁସେବା ତତ୍ପର ହେ ॥ ୭ ॥

(ନାମଚିନ୍ତାମଣି-୩ୟ ଗୁଚ୍ଛ)

## ଲଳିତଲୋଚନା କାବ୍ୟର ନାୟକ 'ନିପୁଣତିଳକ'ର ପିତା 'ବୃଷବନ୍ତ' ରାଜାଙ୍କ ରାଜ୍ୟ 'ମହାନଗ୍ର'ର ଶୋଭା ବର୍ଣ୍ଣନା—

"ଆଜ୍ଞା ପ୍ରମାଣରେ ସଂସାର ଭ୍ରମି ଯେତେ ଦେଖିଲି ।
ସେ ରାଜ୍ୟକୁ ଲକ୍ଷ୍ୟ କରିବା ଦୂରରୁ ଉପେକ୍ଷିଲି ॥ ୩ ॥

ମନ୍ଦଚ୍ଛନ୍ଦ ମାତ୍ର ମନ୍ଦ କେବେହେଁ ନାହିଁ ତହିଁରେ ।
ଦ୍ୱନ୍ଦ୍ୱ ହୋଇଥାନ୍ତି ଦ୍ୱନ୍ଦ୍ୱ ସର୍ବଥା ନାହିଁ ଯହିଁରେ ॥ ୪ ॥

ଯମ ଖ୍ୟାତି ନାହିଁ ଯମ ଖ୍ୟାତି ସେ ଉପୁଜେ ଅତି ।
କଦନବର୍ତ୍ତି କେ ନୋହନ୍ତି ବନ୍ଧୁ କଦନବର୍ତ୍ତି ॥ ୫ ॥

ଭୁଜଂଗ କେବଳ ଅଛନ୍ତି ନାହିଁ ଭୁଜଂଗ ନାହିଁ ।
ଚଞ୍ଚଳା ତହିଁରେ ନାହିଁ ତ ଯହିଁ ଚଞ୍ଚଳା ସ୍ନେହୀ ॥ ୬ ॥

(ଲଳିତଲୋଚନା-୨୧ଶ ଛାନ୍ଦ)

## ମୋହନଲତା କାବ୍ୟରେ ନାୟକ ଜନ୍ମପୁରୀର ଶୋଭା ବର୍ଣ୍ଣନା—

ଏଥୁଅନ୍ତେ ଶୁଣ ସୁପ୍ରବୀଣଗଣ ଯଶ ଲଭିବ କ୍ଷଣକରେ ।
ମହୀମଣ୍ଡଳ ମଣ୍ଡଳେଶ୍ୱରର ମନ କାରାଗାର ପ୍ରକାରେ ।
କର୍ଣ୍ଣାଟ ଦେଶ ନାମ ତାର ପ୍ରକାଶ,
କି ମହୀ ମହିଳା ମଉଳି ମୁକୁଟ ଘଟିକତ ରତ୍ନ ବିଶେଷ ॥ ୧ ॥

କିବା ଜନମନ ନର୍ତ୍ତକୀ ନର୍ତ୍ତନ ନିମନ୍ତେ ବନଜ ଆସନ ।
ଆଖେଡ଼ାଶାଳ ସାଜିଛି ସଂଗ କରି ଦେଇଅଛି ପାଖେ ନିପୁନ ।
କର୍ଣ୍ଣ ହିଁ ହୋଇଲି ତହିଁ ସୂତ୍ରଧାର,
ମୁଖ ମର୍ଦ୍ଦନ କି ଚେତନା ମାଦୋଳ ଗୁଣଗାନ ତାନ ପ୍ରକାର ॥ ୨ ॥

× × ×

ତହିଁ ଭିତରକୁ ଧାଟଣା ଘଟଣା କିଛି ଛଡ଼ା ନଗ୍ର ବସତି ।
ଚତୁର୍ବର୍ଣ୍ଣ ଅଷ୍ଟାଦଶ ପାଟକ ସେ ଅନ୍ୟ ଜାତି ଆଦି ଅଛନ୍ତି ।
ଯବନ ଫିରଙ୍ଗି ଇତି ଆଉମାନେ
ସକଳ ଦେଶ ମନୁଷ୍ୟ ସ୍ଥିତି ଅନ୍ୟ ବଚନ ସ୍ଥାନେ ସ୍ଥାନେ ॥ ୨୬ ॥

କାହିଁ ବେଦାଧାନ ଶୁଭେ ଶଙ୍ଖ ନଭର କାହାଳି କର୍ଣ୍ଣାଳ ତୋପର ।
ଆରତୀ ବେଳଙ୍କି ଝଁଝଁଘା ଝଁଝଁନର କର୍ଣ୍ଣ ଗଡ଼କ ପେଟ ଲସ ।
ମାନସ ମଦ୍ଦଳୀ ଚଞ୍ଚଳ ତୁରୀଦ୍ଧ,
ସଦେଶୀ ଗର୍ବ ଛେଳକ ପଳାଉଛ୍ଛି ନାଗରୀ ଧ୍ୱନି ତାକେ ରହି ॥ ୨୭ ॥

ପଞ୍ଚା ଗୁ ରୁଦା ସାବେଳ ମାଲ୍‌ଲବିଦ୍ୟା ଚଙ୍କଣ ଆଦିରେ ସାଧନ ।
ସ୍ଥାନ ସ୍ଥାନକେ ହୋଏ ସଦା ହୁଂକାର ଝଂଙ୍କାର ଝଂଙ୍କାର ନସ୍ପନ ।
ଘୋଟକ ଗଡ଼ ଉକୁଟ ସର୍ବଦାଣ୍ଡେ,
ପାବୃଟ କାଳ ସଜଳୋସୃଜପାନ୍ତ ଶବଦ୍‌ବତ ଯେ ପ୍ରଚଣ୍ଡେ ॥ ୨୮ ॥

ଫରକାରଙ୍କ ଅନେକକ ଚମକ ଝମକାଇ ଫର ଝାଉନ୍ତ
କୃପାଣ ଝଳକ ଦେଖିକେ ପଲକ ପକାଏ ଭଲେ ନୋହି ଭୀତ ।
ଧାଇଁବା ଧୂପିବା ଶଲ ମାରିପିବା,
ବକ ଭେକ କାକ ପୁଣ୍ଡରୀକ କୋକବତ ଗଡ଼ ଗୁପି ରହିବା ॥ ୨୯ ॥

କାହିଁରବା ବୀଣା ଅମୃତ ତମ୍ବୁରାଙ୍କ ସିନାନା ଯନ୍ତ୍ର ବାଜୁଛ୍ଛି ।
ସାରିଗମ ପଧନିସା ସାନିଧପ ମଗରିସା ସ୍ୱର ଫୁରୁଛ୍ଛି ।
ତନାନା ନାରୀ ନେଉନାରୀ ଇତ୍ୟାଦି,
ଆଳାପ ମାନକେ କାନମୋଦିକା ଆଦି ରହିଅଛନ୍ତି ଘର ଧରି ॥ ୩୦ ॥

କଉଁଠାରେ ହୋଏ ବ୍ରାହ୍ମଣ ଭୋଜନ କାହିଁ ବୈଷ୍ଣବ ମହୋତ୍ସବ ।
କାହିଁ ଅଷ୍ଟାଦଶ ପୁରାଣ ବଖ୍ୟାନ କାହିଁ ଛନ୍ଦବନ୍ଧ ପ୍ରସ୍ତାବ ।
ମହିମା ହେଉ ପଦ୍ଧଣ୍ଡେ ସାବଧାନ,
ଶୁଣି ତା ଦୂରୁ ତରସ୍ତେକେ ଉଠୁଛ୍ଛି ନକଟେ ବଜେ କ ରାଜନ ॥ ୩୧ ॥

× × ×

ସାହିର ପ୍ରନ୍ତମୁଣ୍ଡେ ଗ୍ରାମଦେବତୀ କାଳିକା ବାରାହି ବାନଶଳୀ ।
ବନଦୁର୍ଗା ଭୁବନେଶ୍ୱରୀକ ଆଦି ସିଦ୍ଧେଶ୍ୱରୀ ମଙ୍ଗଳବାଳୀ ।
ଚର୍ଚ୍ଚିକା ଚଣ୍ଡମୁଣ୍ଡା ଯେ ଭଗବତୀ
ଶ୍ରୀମଙ୍କ ପ୍ରସାଦେ ସର୍ବେ ତୁଷ୍ଟ ହୃଷ୍ଟ ବଳକ ଇଚ୍ଛା ନ କରନ୍ତି ॥ ୩୪ ॥

ମୁକ୍ତ ବଜାର ମଧରେ ମହେଶ୍ୱର ଲିଙ୍ଗ ରୂପରେ ମନୋହର ।
ଶ୍ରୀଲଉ୍ଡୁକେଶ୍ୱର ବାଲୁକେଙ୍କଶ୍ୱର ଶ୍ରୀଗୋକର୍ଣ୍ଣେଶ୍ୱର ସ୍ୱପ୍ନେଶ୍ୱର ।

କପିଳେଶ୍ୱର ଯେ ତ୍ରିଭୁବନେଶ୍ୱର,
ଏ ଆଦ୍ୟ ତ୍ରିଧୂପ ପଞ୍ଚ ଅବକାଶ ମାଣ୍ଡ ସେ ପ୍ରସାଦ ସୁନ୍ଦର ।। ୩୫ ।।

× × ×

ବିଶ୍ୱସୃଜ ଅଙ୍ଗ ଏ ମେଡ଼ ମଣ୍ଡପ ବ୍ୟାଜେ ମେଡ଼ ଆଣି ସ୍ଥାପିଲ
ଭଗବନ୍ତୀ ଭଗ ଗଉଣିରେ ବାନ୍ଧି ଯାଉ ଶସ୍ୟକ ଆୟୁ କଲ
ପଞ୍ଚାଳ ଫିଙ୍ଗି ଦେଲ ଆନ ଦେଶକୁ,
ଏ ମଣ୍ଡଳ ମଧ୍ୟେ ସର୍ବ ଭରିଅଛି ବଣ୍ଟର ଏ କଥା ମନକୁ ।। ୩୮ ।।
(ମୋହନଲତା-୩ୟ ଛାନ୍ଦ)

'ମୋହନଲତା' କାବ୍ୟରେ ରସପଟ ପ୍ରଦର୍ଶନକାରିଣୀ 'କେତୁକା'ର ରୂପ ଓ ବେଶ ବର୍ଣ୍ଣନା :

"ଶୁଣି ବାହାର ହୋଇଲା ଯୁବତୀ । ଗତି କରନ୍ତେ ମଣୁଅଛି କ୍ଷିତି ।
ଅବା ଚଳିଆସେ ମଦନ ରଥ । ହୃଦ ସିଂହାସନେ ବିଜେ ମନ୍ମଥ ।।
ଭ୍ରୂରୁ ନେତ୍ର ଦୁଇ ଏକତ୍ର ହୋଇ । ଧନୁବାଣ ଦୁଇ ଭଗ ସନ୍ଧିଇ ।।
ମନୋହର ଜୁଡ଼ା ମାଳ କଳଶ । ତହିଁରେ ସରି ସରି ବେଢ଼ା ପୁଷ୍ପ ।
ଅଧର ପ୍ରବାଳ ତରଳା ପତ୍ରି । ଉରଜ ଝର୍ଦ୍ଦି ଅତି ମନୋହରି ।
ଅଞ୍ଚଳ ପତାକା
ଉଦ୍‌ବେଗରୁ ଉଡ଼ ଶୋଭାଧ୍ୱକା ।। ୮ ।।
କପାଳେ ସୁନ୍ଦର ସୁନ୍ଦର ଚିତା । ଚନ୍ଦ୍ରକୋଳେ କି ବାଳକ ସବିତା ।
ନାସା ପୃଷ୍ଠରେ ହୀରବସା ଗୁଣା । ଅର୍ଦ୍ଧେ ଦିଶୁଛି ଦେବାରୁ ଓଢ଼ଣା ।
ଗଳେ ନାନାହାର । କର୍ଣ୍ଣେ ବଡ଼ କାପ ଚକ୍ର ଆକାର ।। ୯ ।।
ତାହା ଉପରେ ଉଡ଼େ ଫିରିଫିରି । ଝଲକବାରେ ଦିଶେ ମହାତୋରି ।
ନାଗବଲ୍ଲୀ ଚୂର୍ଣ୍ଣ କଲେ ଉନ୍ନତ । ଅଧର କି ଛୁଦ୍ରହାସ ମିଶ୍ରିତ ।
ଉଇଁଶିଆ ମାଳ ! ତାର ଭୁଜରେ ଦିଶୁଅଛି ଝଳ ।। ୧୦ ।।
କରେ କାଚ କଉଆଳି ପାଖରେ । ଚକି ବାଙ୍କି ମୁଦି ସୁଅଙ୍ଗୁଳିରେ ।
ଅବଳା ହେଲେ ପାଦେ ତାର ବଳା । କେନ୍ଦର ନବୀ ଛବି ଯେ ପ୍ରବଳା ।
ବାଦ ମୁହିଁ ହାର ! କି ତା ମନ୍ଦରକୁ ସାଜଛି ମାର ।। ୧୧ ।।

ପଟ୍ଟ କଞ୍ଚୁ ଅଚ୍ଛୁ ଦକ୍ଷ କକ୍ଷରେ । ପ୍ରବେଶ ଆମ୍ଭି ଉପବନ ଦ୍ୱାରେ ।
ପ୍ରତିହାରୀ କହୁ ଖୁଣ୍ଟିଆ କାଣ । ଡାକନ୍ତି ଉଚ୍ଚେ ମନୋହର ବାଣୀ ।
ମଣିମା ସେବେଦେବ ! ସଜ୍ଜଲଳିଳ୍ପ ଲୋଚନ ଉପ୍ରବ" ।। ୧୨ ।।

## ଶିବଙ୍କ ରୂପ ଓ ବେଶ ବର୍ଣ୍ଣନା—

କନ୍ଧରେ ଟଙ୍କସୂତ୍ର ବ୍ୟାଘ୍ରାମ୍ବର । ଧବଳ ତନୁକ ଦିଶେ ସୁନ୍ଦର ।
କଷ୍ଟି ଶୁଣ୍ଠିକ ଚତୁର୍ଭୁଜ ସାଜେ । ମୃଗ ପରଶୁ ଅଭୟ ବରଦେ ।।
ପ୍ରକୋଷ୍ଠେ କଙ୍କଣ ! ଅଙ୍ଗୁଳି ରତ୍ନ ମୁଦ୍ରିକା ଭୂଷଣ ।। ୩୭ ।।
ନିନ୍ଦା କରଇ ମୁଖ ସୁଧାକର । ଘୂର୍ଣ୍ଣିତ ତିନି ଲୋଚନ ଯାହାର ।
କପୋଳେ ଭସ୍ମ ତିନିଗାର ହୋଏ । ନିଶ ମୃଗମଦ ରେଖା ପଡ଼ାଏ ।
ସୁରଙ୍ଗ ଅଧର ! ଶିରରେ ଜଟା କଣ୍ଠେ ନାଗହାର" ।। ୩୮ ।।

(ଲଳିତଲୋଚନା-୮ମ ଛାନ୍ଦ)

## ଲଳିତଲୋଚନା କାବ୍ୟରେ ନାୟିକା ଲଳିତଲୋଚନାର ରୂପ, ଗୁଣ ଓ ବେଶ ବର୍ଣ୍ଣନା

ନୃପ ନନ୍ଦନୀ ସେ କୁନ୍ଦରଦନୀ, କବ ବନ୍ଦନୀ ମାନସ ମୋହିନୀ ।
ସେ ମହୀ ମଣ୍ଡନା ! ଖଣ୍ଡ ପରଶୁ ଧୈର୍ଯ୍ୟ ବିଖଣ୍ଡନା ।। ୧ ।।
ରତ୍ନସାନୁ ସମ ବିପୁଳ ସ୍ତନା । ଉଲଟ କଦଳୀ ଉରୁ ନବୀନା
ବର ବର୍ଣ୍ଣିନୀ ସଙ୍ଗୀତ ପାଠିନୀ । ସଖୀ ସମୁଦ୍ର କରୁଣା ନିଧାନ ।।
ସୁଧାଲେପ ପୁରେ ! ବିଜେ ସ୍ୱେ ସକଳ ଅବଧାନରେ ।। ୨ ।।

× × ×

ଆସିଲେ ଭୂଷଣେ ଭୂଷା ଭୂଷଣ । ଶତଣୀ ପ୍ରସାଧନ ଆଦ ପୁଣ ।
ସୁବାସ ତଇଳ ଚୂଆ ଚନ୍ଦନ । କୁଙ୍କୁମ କସ୍ତୁରୀ ଗୋଳା ଅଞ୍ଜନ ।।
ରତ୍ନପୀଢ଼ ଥୋଇ ! ବିଜେ କରାଇଲେ ଜେମାଙ୍କୁ ନେଇ ।। ୭ ।।
କରେ ସିଂଘାର କଙ୍କତିକା ଧରି । ଉଚର ଚକ୍ଷୁର ଚସୂକୁ ଚରି ।
ଚରମେ ପଡ଼ନ୍ତେ ପରମ ଶୋଭା । ମୁଖ ମୟୂଖାଂଶୁ ଆଶୁକ ପ୍ରଭା ।
ଦର୍ଶନେ ଦରଶେ ! ବିଧୁ ବିଧୁର ବିଧୁରେ କି ଖସେ ।। ୮ ।।
ଭିଡ଼ ସଜାଡ଼ ନିବାଡ଼ଲେ ଜୁଡ଼ା । ଖଞ୍ଜିଲେ କି ଆଣେ କିଆ ପାଖୁଡ଼ା ।

ଦେଖି ଏମନ୍ତ ଶୋଭା ସଖୀବୋଲ । ଭଲ ପୁର ହେଜ ବାଣ୍ଟି ଛ ଭାଲ ।
ବ୍ରହ୍ମା ରୁଦ୍ର ହେଲେ ! ନବା ମୁବଣ୍ଟ ବେଣୀ କ ଦେଖିଲେ ।। ୯ ।।
ଚମର ସଙ୍ଗେ ରଙ୍ଗ ଭଣ୍ଡି ଦଶି । ଅରୁଣକୁ ରାହୁ ଅଛୁକ ଗ୍ରାସି ।
ମଣ୍ଡିଲ କେ ନେଇ କୁସୁମ ଗଭା । ଗଣ୍ଡିଲ ଇନ୍ଦ୍ରଧନୁ ତନୁ ଆଭା ।
ସେ ବାଙ୍କ ଓଣ୍ଡ୍ରୁର ! ଦେଲେ ଧୃତ ଛେଦ ପରଶୁ ଗଭା ।। ୧୦ ।।
କେ ଦେଲା ତାର ତାରଜାଲ ଉହ୍ନି । କେଶ କାଳିନ୍ଦୀକି କଦମ୍ବ କହ୍ନି ।
ସ୍ୱର୍ଣ୍ଣ ଦୁର୍ବାଞ୍ଚନ କେବ ଯା ଦେଲେ । ତିନଲୋକେ ସମ ନାହିଁ କହିଲେ ।
କଣ୍ଟୁର କୁରୁଳୀ ! ପୁଣି କେ ଦେଲା ଝିକିମିକି ମାଳୀ ।। ୧୧ ।।
ଉତେ୍ନାଦଗିତ ତନ୍ଦ୍ରଣୀ ତିଳକ । ତୁଳନା ରତ୍ତ ନୁହଇଁ ତିଳକ ।
ଏହାକୁ ଦେବ କାହିଁକି ତିଳକ । ଦେଲା କହିଲା ସେ ଏମନ୍ତ ବାକ ।
ମୃଗମଦ ଗାର ! ତିଳରେ ଟୋପି କର ଘନସାର ।। ୧୨ ।।
ତିଳ ପ୍ରସୂନ ଜଣା ଘୋଣା ପୁଟେ । ଦେଉଁ ନାକଚଣା ଶୋଭା ପ୍ରକଟେ ।
ତା ଦରଶନେ କହେ ରସବନ୍ତ । ନାଶିବକି ଯୁବା ବ୍ରତଣ୍ଟ ଧୃତ ।
ସେ ବକୁଳ ଶର ! ରଖୁ କିଙ୍କେ ଭୁରୁ ଆଗର ।। ୧୩ ।।
ଆଗରେ ଦେଲେ ବଚନ ଝୁଣ୍ଟିଆ । ବୋଇଲେ ଜଣେ ହେବ ଏ ଖୁଣ୍ଟିଆ ।
ତନୁରେ ଲେପିଲେ ସୁଭନ ସାର । ପିନ୍ଧାଇବାରୁ ଗୃରୁ ନୀଳାମ୍ବର ।
କେ ହସି କହଇ, ସ୍ୱର୍ଣ୍ଣ ଭୂମିରେ ଭାନୁ ଯା ରହଇ ।। ୨୪ ।।
(ଲଳିତଲୋଚନା-୮ମ ଛାନ୍ଦ)

## ଚମ୍ପକ ପ୍ରଦର୍ଶନକାରୀ 'ଜଙ୍ଗମ'ର ରୂପ, ଗୁଣ ଓ ବେଶ—

ଶୁଣ ହେ ଏଥୁ ଅନନ୍ତରେ । ଜଙ୍ଗମ ମିଳେ ସେ ରାଜ୍ୟରେ ।। ୧ ।।
ହୋଇଛୁ ଏହ୍ୱପର ବେଶ । ନୀଳ ଧବଳ ମିଶା କେଶ ।। ୨ ।।
ପିଙ୍ଗଳ ପଟେ ବନ୍ଧା ମୁଣ୍ଡେ । ଭସ୍ମ ଲେପନ ବେନି ଗଣ୍ଡେ ।। ୩ ।।
ଚତୁର୍ଥୀ ଚନ୍ଦ୍ର ଆକୃତରେ । ଚନ୍ଦନ ଚିତା କପାଳରେ ।। ୪ ।।
ମଧ୍ୟରେ ସିନ୍ଦୂର ବିନ୍ଦୁଏ । ଅରୁଣ ପ୍ରାୟେ ଶୋଭା ପାଏ ।। ୫ ।।
ଶ୍ରବଣେ ତାମ୍ବର କୁଣ୍ଡଳ । କଣ୍ଠରେ ରୁଦ୍ରାକ୍ଷର ମାଳ ।। ୬ ।।

ଅରୁଣ ବସ୍ତ୍ରେ ବାନ୍ଧିଣିବ । ଲମ୍ବାଇଅଛୁ ନିଜ ଗ୍ରୀବ ॥ ୭ ॥
ପଟ ଧରିଛୁ କକ୍ଷ ତଳେ । ଶିବ ଶିବ ଶବଦେ ଚଳେ ॥ ୮ ॥

(ଲଳିତଲୋଚନା-୯ମ ଛାନ୍ଦ)

## ଭାଟର ରୂପ ଓ ବେଶ ବର୍ଣ୍ଣନା—

"ହୋଇଲା ଭାଟ ପ୍ରବେଶ, କୃଷ୍ଣ ଦ୍ୱିତୀୟା ଏ ମାସ ।
ଜେମା ସ୍ୱୟମ୍ବର ସକଳ ରଜାଙ୍କୁ ଦେଇ ଆସନ୍ତୁ ଆଦେଶ ॥ ୧୬ ॥

ଶୂନ୍ୟଗାମୀ ଅଶ୍ୱପରେ, ଆରୋହି ଯାଇ ସତ୍ୱରେ ।
ଭୂପସଦନେ ନିମନ୍ତ୍ରଣ କରି ଯେହ୍ନେ ଆସିବୁ ଯାଇଁ ବେଗରେ ॥ ୧୭ ॥

ଶୁଣି ଶିର ଦେଲା ନତ, ବସି ସେ ବାଜି ଉପର ।
ଦେହେ ଜାମା ଜୋଡ଼ି କଟାରି ଖଡ୍ଗ ମାଝେ ଶିରେ ପାଗ ଚାରୁ ॥ ୧୮ ॥

ନାଶ ଉଡ଼େ ଫର ଫର, ଏଣେ କଳା କଳେବର ।
ପାଟେଲା ଥୋଡ଼କ ଯମୁନା ମଧ୍ୟରେ ବହୁଅଛି ଗଙ୍ଗାଧାର ॥ ୧୯ ॥

ପଡ଼ନାହିଁ ମାନ ଦାନ୍ତ, ନେତ୍ରକୁ କଲା ଘୂର୍ଣ୍ଣିତ ।
ଯା ଯା ଭାଷି ଛାଟେ ପିଟିବାରେ ବାଜି ବାଜି ଆକାଶେ ଭୁରଇ" ॥ ୨୦ ॥

(ଲଳିତଲୋଚନା-୨୪ ଛାନ୍ଦ)

## 'ମୋହନଲତା' କାବ୍ୟରେ ଜଙ୍ଗମର ରୂପ ଓ ବେଶ ବର୍ଣ୍ଣନା—

କଳା ଧଳା ମିଶା ବାଳ ଶ୍ମଶ୍ରୁଳ ଥୋଡ଼ ।
କାଳନ୍ଦୀ କଲ୍ଲୋଳେ ଗଙ୍ଗାଜଳ କି ଯୋଡ଼ ॥ ୧୨୯ ॥

କକ୍ଷ ବକ୍ଷ ଲୋମ ଏତେ ବଢ଼ି ଅଧରେ ।
ଗଣ୍ଡି ଶିର କଣ୍ଠ ବ୍ୟକ୍ତ ତା ଆରମ୍ଭରେ ॥ ୧୩୦ ।

ପୃଥୁଳ ଉଦର ଯେହ୍ନେ ଘଟାର୍ଦ୍ଧ ଭାଗ ।
ଓସାର ଚରମ ଲମ୍ବ ହସ୍ତ ପଦାଗ୍ର ॥ ୧୩୧ ॥

କଣ୍ଟୁଳ ବରନ ଭାଲେ ଭସ୍ମ ତ୍ରିଗାର । ସୁରନଦୀ ବହୁଅଛି ହୋଇ ତ୍ରିଧାର ॥
ପିଙ୍ଗଳ ଦୁକୂଲ ମାଥେ ସାଜ ବାନ୍ଧିଛି । ବେଲପତ୍ର ଚମ୍ପା କର୍ଣ୍ଣପରେ ଖୋଷିଛି ॥
ଲୋହିତ ଅମ୍ବରେ ଶିବଲିଙ୍ଗ ବାନ୍ଧଣ । ଲମ୍ବାଇ ଗ୍ରୀବାରେ ନିରେଖେ ପୁଣପୁଣ ॥

ରୁଦ୍ରାକ୍ଷପୂର୍ଣ୍ଣ ଚନ୍ଦ୍ରକା ସ୍ଫଟିକ ତନ । ମାଳାଏ ଲମ୍ବି ଅଛନ୍ତି ନାଭିକ ଘେନ ॥
ଅରୁଣ ଅମ୍ବର ଆଣ୍ଠୁ କାଛୁଣି ପିନ୍ଧ । ସେହି ବର୍ଣ୍ଣେ ଉତ୍ତରୀୟ ତହିଁକି ଗଚ୍ଛ ॥
ମୟୂର ପୁଚ୍ଛକୁ ମୁଠାଏ ବାମକରେ । ଦକ୍ଷିଣ ହସ୍ତରେ ରୁଦ୍ରାକ୍ଷ ଭଜନ କରେ ॥

(ମୋହନଲତା-୧୧ଶ ଛାନ୍ଦ)

ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା 'ମୋହନଲତା' କାବ୍ୟର ଦଶମ ଛାନ୍ଦରେ ଓ 'ଲଳିତଲୋଚନା' କାବ୍ୟର ଦ୍ୱାଦଶ ଛାନ୍ଦରେ ନାୟକର ମୃଗୟା ଗମନ ବୃତ୍ତାନ୍ତରେ ଶବର, ଆଦିବାସୀ ଓ ଫିରଙ୍ଗିମାନଙ୍କର ରୂପ, ଗୁଣ ଓ ବେଶ ପ୍ରଭୃତିର ଏକ ନିଖୁଣ ବର୍ଣ୍ଣନା କରିଅଛନ୍ତି ।

"ବାଗୁରୀ ଘେନି ବ୍ୟାଧେ ବାହାର । ଗଜ ବନ୍ଧନୀ କନ୍ଧେ କାହାର ।
କାଣ୍ଡ ବାଉଁଶ ଧେନଣ କର । କଲେ ଜୁହାର ଯେ ॥
ନିଷାଦେ କରିସାରି ଆହାର । ଜାଲ ଭାଇଙ୍କୁ କନ୍ଧେ ନିହାର ।
କରି କହନ୍ତି ଆଜ ନୃପଜ । ବନ ବିହାର ଯେ ॥
ଦେଖ କି ଶୋଭା ରୂପ ଏହାର । ଗଳେ ମଞ୍ଜୁଳ ମୁକୁତା ହାର ।
ଜୀବନ୍ତ ଜନ୍ତୁ ଧରା ଯାହାର । ହେବ ଶିରୋପା ସଜା ତାହାର ।
କେ ବୋଲେ ମୁଁ ଜାଣଇ କେବଳ । ଭାଲି ପ୍ରହାର ଯେ ॥ ୭ ॥
ଚର୍ମ ପାଦୁକାମାନ ମାଡ଼ଣ । କଟୀରେ କାଣ୍ଡ ପେଟି ଯୋଡ଼ଣ ।
କେ ନଳ ଅଠାକାଠି ଲେଉଡ଼ଣ । କେ ଯାଉଁ ଗଡ଼ିଯାଏ ପଡ଼ଣ ।
କେ ଡର୍କେ ଗର୍କେ ପଥ ଛାଡ଼ଣ । କେ ନଳୀ ଡାଳ ଡାଟି ଆଡ଼ଣ ।
ଜନ୍ତୁ ଲେଉଡ଼ଣ ଯେ ! ଲଇଁ ଗୁଳିଣ ଛାଇ ମାଡ଼ଣ ॥

× × ×

କବି ସଦାନନ୍ଦ ନୟାଗଡ଼ ଗଡ଼ଜାତ ବାସିନ୍ଦା ହୋଇଥିବା ହେତୁ ଆଦିବାସୀ ଓ ଅନ୍ୟାନ୍ୟ ପାର୍ବତ୍ୟ ଅଞ୍ଚଳ ବାସିନ୍ଦାମାନଙ୍କ ରୂପ, ଗୁଣ ଓ ବେଶଭୂଷା ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ । ତେଣୁ କବିଙ୍କ ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ ହୋଇଉଠିଛି । ଏହା ବ୍ୟତୀତ ଆମ ଦେଶକୁ ଆସିଥିବା ବିଦେଶୀ

ଫିରଙ୍ଗିମାନଙ୍କର ଚରିତ୍ରକୁ କଟୁ ସମାଲୋଚନା କରି ନିଜର ସ୍ୱଦେଶପ୍ରେମର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି ।

## ସମାଜ ଚିତ୍ର—

କବି ତାହାଙ୍କ କାବ୍ୟମାନଙ୍କରେ ସାମାଜିକ ଜୀବନର ବହୁ ବିଧି ବିଧାନ ରୀତି ନୀତି, ଦୋଷ ଦୁର୍ବଳତା ଓ କୁସଂସ୍କାର ଆଦି ବିସ୍ତୃତଭାବେ ବର୍ଣ୍ଣନା କରିଅଛନ୍ତି । ସେହି ସାମାଜିକ ରୀତିନୀତି ତତ୍‌କାଳୀନ ସମାଜର ବହୁବିଧ କ୍ଷେତ୍ରରେ ପ୍ରଚଳିତ ଥିଲା : ଯଥା—ବିବାହ ଉତ୍ସବ, ଜନ୍ମୋତ୍ସବ, ଓଷାବ୍ରତ ଓ ପର୍ବପର୍ବାଣୀ ପାଳନ, ସିଂହାସନ ଅଭିଷେକ ଉତ୍ସବ, ପାରିବାରିକ ଜୀବନର ଦୋଷ ଦୁର୍ବଳତା, କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରଭୃତି । ସେହି ସାମାଜିକ ପ୍ରଥା ମଧ୍ୟରୁ ଏବେସୁଦ୍ଧା କେତେକ ପ୍ରଚଳିତ ଅଛି ।

କବି ବିବାହ ଉତ୍ସବରେ ସ୍ୱୟମ୍ବର, ବରକନ୍ୟା ବେଶ, ବରଯାତ୍ରୀ ମାନଙ୍କ ଶୋଭାଯାତ୍ରା, ବାଣରୋଷଣୀ, ପଞ୍ଚୁଆର ନୃତ୍ୟଗୀତ, କନ୍ୟାମଙ୍ଗୁଳା, ବର ବରଣ, ଅଷ୍ଟମଙ୍ଗଳା, ମଧୁଶଯ୍ୟା, ଭୋଜି ଓ ଯୌତୁକ ଆଦିର ନିଖୁଣ ବର୍ଣ୍ଣନା ନିଜର କାବ୍ୟମାନଙ୍କରେ ଉପସ୍ଥାପିତ କରିଅଛନ୍ତି ।

ବିବାହ ପୂର୍ବରୁ ନାୟକ ନାୟିକା ପରସ୍ପରର ଚିତ୍ରପଟ୍ଟ ସନ୍ଦର୍ଶନ ଓ ଚାଟୁଉକ୍ତି ବିନିମୟ କରିଛନ୍ତି । ମାତ୍ର ସ୍ୱାଧୀନ ମନୋବୃତ୍ତି ସହିତ ସାମାଜିକ ଶୃଙ୍ଖଳାବୋଧ ସେମାନଙ୍କର ଥିବାରୁ ଅତି ବିହ୍ୱଳ ଅବସ୍ଥାରେ ସୁଦ୍ଧା ସେମାନେ କୌଣସି ଅସାମାଜିକ କାର୍ଯ୍ୟ କରିନାହାନ୍ତି । ଏହାର ଉଦାହରଣ କବିଙ୍କ କାବ୍ୟରୁ ମିଳିଥାଏ ।

## ବିବାହ ସମୟର ସାମାଜିକ ବିଧିବିଧାନ—

ସଧବା ସାତ ସଙ୍ଗରେ । ହୁଳହୁଳି ନିରନ୍ତରେ ।
ଗ୍ରାମଦେବୀ ପୂଜି ବନ୍ଦାପର୍ଣ ବିଧି କଲେ ଯେ କୁଳାଗ୍ରେ ॥ ୨ ॥
ବର ମଙ୍ଗୁଳିବାପାଇଁ ସର୍ବ ସମ୍ଭାର ଘେନାଇ ।
ଢୋଟା ନବରଙ୍କୁ ଗଲେ ପୁରୋହିତ ସର୍ବ ସୁତ ଏ ଦୁଇ ॥ ୩ ॥

× × ×

ବେଣୁ ବୀଣା ରବ ସଙ୍ଗେ । ଅମୃତ ତମ୍ବୁରା ରଙ୍ଗେ ।
ସର ମଣ୍ଡଳ ମର୍ଦ୍ଦନ, ପଖାଉଜ ବାଜେ ତାଳମାନ ସଙ୍ଗେ ॥ ୧୩ ॥

ହାବେଳି ଚମକ ଯାଇ । ଇତ୍ୟାଦି ବାଣ ଗର୍ଜଇ ।
କୁମର ବସ୍ତ୍ରରେ ମୋ ଭାଗ୍ୟ ନୃପ କି ଅଭାଗ୍ୟକୁ ଘଉଡ଼ଇ ॥ ୧୪ ॥

ସପତ ଦ୍ୱିଜ ନନ୍ଦନୀ । ମୃଦୁ ସ୍ୱନ୍ତ ସଙ୍ଗେ ଘେନି ।
ଜଳ ତୋଳନ୍ତି ବୁଲି ସପ୍ତ ସାମନ୍ତ ଉଆସରୁ ବାଧ୍ୟ ଘେନି ॥ ୧୫ ॥

× × ×

ହରିଦ୍ରା ତଣ୍ଡୁଳ ଧରି । ଆଶୀର୍ବାଦ ପଢ଼ିସାରି ।
ପୁରୋହିତ ବରକନ୍ୟା ଶିରେ ଦେଲେ ମଙ୍ଗଳ ବାକ୍ୟ ଉଚ୍ଚାରି ॥ ୨୭ ॥

ପୁଣ୍ୟାହ ବଚନ କଲେ । ଆଦିତ୍ୟଙ୍କୁ ଅର୍ଘ୍ୟ ଦେଲେ ।
ଖଟଣି ବାଳୀ ମୃଦୁ ସ୍ୱନ ସହିତେ ପୁରକୁ ପାଛୋଟି ନେଲେ ॥ ୨୮ ॥

ରତ୍ନ ପୀଢ଼ିରେ ବସାଇ । ବାଳୀ ହୁଳହୁଳି ଦେଇ ।
ବର୍ତ୍ତୀକାରୁ ଏକ ଅଧିକ ଦୁଖର ପ୍ରଦୀପରେ ସେ ବନ୍ଦାଇ ॥ ୨୯ ॥

(ମୋହନଲତା-୩୬ଶ ଛାନ୍ଦ)

## ସମାଜରେ ପ୍ରଚଳିତ ବିଭିନ୍ନ ପର୍ବ ପର୍ବାଣୀ—

'ଯୁଗଳ ରସାମୃତ ଲହରୀ' କାବ୍ୟରେ ବର୍ଣ୍ଣିତ ହୋଇଥିବା 'ଗୋଷ୍ଠାଷ୍ଟମୀ' ପର୍ବ ଏବେ ମଧ୍ୟ ଗୋପାଳ ଜାତିରେ ପାଳିତ ହୋଇ ଆସୁଅଛି । ଏହିଦିନ ଗୋପାଳମାନେ ନୂତନ ବସ୍ତ୍ର ପରିଧାନ କରି ଗୋରୁମାନଙ୍କୁ ପୁଷ୍ପ ଚନ୍ଦନ ସିନ୍ଦୂରରେ ସଜାଇ ପୂଜା କରିଥାନ୍ତି ।

"ଅଷ୍ଟମୀ ଦିନ ଶୁଭ ଲଗନ, ଏଥି ଅନୁକୂଳ ସାର ।
ଶୁଣି ସେ ନନ୍ଦ ଯେ ଉପନନ୍ଦ କଲେ ସକଳ ସମ୍ଭାର" ॥ ୩୫ ॥

(ଯୁଗଳ ରସାମୃତ ଲହରୀ-୩ୟ ଛାନ୍ଦ)

"ଚୂତ ପତ୍ରରେ ବାନ୍ଧିଲେ ଘର । ସଫଳ ରମ୍ଭା ରଖି ଦୁଆର ॥
ସୁବର୍ଣ୍ଣ ପୂର୍ଣ୍ଣ କୁମ୍ଭ ସୁନ୍ଦର । ବେଦୀ ଉପର ସେ
ଦଧିମନ୍ଥନ ମଙ୍ଗଳ ଆଶେ । ରଖିଲେ ପଥ ଦକ୍ଷିଣ ଦେଶେ ।

ଉତ୍ତୀର୍ଣ୍ଣ ଯାଗବତ ହଟଯେ । ଗୋପ କୁମର ସେ
ଆସି ମିଳିଲେ ସ୍ୱପ୍ନ ନକର ସେ । ବୋଲନ୍ତି ଶୀଘ୍ରେ ଆରମ୍ଭ କର ସେ
ଉଚ୍ଚେ ଗାୟେଣୀ ଗାଇଲେ ଗୀତ । ହୁଳହୁଳିରେ ପୁର ପୂରିତ ।
କେ ଆସେ ଯାଏ ଲୋକ ବହୁତ । ବର୍ଣ୍ଣି ପ୍ରକାର ହେ" ॥ ୨ ॥

## 'ମାଘ ସପ୍ତମୀ' ବର୍ଣ୍ଣନା—

"ମାଘ ସ୍ନାନ କରି ଅଘ ଦୂର କଲେ ପୁଣ୍ୟବନ୍ତ ଜନମାନେ ।
ସାଧବ ମାଧବ ନାମ କୀର୍ତ୍ତନରେ ରସିଲେ ରଜନୀ ଦିନ" ॥ ୮ ॥

(ଲଳିତଲୋଚନା-୪୨ଶ ଛାନ୍ଦ)

## ଦୋଳ ଓ ହୋଲିପର୍ବ ବର୍ଣ୍ଣନା—

"ଦୋଳା ବିଜୟେ ଗୋବିନ୍ଦ । ମହୋତ୍ସବେ ଜନନାଦ ।
ଅବିର ଖେଳନ୍ତି ରଙ୍ଗେ ରସିକବୃନ୍ଦ ଏକାଳେ ॥ ୯ ॥
ରଞ୍ଜିଣ ପିଚକା ନଳୀ । କୁଙ୍କୁମ ଚନ୍ଦନ ଗୋଳି ।
ଖେଳନ୍ତି ନାରୀ ପୁରୁଷ କାହିଁ କେ ମିଳି" ॥ ୧୦ ॥

(ଲଳିତଲୋଚନା ୪୩ଶ ଛାନ୍ଦ)

## କୁମାର ପୂର୍ଣ୍ଣିମୀ ବର୍ଣ୍ଣନା—

କୁମାର ପଉର୍ଣ୍ଣମୀରେ, ତ୍ରିଯାଣେ ରସିଲେ
ପଶା ଖେଳରେ; ଏକାଳେ; ଭୁଞ୍ଜି ଜାତି ଜୁହ୍ନାଦରେ ଯେ" ॥ ୧୪ ॥

(ଲଳିତଲୋଚନା-୪୬ଶ ଛାନ୍ଦ)

## କାର୍ତ୍ତିକ ହବିଷ୍ୟ ବର୍ଣ୍ଣନା—

"ରାଧା ଦାମୋଦର ପୂଜା । ହବିଷ୍ୟ କରନ୍ତେ କାହାର ମଜ୍ଜା
ଏକାଳେ; ନିଷେଧ କେ କଲା ତେଜ୍ୟା ଯେ" ॥ ୧୩ ॥

(ଲଳିତଲୋଚନା-୪୬ଶ ଛାନ୍ଦ)

ଏହିପରି କବି ନାନା ପର୍ବପର୍ବାଣୀର ଏକ ବାସ୍ତବ ଚିତ୍ରଣ କରି ଯାଇଅଛନ୍ତି । ବର୍ତ୍ତମାନ ମଧ୍ୟ ଉପରୋକ୍ତ ସମସ୍ତ ପର୍ବପର୍ବାଣୀ ସମାଜରେ ପ୍ରଚଳିତ ।

## ପାରିବାରିକ ଜୀବନ—

କବି ତାଙ୍କ କାବ୍ୟମାନଙ୍କରେ ଉଚ୍ଚକୋଟୀର ପାରିବାରିକ ଜୀବନର ବର୍ଣ୍ଣନା କରିଅଛନ୍ତି । ଏଥିପାଇଁ ସେ ମୁଖ୍ୟତଃ ରାଜପରିବାରକୁ ନିଜର ଆଦର୍ଶରୂପେ ଗ୍ରହଣ କରିଅଛନ୍ତି । ଏହି ରାଜପରିବାର ଅନ୍ତର୍ଭୁକ୍ତ ସମସ୍ତ ବ୍ୟକ୍ତି ଉଚ୍ଚଶିକ୍ଷିତ, ଶୀଳବାନ ଓ ବିବେକୀ । ରାଜପରିବାର ସହିତ ସମ୍ପର୍କିତ ସଖାସଖୀ ପାତ୍ରପାତ୍ରୀ ଆଦିଙ୍କ ଶିକ୍ଷା ବେଶଭୂଷା, ଚାଲିଚଳନ, କଥୋପକଥନ ଆଦିରେ ଉଚ୍ଚ ଆଦର୍ଶ ଓ ସାମାଜିକ ମର୍ଯାଦା ପରିଲକ୍ଷିତ ହୋଇଥାଏ ।

ରାଜା ନିଜେ ପଣ୍ଡିତ, ବିବେକୀ, ସନ୍ତାନବତ୍ସଳ, ଗୁଣଗ୍ରାହୀ । ଯୁବରାଜ ଉଚ୍ଚଶିକ୍ଷିତ, ବୀର ଓ ପ୍ରେମିକ । ନାୟିକା ଉଚ୍ଚଶିକ୍ଷିତା ଓ ପ୍ରେମିକା । ଯୁବରାଜ ତଥା ନାୟିକାଙ୍କ ସହଚର ଓ ସହଚରୀମାନେ ମଧ୍ୟ ଉଚ୍ଚଶିକ୍ଷିତ, ଶୀଳବାନ, ସଖାଯୋଗ୍ୟ, ଚତୁର, ମାଲୁଣୀ ଶିକ୍ଷିତା, ବାକ୍‌ପଟୁ, ଚତୁର ଓ ମର୍ଯ୍ୟାଦାବତୀ, ଜଙ୍ଗମ ବହୁଶାସ୍ତ୍ରବିତ୍, ଅଦ୍ଭୁତ ଚିତ୍ରକର ଓ ବାକ୍‌ପଟୁ ।

ରାଜ୍ୟ ସମୃଦ୍ଧିଶାଳୀ, ପ୍ରଜାଗଣ ସୁଖୀ, ରାଜା ସୁଶାସକ, ରାଜ୍ୟ ପଶୁଶାଳାରେ ବିଭିନ୍ନ ଦେଶର ଉତ୍କୃଷ୍ଟ ଘୋଟକ, ବାଦ୍ୟ, ଅସ୍ତ୍ରଶସ୍ତ୍ର ଦ୍ରବ୍ୟ ସୁରକ୍ଷିତ ।

ପାତ୍ରପାତ୍ରୀ ମାନଙ୍କର ଶିକ୍ଷା ଉନ୍ନତ ଧରଣର । କୈଶୋର ଅବସ୍ଥାରେ 'ନିପୁଣତିଳକ' ବହୁ ବିଦ୍ୟାରେ ପାଣ୍ଡିତ୍ୟ ଅର୍ଜ୍ଜନ କରିସାରିଥିଲେ । ବ୍ୟାକରଣ, କାବ୍ୟ, ନାଟକ, ଅଳଙ୍କାର, ଷଟ୍ ଶାସ୍ତ୍ର, ଶସ୍ତ୍ରଶାସ୍ତ୍ର, ଜ୍ୟୋତିଷ ଆୟୁର୍ବେଦ, ଶିଳ୍ପଶାସ୍ତ୍ର, କାମଶାସ୍ତ୍ର ଓ ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । "ଭାରତୀର ଭଣ୍ଡାରରେ ବିଦ୍ୟା ଯେତେ । ହୃଦେ ରଖିଲା ଆଶ୍ରମେ ଭୂରିତେ" । ପୁଣି "ସର୍ବ ଗୁଣରେ ରତ୍ନାକର ।"

ଚିତ୍ର-ପଟଲେଖନ ବିଦ୍ୟା ସେ ସମୟରେ ବହୁ ଆଦର ଲାଭ କରିଥିଲା । ବିଶେଷତଃ ରାଜପରିବାରରେ ରାଜକୁମାର ଓ ରାଜକୁମାରୀ-ମାନଙ୍କର ବିବାହ ନିମନ୍ତେ ବିଭିନ୍ନ ଦେଶର ଭାଷା ନିର୍ବିଶେଷରେ ପାତ୍ର ପାତ୍ରୀ ଅନ୍ୱେଷଣ କରିବାକୁ ହେଉଥିବାରୁ ଚିତ୍ରପଟ ଲେଖନ ଏକ ଅର୍ଥକରୀ ବିଦ୍ୟାରେ ପରିଣତ ହୋଇଥିଲା । ନିପୁଣ ଶିଳ୍ପୀମାନେ ଏହି କଳାରେ ବିପୁଳ

ଅର୍ଥ ଉପାର୍ଜ୍ଜନ କରୁଥିଲେ । ଏହି ପଟ୍ଟ ସାଧାରଣତଃ ପୌରାଣିକ ବିଷୟକୁ ଅବଲମ୍ବନ କରି ଅଙ୍କିତ ହୋଇଥାଏ । ରାମାୟଣ, ମହାଭାରତ ଓ ଭାଗବତ ପ୍ରଭୃତି ଜନପ୍ରିୟ ଧାର୍ମିକ ଗ୍ରନ୍ଥମାନଙ୍କର ଚରିତ୍ର ଏହି ପଟ୍ଟମାନଙ୍କରେ ଚିତ୍ରିତ ହୋଇଥାଏ । ପଟ୍ଟପ୍ରଦର୍ଶକ ନାନା କାବ୍ୟ ଓ ପୁରାଣରୁ ଗୀତାଦି ବାଦ୍ୟସହ ଗାନ କରି ଦର୍ଶକମାନଙ୍କୁ ବୁଝାଏ । 'ଲଳିତଲୋଚନା' କାବ୍ୟରେ ଜଙ୍ଗମ ଜଣେ ଉଚ୍ଚକୋଟୀର ଚିତ୍ରକର ଓ ପଟ୍ଟପ୍ରଦର୍ଶକ । ଦେଶ ବିଦେଶରେ ଯଶ ଲଭି ତାଙ୍କର ପ୍ରଧାନ ଆଦର୍ଶ ଥିଲା । ଶିବଙ୍କୁ ସନ୍ତୁଷ୍ଟ କରି ଜଙ୍ଗମ ନିପୁଣ ତୂଳିକାର ଚିତ୍ରକୁ ନିଖୁଣ ଭାବରେ ରୂପ ଦେଲା ।

"ଶିବ ତୋଷେ ଚିତ୍ର ରୂପ ଲେଖିଲା ।
ଏକାକାର ଭିନ୍ନତା ନ ରଖିଲା" (୨ୟ ଛାନ୍ଦ)

ଏହି ଚିତ୍ରପଟକୁ ଧରି ସେ ଦେଶ ଦେଶାନ୍ତର ପର୍ଯ୍ୟଟନ କଲେ ।

ବାଲ୍ୟ ସମୟରେ ରାଜକୁମାରୀମାନେ ମଧ୍ୟ ଶିକ୍ଷୟିତ୍ରୀଙ୍କଠାରୁ ବିଦ୍ୟା-ଧ୍ୟୟନ କରୁଥିଲେ । 'ଲଳିତଲୋଚନା' ଜଣେ ପ୍ରବୀଣା 'ଜ୍ୟୋତିଷଯୋଷା' (ଅବଧାନ ସ୍ତ୍ରୀ) ଙ୍କଠାରୁ ବାଲ୍ୟଶିକ୍ଷା ପ୍ରାପ୍ତ ହୋଇଥିଲେ । ଏହି ଶିକ୍ଷୟିତ୍ରୀ ବହୁ ବିଦ୍ୟାରେ ବିଶାରଦା ଥିଲେ ।

"ସଙ୍ଗୀତାଦି ସାହିତ୍ୟେ ବିଧି ଯେତେ ।
ରତିଶାସ୍ତ୍ର ସହିତେ ରଖି ଚିତ୍ତେ" ।। (ଲଳିତଲୋଚନା ୨ୟ ଛାନ୍ଦ)

## ନାୟକର ଶିକ୍ଷା ବର୍ଣ୍ଣନାରେ ତତ୍କାଳୀନ ସମାଜର ଚିତ୍ର—

"କ୍ରମରେ ହୋଇଲା ପାଞ୍ଚ ବରଷ । କର୍ଣ୍ଣଭେଦ ବିଦ୍ୟାରମ୍ଭ ବିଶେଷ ।।
ସେ ଶିଶୁଙ୍କ ସଙ୍ଗେ; ସିଦ୍ଧି ଆଦି କରି ପଢ଼ିଲା ରଙ୍ଗେ ।। ୧ ।।

ଅକ୍ଷର ଚିହ୍ନି ଗାନ କଲା ଗୀତ । ତଦନନ୍ତରେ ଆରମ୍ଭି ସଂସ୍କୃତ ।
ଚର୍ଯ୍ୟାସହ ଅଭିଧାନ ଅନେକ । ପୂର୍ଣ୍ଣ ବ୍ୟାକରଣେ ହେଲା ବିବେକ ।
ସେ ବାରିଧି ବତ; ତହିଁରେ ବାଡବ କୁମର ଚିତ୍ତ ।। ୨ ।।

ସନ୍ଧି ସନ୍ଧାନେ ଅତ୍ୟନ୍ତ ପ୍ରବୀଣ । ଭୂଗୀର୍ବାଣ ଶିଶୁ ସଙ୍ଗେ ଗୀର୍ବାଣ ।
ପ୍ରୟୋଗ କରେ ଯୁକ୍ତେଶ୍ୱର ପରି । ଶବ୍ଦ ସୃଷ୍ଟିରେ ହେଲା ଅଧିକାରୀ ।।
ଆଖ୍ୟାତ ମାର୍ଗରେ; ପ୍ରବେଶ ହୋଇଲା ଶୁଭ ଯୋଗରେ ।। ୩ ।।

× × ×

ଭୂତ ଭବିଷ୍ୟ ବର୍ତ୍ତମାନ ତିନ । କାଳ ପ୍ରୟୋଗ ସବୁ ଅନୁମାନ ।
ତଦନ୍ତରେ କୃତ : କାରକ ତଦ୍ଧିତରେ ସମାପତ ॥ ୪ ॥

ପୁଣ ବହୁତ ରସ କାବ୍ୟମାନ । ପଢ଼ି ଜାଣିଲା ତାହାର ବିଧାନ ।
ଅଳଙ୍କାର ଶାସ୍ତ୍ର ଅଳଙ୍କାରରେ । ମନକୁ ମଣ୍ଡନ କଲା ରୁଚିରେ ।
ଲୋଭ ତାକୁ ଭଲ ! ନାଟକ ନାଟଶାଳେ ନଗ୍ରଇଲା ॥ ୫ ॥

ନ୍ୟାୟ ମୀମାଂସା ପାତଞ୍ଜଳ ତିନ । ସାଂଖ୍ୟ ବେଦାନ୍ତ ବୈଷେଶିକ ଯେନ ।
ଏ ଷଟଶାସ୍ତ୍ର ଶ୍ରୁତି ପ୍ରବେଶରେ । ବିସ୍ତାରଣ ସେ ଯେ ନୋହିଲେ ବାରେ ।
ତହୁଁ ଏଥିପର; ସଙ୍ଗୀତ ଶାସ୍ତ୍ରେ ହେଲା ଅଧିକାରୀ ॥ ୬ ॥

ବୈଦ୍ୟପଣେ ଧନ୍ୱନ୍ତରୀ ହାରିବ । ଜ୍ୟୋତିଷରେ ବାଚସ୍ପତି ଭାର୍ଗବ ।
ଅଶ୍ୱଶାସ୍ତ୍ର ଶିଳ୍ପୀଶାସ୍ତ୍ର ଆଦରେ । ଅଭ୍ୟାସ ହେଲା ଗୋଚର ବିଧିରେ ।
ଧର୍ମଶାସ୍ତ୍ରମାନ ; ଭାଗବତାଦି ପୁରାଣ ପ୍ରଧାନ ॥ ୭ ॥

ତଦୁତ୍ତରେ ଅଶ୍ୱାରୋହଣ କଲା । ଧୁଆଁଇ ଧୁପାଇଲା କୁଦାଇଲା ।
ଦୂର ନିକଟ ଗତାଗତି ଛନ୍ଦ । ବାମଦକ୍ଷ ଫେରି ଶୀଘ୍ରାଦି ମନ୍ଦ ।
ତା ଆସନ ଦମ୍ଭ ; ସାହସ ଶଶୀ ଧରିବା ଆରମ୍ଭ ॥ ୮ ॥

ବାହୁ ବିଧିରେ ଧୀର ବିଦ୍ୟମାନ । ସାଧିଲା ସମସ୍ତ ରଖି ତା ମନ ।
ଧନୁର୍ବାଣ ଭଲ ଚକ୍ରଣ ଦଣ୍ଡା । ପଟା ଗୁରୁଦା ଚକ୍ରଫେରି ଖଣ୍ଡା ।
ଗଦାଦି ଶାବେଳ; ବିବାଦକୁ ନ ମିଳିଲେ ତା ଭଳ ॥ ୯ ॥

(ମୋହନଲତା-୪ର୍ଥ ଛାନ୍ଦ)

ସେହିପରି କବି 'ଲଳିତଲୋଚନା' କାବ୍ୟର ୨ୟ ଛାନ୍ଦରେ 'ନିପୁଣ ତିଳକ'ଙ୍କର ଶିକ୍ଷା ବର୍ଣ୍ଣନା ପ୍ରସଙ୍ଗରେ ତତ୍କାଳୀନ ସମାଜରେ ପୁରୁଷମାନଙ୍କର ଶିକ୍ଷାର ମାନଦଣ୍ଡକୁ ନିର୍ଣ୍ଣୟ କରିଅଛନ୍ତି ଓ ଶିକ୍ଷାସମ୍ବନ୍ଧିତ 'କର୍ଣ୍ଣଭେଦ' ପ୍ରଭୃତି ବିଧିବିଧାନ ବିଷୟ ମଧ୍ୟ ଉଲ୍ଲେଖ କରିଅଛନ୍ତି ।

ଏହା ବ୍ୟତୀତ କବି ତତ୍କାଳୀନ ସମାଜରେ ପ୍ରଚଳିତ ଯୌତୁକ ପ୍ରଥା,ଯୁଦ୍ଧକ୍ଷେତ୍ରରେ ବ୍ୟବହୃତ ଅସ୍ତ୍ରଶସ୍ତ୍ରାଦି ଓ ବାହନ ତଥା ବ୍ୟବହୃତ ବିଭିନ୍ନ ବାଦ୍ୟଯନ୍ତ୍ର ଓ ନାରୀ ପୁରୁଷଙ୍କ ଦ୍ୱାରା ବ୍ୟବହୃତ ନାନା ଅଳଙ୍କାର ମାନଙ୍କର ବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି ।

## ତତ୍‌କାଳୀନ ସମାଜରେ ଯୌତୁକ ପ୍ରଥା—

"ଯୁବରାଜ ବାଣୀ ଶୁଣି ମନ୍ତ୍ରୀମଣି ରଜା ଛାମୁରେ କହିଲା ।
ନୃପ ସନମତେ ଯଉତୁକ ଦ୍ରବ୍ୟ ସବୁ ଆଣି ସମର୍ପିଲା ସେ ଯେତେ ॥
ଦେଲା ମତ୍ତ କୁଞ୍ଜର ଏ ମତେ ସେ କେତେ ଯେ ।
ଦୋଷ ହୀନରେ ଶୋଭା ସମସ୍ତେ ଯେ ॥ ୨ ॥
ସପ୍ତବଧ ଜାତି ଯେତେ ଭଲ ସେ । ସଭି ଅମାର ରତ୍ନେ ମଣ୍ଡିଲା ।
ଜାତି ଲକ୍ଷଣ ଦୋଷହୀନ ସମସ୍ତ ନାନା ଦେଶ ତୁରଙ୍ଗମ ॥ ୫ ॥

× × ×

ଏହି ପ୍ରକାରେ ପାଞ୍ଚଲକ୍ଷ ତୁରଙ୍ଗ କୁଞ୍ଜର ଲକ୍ଷ୍ୟ ସଂଖ୍ୟାରେ ।
ଦେଲେ ପରିବାରି ସହସ୍ରେ ଯୁବତୀ ପଣ୍ଡିତ ସେବା ଛନ୍ଦ୍ୟାରେ ସେ, ସାରି ॥
ଶାଦପତ୍ରା ଶୁକ ଆଦି କରି ସେ ସାରି । ଦୁଇସହ ରତନ ପିଞ୍ଜରୀ ସେ, ସାରି ॥
ନାନା ଦେଶୀ କମ ଅଳଙ୍କାର ବହୁଦେଶ ଅପୂର୍ବ ପଦାର୍ଥ ।
ପୁସ୍ତକ ଲେଖନ ନାନା ବର୍ଣ୍ଣିଜାତି କୃପାଣ କମାଣ କୋଥ ସେ, ଏତେ
ଗାବ ମହିଷ ଅଜା ଉଷ୍ଟ ଅନେକ ଗଣନା କରି କ କାର୍ଯ୍ୟ ।
କେମାକୁ ବଜପ୍ତେ କରିଅ ବୋଲଣ ଆଜ୍ଞା ଦେଲେ ମହାରାଜ ॥

(ଲଳିତଲୋଚନା-୩୯ଶ ଛାନ୍ଦ)

## ଯୁଦ୍ଧକାଳୀନ ଅସ୍ତ୍ରଶସ୍ତ୍ର ଓ ବାହନ—

ଯୁଦ୍ଧରେ ଧନୁର୍ବାଣ, କୁନ୍ତ, ଖଡ୍‌ଗ, ଗଦା, ବର୍ଚ୍ଛା, ଶାବେଳୀ, ଗୁରୁଦା ପ୍ରଭୃତି ଅସ୍ତ୍ରଶସ୍ତ୍ର, ରଥ, ଉଷ୍ଟ୍ର, ହସ୍ତୀ ଓ ଘୋଟକ ପ୍ରଭୃତି ବାହନର ବ୍ୟବହାର ହେଉଥିବା କବିଙ୍କ ବର୍ଣ୍ଣନାରୁ ଜଣାଯାଏ ।

"କେ ଘେନ କୁନ୍ତ କାଢ଼ଇ ଅନ୍ତ ଯେ, କେହୁ କାହାର ମାଗିଲା ଦନ୍ତ ଯେ ।
ଖଣ୍ଡା ଝଲକ ରଖେ ପଲକ । ରହ ବୋଲି କେ ପଳାଏ ଏକ ।
କେ କରେ ଶୋକ କରି ଆଲୋକ ପିତାର ଅନ୍ତ ଯେ" ॥ ୨ ॥
କେ ଧନୁର୍ବାଣ ଘେନ ପ୍ରବୀଣ । କାହାର କରେ ଛୁରି କମାଣ ।
ଚଢ଼ାଇ ଗୁଣ ନଅନ୍ତ ପ୍ରାଣ କ୍ଷଣକେ ପୁଣ ଯେ ॥

କୃପାଣ ଫର ଧରି କେ ଅରି, ମାରନ୍ତେ ରହି ଛପିଲି ପରି ।
କେ ଧରାଧରି କେ ଅପସରି କରନ୍ତି ଝାଣ ଯେ ।
କାହା ପାଣିରେ ଅଛି ଗୁ ରୁଦା । କେହି ପିଟିଲି କାହାକୁ ଗଦା ଯେ
କାହା ଦେହରେ ଗଳ ଶାବେଳ । ଇସି ଭଷିଣ ପଡ଼ିଲି ଢଳ ।
କଣି ଢଳ କେ ନେଲି ଟୋଳ ସୁମରେ ଇଷ୍ଟ କାଳୀକ ସଦା ଯେ ॥ ୩ ॥

(ଲଳତଲୋଚନା-୧୪ଶ ଛାନ୍ଦ, 'ସମର ବର୍ଣ୍ଣନା')

ସଦାନନ୍ଦଙ୍କ ସମୟରେ ସମାଜରେ ମହୁରୀ, ମର୍ଦ୍ଦଳ, ଶଙ୍ଖ, ପଟହ, ଭେରୀ, ବୀଣା, କର୍ତ୍ତାଳ, ବଇଁଶୀ, କାହାଳୀ, ଢୁସି, ଢ଼ୋଲ, ତେଲଙ୍ଗି ବାଦ୍ୟ ପ୍ରଭୃତ ବାଦ୍ୟଯନ୍ତ୍ରର ପ୍ରଚଳନ ଥିଲି । ଏହିସବୁ ବାଦ୍ୟ ସାଧାରଣତଃ ଯୁଦ୍ଧ, ବିବାହ ଉତ୍ସବ, ରାଜ୍ୟାଭିଷେକ ଓ ଜନ୍ମୋତ୍ସବ ପ୍ରଭୃତରେ ବ୍ୟବହୃତ ହେଉଥିଲି ।

**ଶୁଭଶକୁନ—**

କବ ସ୍ୱ ଗ୍ରନ୍ଥାଦରେ ସମାଜରେ ପ୍ରଚଳତ ଶୁଭ ଶକୁନର ବର୍ଣ୍ଣନା କରିଅଛନ୍ତି । ଯଥା : 'ବାମେ ଶିବ ଶିବା ଗୌରୀ' ଅନୁକୂଳବେଳେ 'ଧୀବରୀ ମତ୍ସ୍ୟ ଉଚାରି' ଗୋପୀମାନଙ୍କର 'ଦଧି ଦଧିବାଣୀ' ଦେବାଳୟରେ ଶଙ୍ଖଧ୍ୱନି' ଦକ୍ଷିଣ ପାର୍ଶ୍ୱରେ 'ମୃଗ ଗାବ ଓ ବ୍ରାହ୍ମଣ' ବାମ ଦଗରେ ଶବ ଓ ଶିବା ଦର୍ଶନ, 'ଜଳପୂର୍ଣ୍ଣ କୁମ୍ଭ' 'ସମ୍ମୁଖ ଭାଗରେ ନକୁଳର ଗତ'—ଏ ସମସ୍ତ ଶୁଭ ଶକୁନ ବୋଲି ବର୍ଣ୍ଣିତ ।

"ଶୁଭବେଳ ଅନୁସରି । ଶୀଘ୍ରେ ଅନୁକୁଳ କରି !
ଏହି ସମୟେ ଧୀବରୀ । ମାଛ ଉଚାରି ଏ ॥ ୨ ॥
ଦଧି ଦଧି ବାଣୀ ପୁଣ । ଡାକଲେ ସେ ଗୋପୀଗଣ ।
ଦେବାଳୟେ ଶଙ୍ଖରବ । ଅତ୍ୟନ୍ତ ଶିବ ଏ ॥ ୩ ॥
ଗତ କରିବାରେ ଧୀରେ । ଦେଖେ ଦକ୍ଷିଣ ପାର୍ଶ୍ୱରେ ।
ଗାବ, ମୃଗ ସେ ବ୍ରାହ୍ମଣ । ଶୁଭ ଲକ୍ଷଣ ଏ ॥ ୪ ॥
ବାମେ ଶିବ ଶିବା କୁଳ । ଦେଖେ କୁମ୍ଭ ପୂର୍ଣ୍ଣ ଜଳ ।
ଆସେ ନକୁଳ ଆଗରେ । ଶୁଭ ବିଷୟରେ ଏ" ॥ ୫ ॥

(ଲଳତଲୋଚନା ୧୮ଶ ଛାନ୍ଦ)

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଜଣେ ତୀକ୍ଷ୍ଣ ବୁଦ୍ଧିଯୁକ୍ତ ଦୂରଦ୍ରଷ୍ଟା କବି ଓ ନିରପେକ୍ଷ ସମାଲୋଚକ ଥିବା ହେତୁ ସମାଜର ଦୋଷ ଗୁଣ ଗୁଡ଼ିକୁ ଦର୍ଶାଇବା ସଙ୍ଗେ ସଙ୍ଗେ ନିଜର ସ୍ୱାଧୀନ ମନୋବୃତ୍ତିର ପରିଚୟ ପ୍ରଦାନ କରିଅଛନ୍ତି ।

ସବୁ ସମୟରେ ସମାଜରେ ସାଧୁ ଓ ଖଳ ଦୁଇ ପ୍ରକୃତିର ବ୍ୟକ୍ତି ବାସକରିଥାଆନ୍ତି । କବି ତାଙ୍କ କାବ୍ୟରେ ସାଧୁଭାବାପନ୍ନ ବ୍ୟକ୍ତିମାନଙ୍କୁ ପ୍ରଶଂସା ଓ ଖଳ ବ୍ୟକ୍ତିମାନଙ୍କୁ ନିନ୍ଦା କରିଅଛନ୍ତି ।

"ଆହେ ଭଗତ ଚରିତକ ନୂତନ ଜୀମୂତ ।
ତବ ଆଜ୍ଞାରେ ପ୍ରବନ୍ଧ କରିବି ରଚିତ ॥ ୮
ସାଧୁଜନମାନେ ମୋର ହୁଅ ସୁପ୍ରସନ୍ନ ।
ଏହୁ ଉଦ ହୋଏ ତୁମ୍ଭେ କାର୍ମୁକ ସମାନ ॥ ୯
ଗୁଣ ସଙ୍ଗତରେ ଯେଣୁ କ୍ରମେ ନମ୍ର ହୁଅ ।
କାଣ୍ଡ ଆନନରେ ସେ ଦଣ୍ଡ ରିପୁକୁ ଦିଆଅ ॥ ୧୦
ତୁମ୍ଭେ ଯେବେ ଯେନ ଖଳ ଛୁରକୁ କି ଡର ।
ମୋ ରଚେ ତର୍କିତ ସେ ତ ମଶକ ପ୍ରକାର ॥ ୧୧
ନିଜ ବଳ କଳନା ନକରି ଅବିଗୃରେ ।
ଶ୍ରୁତି ପାରୁଶେ ଉଡନ୍ତି କୁତ୍ସିତ ଧ୍ୱନିରେ ॥ ୧୨
ନିବାରିଲେ ନିବାରଣ କେବେହେଁ ନଜାନ୍ତି ।
ଜୀବ ଯିବା ଯାଏ ସ୍ୱଭାବକୁ ନ ତେଜନ୍ତି ॥ ୧୩
ବିଶୁନ ନିନ୍ଦ ବସିଲେ କେଉଁ ପଉରୁଷ ।
ପିପିଲିକା ମରଣରେ କେ ଲଭିଛି ଯଶ" ॥ ୧୪
(ଲଳିତଲୋଚନା—୧ମ ଛାନ୍ଦ)

## ଅବୈଧ ପ୍ରଣୟ—

କବି ସଦାନନ୍ଦ 'ଲଳିତଲୋଚନା' କାବ୍ୟର ୩୬ଶ ଛାନ୍ଦରେ ନିଶି ଅନ୍ଧକାର ବର୍ଣ୍ଣନା ସହିତ ତତ୍କାଳୀନ ସମାଜରେ ନାରୀ ପୁରୁଷ ମଧ୍ୟରେ ପ୍ରଚଳିତ ଅସାମାଜିକ ଅବୈଧ ପ୍ରଣୟର ଜୀବନ୍ତ ଚିତ୍ରଟିଏ ପ୍ରଦାନ କରିଅଛନ୍ତି ।

କାହା ଦ୍ୱାରେ ପଥିକ ବଣିକ । କହେ କଣିମ ରହି ନାୟକ ।
ପଦକରେ ମଣ୍ଡିଲେ ଉତ୍ତମ । ଶୁଣି ପ୍ରବଣାବାଣୀ ଜନମ ॥ ୧୫

ସୁନାରୀକ ଜନ୍ମ ଥିବେ ଯାହିଁ । ଆମ୍ଭେ ତହିଁକ ଗ୍ରାହକ ନୋହୁ ।
ନାରୀକେଳ ବଡ ସେ ରସିକା । ପଛେ ସ୍ୱଚ୍ଛେ ହେଲ ପ୍ରାଣାଧିକା ॥ ୧୬
ନଷ୍ଟଦୁଷ୍ଟ ଆଦି ଏହ୍ନପର । ନିଜ ଲକ୍ଷଣେ ଶ୍ରେଷ୍ଠ ଆଚର ।
ଗ୍ରନ୍ଥ ବହୁଳ ଭୟେ ପ୍ରକାଶ । ନ କରିବାକୁ ନୋହେ ଏ ଦୋଷ ॥ ୧୭
କଲ ସେକାଳେ କେ ଅଭିସାର । କଟି ପିନ୍ଧି ଝୀନ ନୀଳାମ୍ବର ।
ରଙ୍ଗେ ଘେନଛି ଅଙ୍ଗେ କସ୍ତୁରୀ । ପାଦ ନଶୁଭଇ ଗତି କରି ॥ ୧୮
କଉଁ ନାରୀ ଧରି ପୁଂଷ ବେଶ । କରେ ଗମନ ହୋଇ ଆବେଶ ।
ତାର ପତିନାରୀ ରୂପ ମତେ । ହେଲେ ପ୍ରକାଶ ଏକ ସଙ୍କେତେ ॥ ୧୯

× × ×

ଆସି ବିଟପ ବିଟପୀ ପାଶୁ । କହେ ମିନେ ସହୃଦ ସକାଶୁଁ ।
ବୋଲେ ଶୁଣ ଅଭେଦ ମୋ କଥା । ହେଲ ନାଗରପଣ ମୋ ଯଥା ॥ ୨୧

× × ×

ମୁଁ ଯେ ନାଗରୀ ତାକୁ ବରିବି । ଅଙ୍ଗୀକାରେ ଗଲ ତାର ପୁରି ।

× × ×

ନପୁଂସକରୁ ଅଧିକ ଊଣା । ମୋତେ ମଣିଲ ଗଲ ସେ ଜଣା ॥ ୨୬
ଏହି ଘେନ ଅଜ୍ଞ ଯୁବା ନାରୀ । ବିଜ୍ଞ ପ୍ରୌଢ଼ାଙ୍କୁ ନୁହନ୍ତ ସରି ।
ବାସସ୍ଥାନ ଚଳଣ ପରୟେ । ଗୁଣ ନଥିଲେ କ କାର୍ଯ୍ୟ ହୋଏ ॥ ୨୭
(ଲଳିତଲୋଚନା—୩୬ଶ ଛାନ୍ଦ)

## ପ୍ରକୃତି ବର୍ଣ୍ଣନା—

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ପ୍ରକୃତି ମାନବୀୟ ଆବେଗ ଓ ଅନୁଭୂତିର ଏକ ପୃଷ୍ଠଭୂମି ରୂପେ ପ୍ରକାଶିତ ହୋଇଅଛି । କବିକୃତ କାବ୍ୟ-ମାନଙ୍କରେ ବର୍ଣ୍ଣିତ ପ୍ରକୃତି ଏହାର ଜ୍ୱଳନ୍ତ ଉଦାହରଣ । କବି ବନ ଉପବନ, ଦିବା ରାତ୍ରି, ସନ୍ଧ୍ୟା ସକାଳ ବିଭିନ୍ନ ଋତୁ ପ୍ରଭୃତିର ବର୍ଣ୍ଣନା ମଧ୍ୟରେ ପ୍ରକୃତିକୁ ସଙ୍ଗୀତମୟୀ, ଭାବମୟୀ ଓ ରୂପମୟୀ କରିପାରିଛନ୍ତି । "ଲଳିତଲୋଚନା" କାବ୍ୟରେ 'ବନବର୍ଣ୍ଣନା' କରିବାକୁ ଯାଇ କବି ଲେଖିଛନ୍ତି; 'ନପୁଣତିଳକ'ର ମୃଗୟାବନର ଶୋଭାକୁ ଦେଖି ତାହାକୁ 'କୃଷ୍ଣଲୀଳା' ସହିତ ତୁଳନା କରିଅଛନ୍ତି । ମଥୁରା, ନୀଳାଚଳ, କୈଳାସ ସହିତ ମଧ୍ୟ ତୁଳନାକରି ସ୍ଥାନୀୟ ମର୍ଯ୍ୟାଦା ବୃଦ୍ଧି କରିଛନ୍ତି । କଂସ ଥିବାରୁ ମଥୁରାପୁରୀ, ସୁଦର୍ଶନ ଥିବାରୁ କ୍ଷେତ୍ରବର ନୀଳାଚଳ ଓ ଅପର୍ଣ୍ଣା ରୁଦ୍ରଜଟା

କୁସୁମରେ ଶୋଭା ପାଉଥିବାରୁ କୈଳାସ ପରି ଜଣାଯାଉଛି । ଏହି ବନ ମଧ୍ୟରେ ଶୋଭା ପାଉଥିବା ଏକ ନଗରକୁ କବି ଏକ ସୁନ୍ଦରୀ ନାରୀ ସହ ତୁଳନା କରିଅଛନ୍ତି ।

ଦେଖିଲେ ଦିବ୍ୟକାନନ ଏକେ ଦୁର୍ଲ୍ଲଭ ।
ସମସ୍ତ ସୁମନେ ହୋଇଅଛି ସୁଲଭ ॥ ୩

ମଧୁମଙ୍ଗଳ ତହିଁରେ ହୋଇଛି ଯେଣୁ ।
କୃଷ୍ଣମୂର୍ତ୍ତି ହୋଇ ସଙ୍ଗେ ମିଳନ୍ତି ତେଣୁ ॥ ୪

ବେଣୁରେ ସହିତ ଦ୍ୱିଜ ପଦେ ଚର୍ଚ୍ଚିତ ।
କଦମ୍ବ ଗୁଚ୍ଛାରେ ଶୋଭ୍ୟ କି ରାଧାକାନ୍ତ ॥ ୫

## 'ମୋହନଲତା' କାବ୍ୟରେ ଉପବନ ବର୍ଣ୍ଣନା—

ଏହି କାବ୍ୟରେ ସଦାନନ୍ଦ ଉପବନକୁ ବନ୍ୟନାଗରୀ କନ୍ୟା ଓ ରାଜକୁମାରଙ୍କୁ ପୁରୁଷବର ଆଖ୍ୟା ଦେଇ ନିଜର ନୂତନ ଦୃଷ୍ଟିକୋଣର ପରିଚୟ ପ୍ରଦାନ କରିଅଛନ୍ତି ।

"ମମାଳ ବୋଲଇ ହରେ ପୁରୁଷବର । ଯେ ବନ୍ୟନାଗରୀ କନ୍ୟା ସଙ୍ଗେ ବିହର ॥
ଦେଖ ବନ୍ଧୂଲି ଅଧର ପାଉଛି ଶୋଭା । କୁନ୍ଦ କଳି ଦନ୍ତାବଳି ଅତି ଦୁର୍ଲ୍ଲଭା ॥
ଖଞ୍ଜନ ନୟନ ଅତି ଚଞ୍ଚଳ ଚୁହିଁ । କୋକିଳବାଣୀ ବଚନେ କରିଛି ସ୍ନେହ ॥
କେତକୀ କାନ୍ତିରେ ହୋଇଅଛି ବିଭାଜ । ତାଳଫଳ ସ୍ତନତାର ମାନସେ ହେଜ ॥
ତମାଳ ଚିକୁର ହୋଇଅଛି ରୁଚିର । ଶିରୀଷ କୋମଳାଙ୍ଗକୁ ଏ ମନୋହର ॥
ଶୁକ ନାସାରେ ସାଳ ମଞ୍ଜରୀ ବସଣୀ । ମଲ୍ଲୀକର୍ଣ୍ଣି ମଲ୍ଲୀକର୍ଣ୍ଣୀ ପରିସେ ମଣି ॥
ପ୍ରକାଣ୍ଡ ଜଘନ ଭୃଙ୍ଗ ଧ୍ୱନି ନୂପୁର । ସ୍ଥଳପଦ୍ମ ପାଦତ ଦିଶଇ ରୁଚିର ॥
ଦଳକୂଳ ଦୁକୂଳ ବହୁଳ ବର୍ଣ୍ଣରେ । ପଲ୍ଲବ ପଙ୍କ୍ତି ଉଡେ ପବନ ଭରେ ॥
ବଲ୍ଲରୀ ବାହୁକୁ ଟୋଳ ତାନକ ଭୁମ୍ବଙ୍କ । ଆଲିଙ୍ଗନ ବାରେ ହରେ କର ଏହାକୁ ॥
ଚୁମ୍ବେ ନ ରସିକକୁ ଯେ କପୋତ ଛଳେ । ହୁଙ୍କାର କରୁଛି ହେଜ ହ୍ରଦ କମଳେ ॥"

(ମୋହନଲତା—୧୧ଶ ଛନ୍ଦ)

ସରସୀ ବର୍ଣ୍ଣନା କରିବାକୁ ଯାଇ କବି ନାରୀ ସହିତ ସରସୀର ତୁଳନା କରିଅଛନ୍ତି ।

"କ୍ଷଣେ ତହିଁ ଶ୍ରମ ହରି      ସେଠାରୁ ପୁଣି ବାହାରି
ପ୍ରବେଶ ହୋଇଲେ ପଦ୍ମାକର ନିକଟେ ।

କେ ବୋଲଇରେ ଜୀବନ ବନ୍ଧୁ ଦେଖ ଏ ଜୀବନ
ନିର୍ମଳ ଫୁଟି ସୁମନ ବାସ ପ୍ରକଟେ
କେ ବୋଲେ ଏକ ପୁଷ୍ପବନ୍ତ ।
ମୀନ ମକରନ୍ଦରେ ହୋଇଛନ୍ତି ଯୁକ୍ତ ॥ ୧୭
କେ ବୋଲେ ଏ ଆମ୍ରପତ୍ର ଶଇବାଳ କେଶଧାଡ଼ି
ପଦ୍ମମୁଖ ମୀନଟି ଚଞ୍ଚଳ ନୟନ ।
କୁମୁଦ କଳିକ ଫୁଟି ହାସ ହୋଇଛୁ ପ୍ରକଟ
ମୃଣାଳ ଭୁଜ କୁଟୀଳ ସ୍ତନ ଶୋଭନ
ଶତପତ୍ର ପତ୍ର ଉଦର
ଭୃଙ୍ଗଧାଡ଼ି ରୋମାବଳୀ ଗତି ହଂସର ॥ ୧୮

(ଲଳିତଲୋଚନା—୭ମ ଛାନ୍ଦ)

କବି ନିଜର କାବ୍ୟମାନଙ୍କରେ ଏକାଧିକ ସ୍ଥାନରେ ସନ୍ଧ୍ୟାକାଳୀନ ପ୍ରକୃତିର ମନୋରମ ଦୃଶ୍ୟ ବର୍ଣ୍ଣନା କରିଅଛନ୍ତି । ସେଥିମଧ୍ୟରୁ ଦୁଇଗୋଟି ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଅଛୁ । 'ଯୁଗଳ ରସାମୃତ ଲହରୀ'ର ଦ୍ୱାଦଶ ଛାନ୍ଦ ଓ 'ଲଳିତଲୋଚନା' କାବ୍ୟର ୮ମ ଛାନ୍ଦରେ ଉକ୍ତ ଦୃଶ୍ୟ ବର୍ଣ୍ଣନା କରିଅଛନ୍ତି । ଯଥା—

**ସନ୍ଧ୍ୟା ବର୍ଣ୍ଣନା—**

"କେତେବେଳ ଅନ୍ତେ ଅସ୍ତଗିରି । ଆଦିତ୍ୟ ଆରକ୍ତ ବର୍ଣ୍ଣ ଧରି"
ଅର୍ଜୁନ କହେ ଅମାନାଗି ଆସିଛୁ ଏ । ସୁବର୍ଣ୍ଣ ଅର୍ଘ୍ୟଥାଳି ଧରି ହେ ବଂଶୀଧର
ତୁମ୍ଭେ ସପ୍ରେମେ ଏହାକୁ କୋଳ କର ହେ ।
ତମ ନେତ୍ର ପ୍ରୀତିଆ ଏ କରନ୍ତୁ ହେ ।
ଏ ଲୁଚିଲେ ଏକା ହେବ ଅନ୍ଧକାର ହେ ॥ ୯

କେ ବୋଲେ ଅମ୍ବର ତରୁଫଳ । ପାଚି ଆରକ୍ତ ଆଟେ ଧବଳ ।
ବାନର ଖାଇଲା ତହୁଁ ଉବୁଟିଲେ । ଧରଧର ପଡ଼ଇଟି ତଳ ସେ
ସର୍ବେ ହସି; ହସ୍ତପାତେ କେ ମୁଖ ବିସ୍ତାରେ ଆସି ସେ ॥
କେହୁ ହାତ ବଢ଼ାଏ ଡେଇଁ ଉଳୁସି ସେ
କେବା ଆଙ୍କୁଡ଼ି କାହିଁ ବୋଲଣ ଘୋଷି ସେ ॥ ୧୦

(ଯୁଗଳ ରସାମୃତ ଲହରୀ—୧୨ଶ ଛାନ୍ଦ)

"ଏମନ୍ତରେ ହେଲା ଦିବସ ଶେଷ । ହୋଇଲା ନିଶି ଆଦ୍ୟ ପରବେଶ ।
ଏହି ବିଚକିତ୍ସା ଇଚ୍ଛା ହୋଇଲା । ଗଙ୍ଗା ତରଙ୍ଗେ କାଳିନ୍ଦି ମିଶିଲା ।
ତାରାଗଣମାନ; ସୂର୍ଯ୍ୟ କମଠ ଅସ୍ତକ ମଜ୍ଜନ" ॥ ୩୫

(ଲଳିତ ଲୋଚନା - ୮ମ ଛାନ୍ଦ)

## ରାତ୍ରି ବର୍ଣ୍ଣନା—

"ହେଲା ଏମନ୍ତେ ଦିବସ ଶେଷ । ଆସି ନିଶି ହୋଇଲା ପ୍ରବେଶ ।
କିବା ଅଟେ ଏ ରଘୁତିଳକ । କଉଶିକ ଆନନ୍ଦ ଦାୟକ ॥ ୬
ମଧୁମାସ ପରିଏ ହୋଇଲା । ବିଟପୀଙ୍କି ପଲ୍ଲବାଇ ଦେଲା ।
ଚନ୍ଦ୍ରଭୁଲେ ବଇରତା ହେଣୁ । ରାହୁ ପରିପ୍ରେ କିଗୁର ଏଣୁ ॥ ୭
ନିଶାଚର ବାର ସୁଖୋଦ୍ଭବ । ଏଣୁ ପ୍ରତେ ହୋଏ କି ଗ୍ରଗିବ ।
ରତିବର କାଳ ଦେଲା ଯାହା । ପ୍ରତ ହୋଏ କି ପାବଂଶ ନାହା ॥ ୮
କଳାପଟରେ ଭବ ମଣ୍ଡନ । କଳା ପରିପ୍ରେ ଭବ ଶୋଭନ ।
ମନେ ପାଞ୍ଚ ଏକ ଅଦଭୁତ । ବିଧୁନ୍ତୁଦ ଗର୍ଭେ କି ଜଗତ ॥ ୯

× × ×

ଭବ ଭଗତରେ ବିଷ୍ଣୁପଦ । ଗୋଳ ବୋଳଲେ କି ମୃଗମଦ ।
ମାୟାରୂପ କି ଯମୁନା ଧରେ । ବ୍ୟାପି ଲୋକଙ୍କୁ ନାଶନ କରେ ॥ ୧୧
ଘନାଛନ୍ନ ପୁଷ୍ପବନ୍ତ କିଏ । ନେତ୍ର ଥିଲେ ନଥିଲା ପରିଏ ।
ହେଲା କଜ୍ଜ୍ୱଳ ଧ୍ୱଜେ ଆଦର । ନିକଟରେ ବ୍ୟକ୍ତି ଅଗୋଚର" ॥ ୧୨

(ଲଳିତଲୋଚନା - ୮ମ ଛାନ୍ଦ)

## ପ୍ରଭାତ ବର୍ଣ୍ଣନା--

କବି ପ୍ରଭାତର ବର୍ଣ୍ଣନା ବହୁ ସ୍ଥାନରେ କରିଅଛନ୍ତି । ଏହି ବର୍ଣ୍ଣନା ଗୁଡ଼ିକ ଅତ୍ୟନ୍ତ ଜୀବନ୍ତ ଓ ମନୋରମ ହୋଇଅଛି ।

"ଏକାଳେ ଅରୁଣ ଉଦେ ପ୍ରାଚୀରେ । ସିନ୍ଦୂର କି ଦିଗାଙ୍ଗନା ଭାଲରେ ॥
ହୋଇଲେ ଯା କୋକ ମିଥୁନ ସ୍ତନ । ଅମ୍ବର ଝୀନ ଅମ୍ବରେ ଶୋଭନ ।
ପକ୍ଷୀ କଳ କଳ; ନୂପୁର ଝୁଣ୍ଟିଆ ଆଦି ଚହଳ" ॥ ୪୫

(ଲଳିତଲୋଚନା - ୮ମ ଛାନ୍ଦ)

## ଋତୁ ବର୍ଣ୍ଣନା—

"ମଧ୍ୟଯୁଗୀୟ କବିମାନଙ୍କର କାବ୍ୟ ପ୍ରତିଭା ଯେପରି କେବଳ ଋତୁ ବର୍ଣ୍ଣନାରେ ହିଁ ବ୍ୟପ୍ତିତ ହୋଇଥିଲା । ସଂସ୍କୃତ ବ୍ୟତୀତ ଅନ୍ୟ କୌଣସି

ସାହିତ୍ୟରେ ଋତୁ ବର୍ଣ୍ଣନାର ଏ ପ୍ରାଚୁର୍ଯ୍ୟ ଥିବାପରି ମନେହୁଏ ନାହିଁ । ପ୍ରତ୍ୟେକ କାବ୍ୟକର୍ତ୍ତା କାବ୍ୟ ଗଠନର ଉପଯୁକ୍ତ ସ୍ଥଳରେ ଋତୁବର୍ଣ୍ଣନା କରିଥିଲେ ହେଁ ବର୍ଣ୍ଣନାର ବ୍ୟକ୍ତିଗତ ଚମତ୍କାରିତା ମଧ୍ୟରେ ବ୍ୟକ୍ତିଗତ ପ୍ରତିଭା ପରିସ୍ଫୁଟ ହୋଇପାରିଥିଲା ।''

କବି ସଦାନନ୍ଦ ତାଙ୍କ କାବ୍ୟମାନଙ୍କର ବିଭିନ୍ନ ସ୍ଥାନରେ ନାୟକ ନାୟିକାଙ୍କ କାର୍ଯ୍ୟକଳାପକୁ ସମ୍ମୁଖରେ ରଖି ବିଭିନ୍ନ ଋତୁବର୍ଣ୍ଣନା ଅତି ଚମତ୍କାର ଭାବରେ କରିଅଛନ୍ତି । ତନ୍ମଧ୍ୟରୁ 'ଲଳିତଲୋଚନା' କାବ୍ୟରେ ଋତୁବର୍ଣ୍ଣନା ଅତ୍ୟନ୍ତ ମନୋରମ ଓ ଉଚ୍ଚକୋଟୀର ହୋଇଅଛି ।

'ଲଳିତଲୋଚନା'ର ବିଭିନ୍ନ ଛାନ୍ଦରେ ନାୟକ ନାୟିକାଙ୍କ ଦାମ୍ପତ୍ୟ ଲୀଳାକୁ ବର୍ଣ୍ଣନା କରିବାକୁ ଯାଇ ହିମ, ଶିଶିର, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ ପ୍ରଭୃତି ଛ'ଋତୁର ବର୍ଣ୍ଣନା କରିଛନ୍ତି ।

## ହେମନ୍ତ ଋତୁ ବର୍ଣ୍ଣନା—

''ଏମନ୍ତେ ହେଲା ହିମଋତୁ ପ୍ରବେଶ କାଳ ବଶେ ।
ଶୀତେ କାତର ହେଲେ ମନୁଷ୍ୟ ଆଦି ସର୍ବଜୀବ ସେ ॥ ୧ ॥

ଉତ୍ତର ଦିଗୁ ପବନ ବହି ପୂରିଲା ଦିଗନ୍ତକୁ ।
ଘନ ଘୋଟିଲା ପରିଏ ହିମ ବ୍ୟାପିଲା ଅନନ୍ତକୁ ॥ ୨ ॥

କବି 'ମୋହନଲତା' କାବ୍ୟରେ ହିମଋତୁର ଚମତ୍କାର ବର୍ଣ୍ଣନା କରିଛନ୍ତି ।

''ଏମନ୍ତ ଋତୁ ପ୍ରବେଶ, ଶୀତରେ କାତର ହେଲେ ମନୁଷ୍ୟ ଯେ ।
ସର୍ବେ ଜୀବେ ଲଭିଲେ ସେ ତ୍ରାସ, ସୁଜନେ ହେ ॥ ୧ ॥
ଉତ୍ତର ଦିଗୁଁ ପବନ, ବହି ହିମ ବ୍ୟାପିଗଲା ଗଗନ ଯେ ।
ଯେସନ୍ତେ ଦୁର୍ଦ୍ଦିନ ନବୀନ ଘନ, ସୁଜନେ ହେ ॥ ୨ ॥
ରଜନୀ ବୃଦ୍ଧି ହେଲା, ବାସର ଅସର ହୋଇ ସରିଲା ଯେ
ବାଳକଙ୍କ ଆନନ୍ଦ ବଢ଼ିଲା, ସୁଜନେ ହେ ॥ ୩ ॥

## ଶିଶିର ଋତୁ ବର୍ଣ୍ଣନା—

''ଏମନ୍ତରେ ହେଲା ଶିଶିର ପ୍ରବେଶ ହେମନ୍ତ ଋତୁ ଶେଷରେ ।
ତୁଷାର ସମୂହ ଅପାର ଦିଶିଲେ ଧାନ୍ୟ ଛେଦନ୍ତି କେଦାରେ ॥ ୧ ॥

ଗହନ ସୁଷମା ଭୂଷ ଦକ୍ଷିଣବାତରେ ଦହନ ଭ୍ରାନ୍ତେ ଏକାଳ ।
ଦଳ ଗୁଡ଼ ଦ୍ରୁମ ରଣ ଭଙ୍ଗଭଙ୍ଗି ଭୁଳକରେ ପିନା ମୂଳ ॥ ୨ ॥
ନନ୍ଦ ସୁତ ସ୍ପଷ୍ଟେ ଗୋପୀହାସ ସମ କୁନ୍ଦ କୁସୁମ ବିକାଶ ।
ବାଳକ ଦନ୍ତୁଟି ବାଣୀ ଜାଣି ଫିଟିକଳ କଣ୍ଠୁ ଦେଶ ॥ ୩ ॥

(ଲଳିତଲୋଚନା-୪୨ଶ ଛାନ୍ଦ)

## ବସନ୍ତ ଋତୁ ବର୍ଣ୍ଣନା—

"ଅଇଲା ବସନ୍ତକାଳ । ଧଇଲା ଚୂତ ମୁକୁଳ
ହୋଇଲା ବକୁଳକୁଳ । ସୁପୁଷ୍ପେ ମେଳ, ଏକାଳେ ॥ ୧ ॥
ଫୁଟିଲରୁ ନାଗେଶ୍ୱର । ହଟିଲା କୁସୁମଶର ।
ରଟିଲା କୋକିଳ କର ମଧୁର ସ୍ୱର, ଏକାଳେ ॥ ୨ ॥
ବିକାଶ ହୋଇଲା ଜବା । ପୁଷ୍ପବତୀ କବା ଯୁବା ।
ପାଟଳୀ ପଟଳ କାମ ସ୍ତରଣ ଅବା, ଏକାଳେ ॥ ୩ ॥

(ଲଳିତଲୋଚନା-୪୩ଶ ଛାନ୍ଦ)

## ଗ୍ରୀଷ୍ମ ଋତୁ ବର୍ଣ୍ଣନା—

ଗ୍ରୀଷମ ଋତୁ ଆସି ହେଲା ପ୍ରବେଶ । ରତାନ୍ତନାସି ପ୍ରାଏ ହୋଏ ଆଭ୍ରସ ।
ବିରସ ହୋଇବାରୁ ମୁଖ କମଳ । ନୟନ ମୀନର ଯେ ଊଣା ଚଞ୍ଚଳରେ ॥୧॥
ପ୍ରହାବଳୀଜା ଚ୍ୟୁତ ହୋଇବା ଦେଖି । ଶୀତଳବାତେ ପୁଣ ଆଶାକୁ ରଖିରେ ।
ଅଚଳାତନୁ ହୋଇଅଛୁ ନିରସ । ଘର୍ମାଳଙ୍କୃତ ହେଲା ସର୍ବ ପ୍ରଦେଶ ଯେ ॥୨॥
ମଲ୍ଲୀ ହୋଇଛୁ ଷାତ କଞ୍ଚିତ ସ୍ଫୁଟେ । ଅଙ୍ଗସଙ୍ଗରୁ ଯାହାଆଦର ତୁଟେରେ ।
ଯାର୍ଦ୍ଧ ଅମ୍ବର ଗରୁଲାଗେ ଦେହକୁ । ଲୋଡ଼ା କରାଇଲାଯେ ତାଳବୃନ୍ତକୁ ହେ ॥୩॥
ବାସରେ ନିଦ୍ରାରଜନୀ ଉଜାଗ୍ରତ । ମରଠାନେ ଆରମ୍ଭ ହେଲା ନିରତ ଯେ ।
ଚୂଆ ଚନ୍ଦନ ଚର୍ଚ୍ଚିତକୁ ବିସ୍ତର । ଯ୍ନନ୍ଦମାରେ ବସିବା କଲା ପ୍ରସ୍ତର ଯେ ॥୪॥

(ଲଳିତଲୋଚନା-୪୪ଶ ଛାନ୍ଦ)

## ବର୍ଷାଋତୁ ବର୍ଣ୍ଣନା—

ହୋଇଲା ପ୍ରବେଶ ଦୁର୍ଦ୍ଦିନ ଦିନ । ଡାଇଲା ଜୀମୂତ ମିହାଳିଙ୍ଗନ ।
ପିଇଲା ଚାତକ ରସେ ଶୀକର । ଧୋଇଲା ଧୂଳି ବର୍ଷି ନୀର ଧାର ସେ
ଧୋଇଲା ଶର ଅନଙ୍ଗ ଯେ;
ମାଇଲା ବିଜୁଳି ଅନଳ ଅନଳେ ଧଇଲା, ଛୁଇଲା ଅଙ୍ଗ ଯେ ॥ ୧ ॥

ଘୋଟିଲା ଘନ ଆକାଶ ଦଶରେ । ରଟିଲେ ଭେକ ଭେକ ନାନା ସ୍ୱରେ ।
ଭେଟିଲା ପ୍ରବାସୀ ପ୍ରିୟା ପାଶରେ । ବଢ଼ିଲେ କଣ୍ଟ ବଞ୍ଚକ ଭ୍ରସରେ ସେ
ଛୁଟିଲା ନାହିଁ ସେ ନଦ ଯେ ।
କାଟିଲେ କାତ ହଟିଲେ ଦାସ ପ୍ରାନ୍ତେ ଖଟିଲେ ସାରି ବିବାଦ ଯେ ॥ ୨ ॥

ରଟିଲା ଡ଼ାହୁକ ପ୍ରବଳ ହୋଇ । ଛୁଟିଲା ନଦୀ ପୁରିଗଲା ବନ୍ଧ ।
ଫୁଟିଲା କି ଆଶେ କିଆ ସେକାଳେ । ଲେଟିଲା ଲତା ଝଂଜାବାତେ ତଳେ ।
କୋଟି ଲଖ କଲା ମାର ଯେ
ଫାଟିଲା ବିରହୀ ହୃଦ ନ ଦଶିଲେ ଘଟିଲା କାମୀ ବିଗୁର ଯେ ॥ ୩ ॥

(ଲଳିତଲୋଚନା-୪୫ଶ ଛାନ୍ଦ)

**ଶରତଋତୁ ବର୍ଣ୍ଣନା—**

ହୋଇଲା ଆସି ଶରଦ । ଗ୍ଲାନ ତେଜ ଶୁଭ୍ର ସେ ବସ୍ତ୍ରପ୍ରଦ; ଏକାଳେ ।
ଜନଙ୍କୁ ଦେଲା ପ୍ରମୋଦ ସେ, ଏକାଳେ ॥ ୧ ॥

ତୀବ୍ର ଚଣ୍ଡକର କର, ତାପ ପାଇଲେ ଯା ବାସରେ ନର, ଏକାଳେ
ଶାନ୍ତ କଲା ଶୀତକର ଯେ ॥ ୨ ॥

କୂପ ତଡ଼ାଗ କାସାର, ଗିରି ନଦୀ ନଦ ଆଦି ସୁନ୍ଦର, ଏକାଳେ ।
ନିର୍ମଳ ହୋଇଣ ନୀର ସେ ॥ ୩ ॥

(ଲଳିତଲୋଚନା-୪୭ଶ ଛାନ୍ଦ)

**ସଦାନନ୍ଦଙ୍କ କାବ୍ୟରେ ସଙ୍ଗୀତ ଶାସ୍ତ୍ର—**

କବି ନିଜର ଗ୍ରନ୍ଥମାନଙ୍କରେ ସାମାନ୍ୟ ଭାବରେ ଶାସ୍ତ୍ରାନୁମୋଦିତ ସଙ୍ଗୀତର ବର୍ଣ୍ଣନା ପ୍ରସଙ୍ଗ କ୍ରମେ କରିଥିଲେ ସୁଦ୍ଧା ସଙ୍ଗୀତ ସମ୍ବନ୍ଧରେ 'ସଙ୍ଗୀତ ସଦାନନ୍ଦ' ନାମକ ଏକ ସ୍ୱତନ୍ତ୍ର କାବ୍ୟ ରଚନା କରି ଏ ଦିଗରେ ନିଜର ସ୍ୱତନ୍ତ୍ର ବିଦ୍‌ବତ୍ତାର ପରିଚୟ ପ୍ରଦାନ କରିଛନ୍ତି ।

"ତାନାନା ତାନାରି ଆସ ରାଧିକା ଗୋ ।
ମୁଁ ଅଛି କଦମ୍ବ ମୂଳରେ ଏକା ଗୋ ॥ ଘୋଷା ॥

ସାରିଗମ ପଧାନିଶା ନିଧପମ ଗରିସା ।
ସାତସ୍ୱର ନାନାରାଗେ ରସକରେ ବରଷା ॥ ୧ ॥

ତାଧିକ ତାଧିକ ପ୍ରାଣ ଏ ରସେ ଯେ ନ ରସେ ।
ତାନ୍ଦ୍ରିକ ତାନ୍ଦ୍ରିକନ୍ଦରେ ଯା ଫୁସରେ ଅବଶେ ॥ ୨ ॥

ତାଧିନା ତାଧିନା ହୋଇନାହିଁ ଯେଉଁ ରମଣୀ ।
ତାଧିକ ତାଧିକ ଗୁଣ ପଶୁରେ ତାଙ୍କୁ ଗଣି ॥ ୩ ॥

ତାଖତରଖଟ ହରି ସ୍ମରଣ ବିନା ସେ ଏ ।
ଧୋ ତିରକିଟ ଚରଣ ଆସିବନେ ନିଷ୍ଟପ୍ତେ ॥ ୪ ॥

ତିରତର ତିରକି ବନ୍ଧୁ ପଥର ଏଥର ।
କର କର କର କରଦନା ଦୂର କାତର ॥ ୫ ॥

ଘନ ଘନ ଘନରସ ଘନ'ରସ ବରଷୁ ।
ସକଳ ସକଳ ଭବେ ସକଳ ହୋଇ ପ୍ରକାଶୁ" ॥ ୬ ॥

(ଯୁଗଳ ରସାମୃତ ଲହରୀ-୪୬ ଛାନ୍ଦ)

ଉପରୋକ୍ତ ଉଦାହରଣରୁ ମନେହୁଏ, କବି ନିଜର କାବ୍ୟମାନଙ୍କରେ ମୋହନ ମୁରଲୀ ବାଦନ ପ୍ରସଙ୍ଗରେ ସଙ୍ଗୀତ ଶାସ୍ତ୍ରର ମୌଳିକ ସ୍ୱରସୂତ୍ରର ସାମାନ୍ୟ ସୂଚନା ପ୍ରଦାନ କରିବାକୁ ସୁଯୋଗ ପାଇଥିବାରୁ ସଙ୍ଗୀତର ସୁବିସ୍ତୃତ ଆଲୋଚନା ପାଇଁ ସେ 'ସଙ୍ଗୀତ ସଦାନନ୍ଦ' ନାମକ ଏକ ସ୍ୱତନ୍ତ୍ର ସଙ୍ଗୀତ ଶାସ୍ତ୍ର ରଚନା କରିଥିଲେ । ଏହି ଗ୍ରନ୍ଥଟିରେ କବି ସଙ୍ଗୀତର ଉତ୍ପତ୍ତି, ସ୍ୱରୂପ, ଉଦ୍ଦେଶ୍ୟ ଓ ନମବକାଶ ସମ୍ବନ୍ଧ ରାଗ, ତାଳ, ଲୟ, ସ୍ୱର ଆଦିର ଶାସ୍ତ୍ରୀୟ ଚର୍ଚ୍ଚା କରିଅଛନ୍ତି । ସେଥିମଧ୍ୟରୁ କିୟଦଂଶ ଯଥା :—

ସେ ଶ୍ରୀ ଲିଙ୍ଗରାଜେଶ୍ୱରଙ୍କୁ ହୋଇ ପ୍ରଣିପତ୍ୟ ।
ମାଗୁଅଛୁ ଚୋଳାକର ବର୍ଣ୍ଣିବି ସଙ୍ଗୀତ ॥ ୧ ॥

ଗ୍ରନ୍ଥ ଥିଲେ ସର୍ବେ କେହି ବୁଝିବେ ସଂସ୍କୃତ ।
ଏଣୁ ପ୍ରାକୃତେ କହିବାକୁ ହୋଏ ଚିତ୍ତ ॥ ୨ ॥

ସଙ୍ଗୀତ ଅଟେ ଅଗମ୍ୟ ବାରିଧି ସମାନ ।
ସାଧୁଙ୍କ ଅବଲମ୍ବନେ ପାର ହେବା ମନ ॥ ୩ ॥

ସଙ୍ଗୀତ ଉତ୍ପତ୍ତି ଯେଉଁ ପ୍ରକାରେ ତା କହି ।
ଋକବେଦ ଭିତରୁ ଯେ ସାର ଆଣି ବହି ॥ ୪ ॥

କବିଙ୍କ ରଚିତ ଏହି 'ସଙ୍ଗୀତ ସଦାନନ୍ଦ' ଗ୍ରନ୍ଥଟି ଦଶଛାନ୍ଦ ବିଶିଷ୍ଟ ଏକ ଅସମ୍ପୂର୍ଣ୍ଣ ଗ୍ରନ୍ଥ ହୋଇଥିଲେ ସୁଦ୍ଧା ସଙ୍ଗୀତ ଶାସ୍ତ୍ରର ଚର୍ଚ୍ଚା ପାଇଁ ଏହା ଏକ ଉପାଦେୟ ଗ୍ରନ୍ଥ । କୃଷ୍ଣଙ୍କର ସ୍ତୁତି ଗାନକଲେ ଧର୍ମ, ଅର୍ଥ, କାମ, ତ୍ରିବର୍ଗ ଫଳ ମିଳେ ଓ ଏହା ନିଷ୍କାମରେ କଲେ ମୋକ୍ଷ ଫଳ ମିଳେ ।

ଦାନ, ଯଜ୍ଞ, ସ୍ତବରେ ତ୍ରିବର୍ଗ ଫଳ ମିଳେ । ମାତ୍ର ସଙ୍ଗୀତ ଜାଣିଥିବା ବ୍ୟକ୍ତି ଅକ୍ଲେଶରେ ଚତୁଃବର୍ଗ ଫଳ ପ୍ରାପ୍ତ ହୁଏ ।

ପ୍ରଥମେ ନାଦରୁ ସଙ୍ଗୀତର ସୃଷ୍ଟି । ଏହି ନାଦ ପୁଣି ତିନି ପ୍ରକାର ।

"ପ୍ରଥମେ ଜନ୍ମଇ ନାଦ ତହିଁରେ ସମସ୍ତ ॥"

ସଙ୍ଗୀତର ଲକ୍ଷଣ ସମ୍ବନ୍ଧରେ ବିଭିନ୍ନ ଆଚାର୍ଯ୍ୟମାନଙ୍କ ମତରେ ସଙ୍ଗୀତର ଲକ୍ଷଣ ଭିନ୍ନ ଭିନ୍ନ ହୋଇଥାଏ ବୋଲି କବି ଉଲ୍ଲେଖ କରିଛନ୍ତି । ଏହାପରେ କବି ସଙ୍ଗୀତର ସ୍ୱର ବିଷୟରେ ଆଲୋଚନା କରିଛନ୍ତି ।

ସ୍ୱର ପରେ 'ରାଗ' ପ୍ରସଙ୍ଗରେ କବି ବିଭିନ୍ନ ରାଗମାନଙ୍କର ସୁବିସ୍ତୃତ ଆଲୋଚନା ଗ୍ରନ୍ଥର ୨ୟ ଓ ୩ୟ ଛାନ୍ଦରେ କରି ୪ର୍ଥ ଛାନ୍ଦରେ ବିଭିନ୍ନ ରାଗ ସଙ୍ଗୀତର ଗାନ ପାଇଁ ବିଭିନ୍ନ ଦେଶରେ ବିଭିନ୍ନ ସମୟର ଆବଶ୍ୟକତା ଦର୍ଶାଇ ଅଛନ୍ତି ।

'ରାଗ' ପରେ କବି 'ତାଳ'ର ବର୍ଣ୍ଣନା ୫ମ ଛାନ୍ଦଠାରୁ ଆରମ୍ଭ କରିଅଛନ୍ତି । ଯଥା—

"ଶୁଣ ସୁଜନେ ମନ ଦେଇ । ରାଗ ଉତ୍ତାରୁ 'ତାଳ' କହି" ॥ ୧ ॥

× × ×

ତାଳ ପତନ କହିଲାଇଁ । ଆପଣେ ପକାଇବା ପାଇଁ ॥ ୧୭ ॥
ଗୀତ ଯେ ବିବିଧ ଅଟଇ । ଦୈବ୍ୟ ମାନୁଷ୍ୟ ଏହେ ଦୁଇ ॥ ୧୮ ॥
ଦୈବ୍ୟ ମାନୁଷ୍ୟ ମିଶ୍ରିତରେ । ପୁଣ ହୋଏ ଆନ ପ୍ରକାରେ ॥ ୧୯ ॥
ଦେବ ଗୀତ ସଂସ୍କୃତ ଜାଣି । ମାନୁଷ୍ୟ ଯେ ମନୁଷ୍ୟ ବାଣୀ ॥ ୨୦ ॥
ଏ ଦୁଇ ଭାଷା ମିଳାମିଳି । ଦୈବ୍ୟ ମାନୁଷ୍ୟ ହେବ ଭଲି ॥ ୨୧ ॥
ନାନାଦେଶୀ ମନୁଷ୍ୟ ଭାଷ । କେ ଶ୍ରେଷ୍ଠ କେ ଗଉଣ ଆଶ ॥ ୨୨ ॥
ତାଳ ଜଣାଇବାରେ କଚ୍ଛା । ପ୍ରକାଶ କରିବା ଯେ ବସି ॥ ୨୩ ॥
ସଙ୍ଗୀତ ସଦାନନ୍ଦ ଗୀତ । ସଦାନନ୍ଦ ଦାସର ଖ୍ୟାତ ॥ ୨୪ ॥
ଭଣଇ କବିସୂର୍ଯ୍ୟ ବ୍ରହ୍ମା । ମୋହର ପ୍ରଭୁ ବ୍ରଜରମା ॥ ୨୫ ॥

(ସଙ୍ଗୀତ ସଦାନନ୍ଦ-୫ମ ଛାନ୍ଦ)

କବି ବହୁବିଧ ତାଳ ବର୍ଣ୍ଣନା ପ୍ରସଙ୍ଗରେ ମଧ୍ୟ ଉଲ୍ଲେଖ କରି ଲେଖିଛନ୍ତି—

"ପଞ୍ଚଭୂତ ଆତ୍ମା ସେ ଯେଉଁ ପର । ପଞ୍ଚତାଳ ସେହ୍ନମତ ବସୁର ॥ ୧ ॥
ସେହୁ ଉଲଟ ପାଲଟ ହୋଇଣ । ନବତାଳ ହୁଅନ୍ତି ଏ ପ୍ରମାଣ ॥ ୨ ॥
ମଣ୍ଡ ଧ୍ରୁବ ଭେଦରେ ଏକୋଦଶ । ତାଳ କହିଲଇ ଯେ ନିସ୍କରସ ॥ ୩ ॥
ଏତେ ତାଳ ମଧ୍ୟରେ ପ୍ରବର୍ତ୍ତଇ । ଚଞ୍ଚତ ପୁଟାଦ ସ୍ୱର୍ଗୀୟ ଅଟଇ ॥ ୪ ॥
ଆର ଛାନ୍ଦେ ତା ପ୍ରକାଶିବା ଯେତେ । ଏହୁ ସଙ୍ଗୀତ ସଦାନନ୍ଦ ଗ୍ରନ୍ଥେ" ॥୫॥
(ସଙ୍ଗୀତ ସଦାନନ୍ଦ-୭ଷ୍ଟ ଛାନ୍ଦ)

କବି "ସଙ୍ଗୀତ ସଦାନନ୍ଦ' ଗ୍ରନ୍ଥର ନବମ ଛାନ୍ଦରେ ଆଳାପ, ପାଟ, ବାଦ୍ୟଯନ୍ତ୍ର ସମ୍ବନ୍ଧରେ ଆଲୋକପାତ କରିଛନ୍ତି ।

**ବଂଶୀର ନିର୍ମାଣ ଓ ପ୍ରୟୋଗ ବର୍ଣ୍ଣନା—**

ବଂଶୀ ବଙ୍ଗୁଳି ହେବ ସରଳ ସବ ଦୋଷ ବିବର୍ଜିତ ।
କୈତବ ଯେବ୍ୟ ଖଦିର ଅବା ରକ୍ତ ଚନ୍ଦନ ଜନିତ ॥ ୪୮ ॥
× × × ସୁବର୍ଣ୍ଣରେ ଦନ୍ତୀ ଦନ୍ତମୟେ ଅବା ।
କନିଷ୍ଠାଙ୍ଗୁଳି ସମାନ କରି ଗର୍ଭରନ୍ଧ୍ରକୁ ଶୋଧିବା ॥ ୪୯ ॥
ଶିଳ୍ପୀ ବିଦ୍ୟାରେ ପ୍ରବୀଣ ନରେ ବଂଶକାଏ ମନୋହର ।
ଦୁଇ ଆଙ୍ଗୁଳି ଛାଡ଼ି ତା ଶିର ଫୁଙ୍କିବାର ରନ୍ଧ୍ରକର ॥ ୫୦ ॥
ପରେ ଆଙ୍ଗୁଳି ସମାନ ଭଳି ଫୁଙ୍କିବା ରନ୍ଧ୍ର କରିବ ।
ପାଞ୍ଚ ଆଙ୍ଗୁଳି ଛାଡ଼ି କେବଳ ତାର ରନ୍ଧ୍ର ବିଗୁରିବ ॥ ୫୧ ॥
ସେ ରନ୍ଧ୍ର ପାଶେ କ୍ରମେ କ୍ରମେ ଯେ ସପ୍ତରନ୍ଧ୍ର କରିବଇଁ ।
ବଦରୀ ବୀଜ ସମାନ ହେଜ ସାନ ବଡ଼ ହେବ ନାହିଁ ॥ ୫୨ ॥

ଏହାଛଡ଼ା କବି ଏହି ଛାନ୍ଦରେ କରତାଳ, ଘଣ୍ଟ, ଝାଞ୍ଜ, ମଞ୍ଜୁରି ପ୍ରଭୃତି ବାଦ୍ୟଯନ୍ତ୍ରାଦିରେ ବର୍ଣ୍ଣନା କରିଅଛନ୍ତି ।

ଗ୍ରନ୍ଥର ଦଶମ ଛାନ୍ଦରେ 'ନାଟ୍ୟଶାସ୍ତ୍ର'ର ବର୍ଣ୍ଣନା ପ୍ରସଙ୍ଗରେ କବି ନାଟକର କ୍ରମବିକାଶ, ଅଭିନୟ, ରସଭାବ, ଗୀତ ତାଳ, ଲୟ, ବିଳାସ ଅଙ୍ଗସଙ୍ଗ, ନାୟକ ନାୟିକାଙ୍କ ଭଙ୍ଗୀ, ଶୃଙ୍ଗାର ଚେଷ୍ଟା, ଅଙ୍ଗ ପ୍ରସାଧନ ପ୍ରଭୃତିର ବର୍ଣ୍ଣନା କରିଅଛନ୍ତି । ଅଙ୍ଗ ପ୍ରସାଧନ ପ୍ରସଙ୍ଗରେ କବି ଲେଖିଛନ୍ତି;

"ଯକ୍ଷ କିନ୍ନର ନାଗ ନରଙ୍କର । ସ୍ୱଭାବ ନେବା ବିକୃତକାର ।
କରିବ କାଷ୍ଠମୁଖ ଚର୍ମାଦିରେ । ଏମାନଙ୍କୁ ଲେପି ଯଥା ବିଧିରେ ସେ
ଦେଶ ଜାତି ବିଧାନରେ ଯେ; କରିବ ରଚନ ନର୍ତ୍ତକମାନଙ୍କ ନୃତ୍ୟ
ପ୍ରକୃତ ସ୍ଥିତ କରି ଯେ ॥ ୧୦ ॥

## ଜ୍ୟୋତିଷ ଶାସ୍ତ୍ର—

କବି ସ୍ୱରଚିତ କାବ୍ୟମାନଙ୍କରେ ପ୍ରସଙ୍ଗ କ୍ରମେ ଜ୍ୟୋତିଷ ଶାସ୍ତ୍ରର ବର୍ଣ୍ଣନା କରିଛନ୍ତି । ବିଶେଷତଃ ବିବାହ ପ୍ରସଙ୍ଗରେ କବି ଏକାଧିକ ସ୍ଥାନରେ ଏହି ବିଷୟ ଉଲ୍ଲେଖ କରିଅଛନ୍ତି । ଯୁଗଳ ରସାମୃତ ଲହରୀ ୩୯ଶ ଛାନ୍ଦ, ମୋହନ ଲତା ୩୦ଶ ଛାନ୍ଦ, ୩୫ଶ ଓ ୩୬ଶ ଛାନ୍ଦ, ଲଳିତଲୋଚନା ୩୫ଶ ଛାନ୍ଦ, ଯୁଗଳ ରସାମୃତ ଲହରୀ ୩୩ଶ ଛାନ୍ଦରେ ଏହାର ଉଲ୍ଲେଖ ଦେଖାଯାଏ ।

## ଗୋ ଶାସ୍ତ୍ର—

କବି 'ଗୋ ଶାସ୍ତ୍ର' ବିଷୟରେ ପ୍ରସଙ୍ଗ କ୍ରମେ ନିଜ କାବ୍ୟରେ ଉଲ୍ଲେଖ କରିଅଛନ୍ତି । ଏଥିରୁ ଜଣାଯାଏ କବିଙ୍କ ସମୟରେ ଗୋ ଶାସ୍ତ୍ରର ପ୍ରଚଳନ ଥିଲା ଓ ଗୋପାଳନ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କେହି କେହି ଉକ୍ତ ଶାସ୍ତ୍ରରେ ନିପୁଣ ଥିଲେ । 'ଯୁଗଳ ରସାମୃତ ଲହରୀ' କାବ୍ୟରେ ଶ୍ରୀକୃଷ୍ଣଙ୍କର ଗୋବର୍ଦ୍ଧନ ମଲ୍ଲଠାରୁ 'ଗୋ ଶାସ୍ତ୍ର' ଶିକ୍ଷା କରିବା ଏହାର ଏକ ଜ୍ୱଳନ୍ତ ପ୍ରମାଣ । ଯଥା—

ସେ ଭଗବତୀ, ଭାଷିଲି ଇତି ଗୋବର୍ଦ୍ଧନ ମଲ୍ଲ ଗୋପ ।
ଗୋ ଶାସ୍ତ୍ର ଜାଣେ ସେ ଭାଇ ତେଣେ ତାହାଠାକୁ ଯାଅ ବାପ ।। ୮ ।।
ଚାଲ ତୋ ସଙ୍ଗେ ଯିବି ମୁଁ ରଙ୍ଗେ ବୁଝାଇ କହିବି ତାକୁ ।
ଅକଇତବ ସର୍ବ କହିବ ସେ ବିଦ୍ୟା ଦେବ ତୁମ୍ଭଙ୍କୁ ।। ୯ ।।

## ଅଶ୍ୱଶାସ୍ତ୍ର—

କବି ପ୍ରସଙ୍ଗ କ୍ରମେ କାବ୍ୟରେ ଅଶ୍ୱଶାସ୍ତ୍ରର ବର୍ଣ୍ଣନା କରିଅଛନ୍ତି । ବିଭିନ୍ନ ଦେଶରେ ଥିବା ବିଭିନ୍ନ ଜାତିର ଅଶ୍ୱମାନଙ୍କ ବିଷୟ ଉଲ୍ଲେଖ କରି ବହୁଦର୍ଶିତାର ପରିଚୟ ପ୍ରଦାନ କରିଛନ୍ତି ।

ଜାତି ଲକ୍ଷଣ ଦୋଷହୀନ ସମସ୍ତେ ନାନା ଦେଶ ତୁରଙ୍ଗମ ।
କାମ୍ବୋଜ ବାହ୍ଲିକ ଗାନ୍ଧାର ଗୃଧ୍ମେୟ ଚୈତିଳ ସିନ୍ଧୁଦୋତ୍ତମ ସେ କେତେ
ବାନାଉଜ କୁଳୀନ ଏମନ୍ତେ ସେ କେତେ ।
ଆରଟ୍ଟଜ ଆର୍ଜୁନେ ଏ ଯେତେ ସେ କେତେ ।। ୫ ।।

## ବୈଦ୍ୟଶାସ୍ତ୍ର ଓ ଗୁଣିଗାରେଡ଼ି—

କବି ସଦାନନ୍ଦଙ୍କ କାବ୍ୟରେ ବୈଦ୍ୟଶାସ୍ତ୍ରର ବର୍ଣ୍ଣନା ପ୍ରସଙ୍ଗ କ୍ରମେ ହୋଇଥିବା ଦେଖାଯାଏ । ସେ ସମୟର ବୈଦ୍ୟମାନେ ବୈଦ୍ୟଶାସ୍ତ୍ର ସହିତ ଗୁଣିଗାରେଡ଼ି ମଧ୍ୟ ଜାଣିଥିବା ବିଷୟ କବି ଉଲ୍ଲେଖ କରିଅଛନ୍ତି ।

"ନନ୍ଦ ଜ୍ଞାନ ନାହିଁ କିଛି ନ କହଇ ଝରଝର ନେତ୍ରୁଁ ଅଶ୍ରୁ ବହି ।
ତା ଭଜନମାନ ହସ୍ତୁଁ ପଡ଼ି ତଳ ରଖ ନାରାୟଣ ଉଚ୍ଚେ କହି
ଉପନନ୍ଦ ଆଦି, ବୈଦ୍ୟ ଗୁଣିଆଙ୍କୁ ସେ ସମ୍ବାଦ
ଶୁଣି ଗହି ଗହି ବ୍ରଜରାଜ ଗୃହ ରୋଦନ ନାଦ ଆକାଶ ଭେଦି" ॥ ୯ ॥

(ପ୍ରେମତରଙ୍ଗିଣୀ-୧୧ଶ ଛାନ୍ଦ)

## ମନସ୍ତତ୍ତ୍ୱ—

କବି ସଦାନନ୍ଦ ଜଣେ ବିଶିଷ୍ଟ ମନସ୍ତାତ୍ତ୍ୱିକ । ନାୟକ ମନରେ ନାୟିକା ସହିତ ପ୍ରେମ ଲୀଳା କରିବାର କଳ୍ପନା ଚିତ୍ରରୁ କବିଙ୍କ ବିଜ୍ଞତାପୂର୍ଣ୍ଣ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ପରିଚୟ ଦେଉଅଛି । ବିରହ ମିଳନାଦି ବର୍ଣ୍ଣନାରେ କବି ଯେଉଁ ଉଚ୍ଚକୋଟୀର ସୂକ୍ଷ୍ମ ମାନସିକ ବିଶ୍ଳେଷଣର ପରିଚୟ ଦେଇଛନ୍ତି, ତାହା କବି ପକ୍ଷେ ଅତି ସମ୍ମାନଜନକ । ଉଦାହରଣ ସ୍ୱରୂପ—

ଯେତେବେଳେ ଆଖିବୁଜି ହୋଇବି ବସିବି ଚରଣଙ୍କୁ ସେ ଗୁହିଁବି ମୁହିଁ ।
ସେ ଯେ ଅତ୍ୟନ୍ତ ଚତୁରୀ ହୋଇଣ ଆତୁରୀ କରିବି ହେବ ଏ ରାତି ପହିଁ ॥ ୭ ॥

'ମୋହନଲତା' କାବ୍ୟରେ ନାୟକର ସୁରତି କଳ୍ପନା (୨୭ଶ ଛାନ୍ଦ) ଓ ନାୟକର କେଳିପୁରକୁ ପ୍ରଥମ ଗମନ ସମୟେ ତା'ର ମାନସିକ ଅବସ୍ଥାଦି ବର୍ଣ୍ଣନା କବି ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି ।

ଯୁଗଳ ଶେଯକୁ ନିଜ ଯୁଗଳ ଭାବରେ ।
ଏ ମୋ ଭାଗ୍ୟ ଶଯ୍ୟଖଳା ବୋଲି ନମସ୍କାରେ ଯେ ॥ ୯ ॥

କେତେବେଳେ ବସଇ କେତେବେଳେ ଉଠଇ ।
ଆବେଶେ ଆପଣେ ଆପଣାକୁ ଆଶ୍ଳେଷଇ ॥ ୧୦ ॥

ପୁରି ପିଡୁଲାକୁ ଭ୍ରମେ କରେ ଆଲିଙ୍ଗନ ।
ପୁଣି କପାଟ ପାଖେ ରହି ପାତେ କର୍ଣ୍ଣ ଯେ ॥ ୧୧ ॥

× × ×

ପୁଣି ହସି ଆସନ ଉପରେ ଯାଇ ବସି ।
ବସ୍ଥରଇ ମନୋରଥ ପୂର୍ଣ୍ଣ ଆଜ ହସି ଯେ" ॥ ୧୩ ॥

(ମୋହନଲତା-୩୮ଶ ଛାନ୍ଦ)

## କବିଙ୍କ ଭୂଗୋଳ ଜ୍ଞାନ—

କବିଙ୍କ ବିଭିନ୍ନ କାବ୍ୟ ଆଲୋଚନା କଲେ ଜଣାଯାଏ ଯେ, କବିଙ୍କର ଯଥେଷ୍ଟ ଭୌଗୋଳିକ ଜ୍ଞାନ ଥିଲା । କାବ୍ୟମାନଙ୍କରେ ନାୟିକାର ସ୍ୱୟମ୍ବର, ଘାଟ ଓ ଜଙ୍ଗଲର ଦେଶ ପର୍ଯ୍ୟଟନ, ନଗରରେ ଥିବା ବିଭିନ୍ନ ଧନଦ୍ରବ୍ୟ, ଯାନବାହନ ଆଦିର ପ୍ରସଙ୍ଗ କ୍ରମେ ତତ୍କାଳୀନ ଭାରତର ବିଭିନ୍ନ ପ୍ରଦେଶଗୁଡ଼ିକର ବିବରଣୀ ଇତଃସ୍ତତଃ ଭାବରେ ପ୍ରଦାନ କରିଅଛନ୍ତି ।

## ନୀତି ଓ ହିତୋପଦେଶ—.

କବି ସଦାନନ୍ଦଙ୍କ କାବ୍ୟ 'ନଷ୍ଟାଗ୍ନିକମଣି' ଓ 'ଲଳିତଲୋଚନା'ରେ ପ୍ରସଙ୍ଗକ୍ରମେ ନୀତିବାଣୀ ଓ ହିତୋପଦେଶର ଅବତାରଣା କରାଯାଇଛି । କିନ୍ତୁ ଗୁଣର ଆଦର ଗ୍ରାହକ ଯୋଗୁଁ ହୁଏ । ଗୁଣୀ ଓ ଗ୍ରାହକ ଉଭୟେ ବିଦ୍ୟମାନ ନ ରହିଲେ ଗୁଣର ଆଦର ଓ ମର୍ଯ୍ୟାଦା ରହେ ନାହିଁ । କବି ସୁନ୍ଦର ଭାବରେ ଉଦାହରଣ ସହ ଏହାକୁ ବୁଝାଇଛନ୍ତି । ଉତ୍ତମ ଜନଙ୍କ ଆଗରେ ଗୁଣ ପ୍ରକାଶ କରିବା ଉଚିତ । ମୂର୍ଖଙ୍କ ଆଗରେ ଗୁଣ ପ୍ରକାଶ କଲେ ଉପହାସ କେବଳ ସାର ।

## ଚିତ୍ରକଳା ଓ ମନୋରମ ଚିତ୍ର—

କବି ସଦାନନ୍ଦ ସ୍ୱରଚିତ ଗ୍ରନ୍ଥମାନଙ୍କରେ ଏକାଧିକ ସ୍ଥାନରେ ତତ୍କାଳୀନ ଚିତ୍ରକଳା ସମ୍ବନ୍ଧରେ ବର୍ଣ୍ଣନା କରିଅଛନ୍ତି । ଏହା ବ୍ୟତୀତ କବି ନିଜେ ମଧ୍ୟ ଜଣେ ସୁଦକ୍ଷ ଚିତ୍ରକର । ତାଙ୍କର ବର୍ଣ୍ଣନା ଗୁରୁତ୍ୱ ଅପରିସୀମ । ମୃଗୟା, ଦାମ୍ପତ୍ୟଜୀବନ, ଯୁଦ୍ଧ, ଶିକାର, ପ୍ରକୃତି ଭ୍ରମଣ, ଶ୍ରୀରାଧାକୃଷ୍ଣ ଲୀଳାରେ ମିଳନ ବିରହ ପ୍ରଭୃତିର ମନୋରମ ବର୍ଣ୍ଣନା ଗୋଟିଏ ଗୋଟିଏ ଚିତ୍ରପରି ବୋଧହୁଏ । ଭାବ ଅନୁରୂପ ଭାଷା ବ୍ୟବହାର କରି କବି ବର୍ଣ୍ଣନା-ଗୁଡ଼ିକୁ ଜୀବନ୍ତ କରି ଚିତ୍ରରେ ପରିଣତ କରିଅଛନ୍ତି । ନିମ୍ନରେ ପ୍ରଦତ୍ତ ଅଳ୍ପ କେତେଗୋଟି ଉଦାହରଣରୁ ସେ ସମୟର ଚିତ୍ରକଳା ଓ କବିତ୍ୱ ଶକ୍ତିର ଯଥେଷ୍ଟ ପରିଚୟ ମିଳେ ।

ନୃପନନ୍ଦନା ନିରେଖି ନିରେଖି ପଟ ସୌନ୍ଦର୍ଯ୍ୟାମୃତେ ନେତ୍ରସୁଖୀ ।

× × ×

ସତ ଶୁକର ମିଛ ବୋଲ କଲା । ମିଥ୍ୟା ଯେବେ କେଉଁ ଗୋଚର ହୋଇଲା ॥
ସତ ଯେବେ କମ୍ପା କଥା ନକଲେ । ଏଥି ଲାଗି ହେଲା ଅତି ସନ୍ଦେହେ ॥
ଚନ୍ଦ୍ରହାସ ପ୍ରକାଶେ ଯେବେ ଦଶେ । କି କେ ଚନ୍ଦ୍ରା ତମକୁ ଏ ନ ନାଶେ ॥
ଚନ୍ଦ୍ରହାସ ଅର୍ଥ ଆନ ବିଧିରେ । ଜଣାଗଲା ଧରେ ନାଶ ବଧରେ ॥
ଯେଉଁ ଦିଗେ ଚାହୁଁଛୁ ଆଉ ଚାହିଁ । ଯେଣୁ ଚାହିଁଲେ ଚାହିଁଲା ପରାଇ ॥ ୮୦ ॥

ଚାହୁଁ ନଚଳେ କାହିଁକି ପିଛଡ଼ା । ଏ ସଂଶୟ ତ କଲା ଘରବୁଡ଼ା ॥
ପାଦ ଚଳିଲା ପରିଏ ଦିଶୁଛୁ । ଚଳେ ଯେବେ ଫେରୁ ତ ନ ଆସୁଛୁ ॥
ଏତ ପଟ ନୋହେ ଅଟେ କପଟ । କାମ ଜାଣଇ କେତେ ନଟକୂଟ ॥ ୮୫ ।

'ମୋହନଲତା' କାବ୍ୟରେ ନାୟକ 'ବିଶ୍ୱନନ୍ଦନ' ନାୟିକା 'ମୋହନଲତା'ର ଚିତ୍ରପଟ ବିଲୋକନ କରି ତନ୍ମୟ ହେବା ସଙ୍ଗେ ସଙ୍ଗେ ଚିତ୍ରପଟର ପ୍ରଶଂସା କରିଅଛନ୍ତି । ସେହିପରି କବି 'ଲଳିତଲୋଚନା' କାବ୍ୟରେ ଅନୁରୂପ ବର୍ଣ୍ଣନା ଦ୍ୱାରା ନିଜର କଳା ପ୍ରତିଭାର ପରିଚୟ ଦେଇଅଛନ୍ତି ।

କବି ସଦାନନ୍ଦଙ୍କ ସମୟରେ ଚିତ୍ରକଳାର ବହୁତ ଆଦର ଥିଲା । ଚିତ୍ରକାରମାନେ ବିଭିନ୍ନ ପ୍ରକାର ଚିତ୍ରକଳା ପ୍ରଦର୍ଶନ କରି ବହୁ ଧନରତ୍ନ ଲୋକମାନଙ୍କଠାରୁ ଉପହାର ପାଉଥିଲେ । ରାଜ ଦରବାରରେ ଏହି ଚିତ୍ରକରମାନେ ସମ୍ମାନିତ ହେଉଥିଲେ । ରାଜକନ୍ୟା ଓ ରାଜପୁତ୍ରର ସ୍ୱୟମ୍ବରରେ ମଧ୍ୟ ପଟମାଧ୍ୟମରେ ଏହି ଚିତ୍ରକରମାନେ ସାହାଯ୍ୟ କରୁଥିଲେ ।

ଏହା ବ୍ୟତୀତ ବିଭିନ୍ନ ମନୋରମ ଚିତ୍ରରେ ମଧ୍ୟ କବି ସଦାନନ୍ଦଙ୍କ ବିଭିନ୍ନ କାବ୍ୟ ପରିପୂର୍ଣ୍ଣ ହୋଇଛି । ଉଦାହରଣ ସ୍ୱରୂପ 'ଲଳିତଲୋଚନା' କାବ୍ୟରେ ସ୍ୱୟମ୍ବରରେ ଯୋଗଦେବା ନିମନ୍ତେ ନାୟକ ପଟୁଆର କରି ରାଜଦାଣ୍ଡରେ ଯିବା ସମୟେ ନାୟିକା ଅଟ୍ଟାଳିକା ଉପରୁ ନାୟକଙ୍କୁ ଦେଖି ଚାରିଚକ୍ଷୁର ମିଳନ ହେବା ଚିତ୍ରଟି ଅତ୍ୟନ୍ତ ମନୋରମ ହୋଇଅଛି ।

ଶୁଣ ରସିକେ ଏଥୁ ଅନନ୍ତରେ । ନୃପ ନନ୍ଦନା ଅଟ୍ଟାଳି ଉପରେ ।
ସମସ୍ତ ସଙ୍ଗିନୀ ସଙ୍ଗରେ ରଙ୍ଗରେ । ବିହାର କରେ ତରଳ ମନରେ ।
ବାତାୟନରେ ନୟନ ନିହାରେ । କୁମର ରୂପ ଦେଖିବାରେ ॥ ୧ ॥

## କବିଙ୍କ କାବ୍ୟରେ ଭାଷା, ରାଗରାଗିଣୀ ଓ ଅଳଂକାର—

କବି ସଦାନନ୍ଦ ସ୍ୱରଚିତ ଗ୍ରନ୍ଥମାନଙ୍କରେ ସରଳ ଓ କ୍ଳିଷ୍ଟ ଉଭୟ ପ୍ରକାର ଭାଷା ବ୍ୟବହାର କରିଅଛନ୍ତି । ସରଳ ଭାଷାର ଶୋଭନ ପ୍ରୟୋଗ ଦ୍ୱାରା କବିଙ୍କ କାବ୍ୟ ଯେଉଁଭଳି ମଧୁର ହୋଇଅଛି, କ୍ଳିଷ୍ଟ ସଂସ୍କୃତ ବହୁଳ ଶବ୍ଦ ପ୍ରୟୋଗ ଦ୍ୱାରା କବିଙ୍କ କାବ୍ୟ ସେଭଳି ପାଣ୍ଡିତ୍ୟପୂର୍ଣ୍ଣ ହୋଇପାରିଛି । କବି କ୍ଳିଷ୍ଟ ଭାଷା ପ୍ରୟୋଗ କରି ପାଠକମାନଙ୍କ ରସାସ୍ୱାଦନ ପକ୍ଷରେ ବ୍ୟାଘାତ ସୃଷ୍ଟି କରିଥିଲେ ସୁଦ୍ଧା ପୂର୍ବାଚାର୍ଯ୍ୟମାନଙ୍କ ପରମ୍ପରା ରକ୍ଷାକରି ଦିବ୍ୟ ଅଦିବ୍ୟ ଭାଷାରେ କାବ୍ୟ ସୃଷ୍ଟି କରିଥିବା ମନେହୁଏ ।

ଅବଶ୍ୟ କବି କାବ୍ୟ ଆରମ୍ଭରେ ଭାଷାର ଯେଉଁ ଶୈଳୀ ରଖିଛନ୍ତି, କାବ୍ୟ ଶେଷ ପର୍ଯ୍ୟନ୍ତ ଭାଷାର ସେହି ଶୈଳୀ ଅକ୍ଷୁର୍ଣ୍ଣ ରଖିପାରି ନାହାଁନ୍ତି । ପ୍ରତିଟି କାବ୍ୟରେ କେତେକ ଛାନ୍ଦ ଅତି ସରଳ ଲୋକବୋଧ ଭାଷାରେ ରଚିତ ହୋଇଅଛିତ ଅନ୍ୟ କେତେକ ଛାନ୍ଦରେ ଅପେକ୍ଷାକୃତ କ୍ଳିଷ୍ଟ ସଂସ୍କୃତ ବହୁଳ ଅଳଙ୍କାରପୂର୍ଣ୍ଣ ହୋଇଅଛି ।

ଉଦାହରଣ ସ୍ୱରୂପ 'ଯୁଗଳ ରସାମୃତ ଲହରୀ' କାବ୍ୟର ୫ମ ଛାନ୍ଦ 'ମାତ୍ତୃଲଳସା' ଛାନ୍ଦଟି କବି ଲୋକବୋଧ ସରଳ ଭାଷାର ସାର୍ଥକ ପ୍ରୟୋଗ କରିବା ସଙ୍ଗେ ସଙ୍ଗେ ଛାନ୍ଦଟିକୁ 'କଖାରୁ କାଞ୍ଜିବାଣୀ'ରେ ଗାଇବା ପାଇଁ ନିର୍ଦ୍ଦେଶ ଦେଇଅଛନ୍ତି ଓ ଉକ୍ତ ଗ୍ରନ୍ଥରେ ୪ର୍ଥ ଛାନ୍ଦରେ କବି କ୍ଳିଷ୍ଟ, ସଂସ୍କୃତ ବହୁଳ ଭାଷା ବ୍ୟବହାର କରି ଛାନ୍ଦଟିକୁ ଦୁର୍ବୋଧ କରିଅଛନ୍ତି ।

## ସଂସ୍କୃତ ଶବ୍ଦ ବହୁଳ କ୍ଳିଷ୍ଟ ରଚନା—

ଅନବଚନୀୟ ଗୁଣ ଗୁଣା । ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦି ନିପୁଣା ।
ଔତ୍ସୁକ୍ୟହ୍ଲାଦ ଅଷ୍ଟୁଣା । ଉତ୍ତମାଙ୍ଗୀ ଅନୁରାଗାବଧି ପ୍ରଦଉମନା ସେ
ଶ୍ରୀରାଧିକା ! ଲଳିତାଦି ଆଳୀ ଆଳୀ ପ୍ରାଣାଧିକା ସେ ।
ପଦ ନଖାଭୂତ ରତ୍ନେ ସର୍ବେ ବିକା ସେ ।
କବି କି ବର୍ଣ୍ଣିବ ଚେଷ୍ଟା ଅଲୌକିକା ସେ ॥ ୧ ॥

(ଯୁ. ର. ଲ. ୪ର୍ଥ ଛାନ୍ଦ । ରାଗ-ଭାଟିଆରୀ)

ଅନ୍ୟାନ୍ୟ କାବ୍ୟମାନଙ୍କରେ ମଧ୍ୟ କବି ଭାଷା ପ୍ରୟୋଗ ଦିଗରେ ଉକ୍ତ ପନ୍ଥା ଅବଲମ୍ବନ କରିଅଛନ୍ତି । 'ମୋହନଲତା' କାବ୍ୟରୁ ସରଳ ଓ କ୍ଳିଷ୍ଟ ଉଭୟ ଭାଷାର ପ୍ରୟୋଗ ଦେଖାଯାଏ । ଯଥା—

"ଆରକ ବୋଇଲ ତୁମ୍ଭେ ଧନ ଲୋଭୀ ଜାଣି ।
ତୁମ୍ଭଠାରେ ବଶହେବ ସେ କାମାତୁରଣୀ ହେ ॥ ୩୬ ॥
ପ୍ରୀତି ପାଇଁ ପ୍ରାଣମାନ ବ୍ୟସ୍ତ କରିପାରି ।
ଦ୍ରବ୍ୟ କଉଁ କଥା ଛାର ବୁଝିତ ନପାରି ହେ ॥ ୩୭ ॥
ଏ ବଚନେ ହସି କରତାଳ ଦେଇ କରେ ।
ବୋଲେ ତୁମ୍ଭେମାନେ ଭାଗ୍ୟବନ୍ତ ଏ ସଂସାରେ ହେ" ॥ ୩୮ ॥

**ସଂସ୍କୃତ ବହୁଳ କ୍ଲିଷ୍ଟ ବର୍ଣ୍ଣନା—**

ସଙ୍ଗୀତ ସାହିତ୍ୟ ନାଟକାଦି ଗୁଣୋପେତା ।
ପ୍ରାଚୀନ ମର୍ଯ୍ୟାଦା ସଦାଚାର ଅନୁରକ୍ତା ଯେ ॥ ୪୫ ॥
ପିଷ୍ଟ ପାକୃଷ୍ଟ ଦୃଷ୍ଟି ସୁପରିପକ୍ୱ ମତି ।
ସ୍ରଷ୍ଟା ଶିଳ୍ପୀ ପ୍ରଶଂସନୀୟା ଉପମାକୃତି ହେ ॥ ୪୬ ॥
ଏବଂ ଭୂତା ନୃପାତ୍ମଜା ସେ ମୋହନଲତା ।
ମଧ୍ୟାହ୍ନ-ଶପ୍ତନା ହୋଇଅଛି ସୁଚରିତା ହେ ॥ ୪୭ ॥

(ମୋହନଲତା ୭ମ ଛାଂଦ)

କବି ସଂକ୍ଷିପ୍ତ ବିଶୁଦ୍ଧ କବିତ୍ୱର ପକ୍ଷପାତୀ ଥିବା ତାଙ୍କ ରଚିତ ବିବିଧ କାବ୍ୟରୁ ଜଣାଯାଏ । ଯଥା—

"ସଦାନଂଦ କବିସୂର୍ଯ୍ୟ ବ୍ରହ୍ମାର ଉକ୍ତି ।
ଛାଂଦ ବଡ଼ ବୋଲି ଚିନ୍ତା ନପାଅ ଭକ୍ତି" ॥

(ଚୌର ଚିନ୍ତାମଣି-୧୭ଶ ଛାଂଦ)

"ଅଳପ ହୋଇ ରଚିବ ଭକ୍ତିତତ୍ତ୍ୱ ବୋଧ ।
ଏମନ୍ତ ପ୍ରକାର ହେଲେ କବିତ୍ୱ ବିଶୁଦ୍ଧ" ॥

(ଚୌରଚିନ୍ତାମଣି-୪ର୍ଥ ଛାଂଦ)

"ସରଳ ଅଳପ ହେଲେ ହୁଅଇ ରୁଚିର ।
ଏ ଘେନି ଏ ଛାଂଦ ପୂର୍ଣ୍ଣ କଲଇଁ ଏଥର" ॥

(ବ୍ରଜଲୀଳାମୃତ ସମୁଦ୍ର-୧ମ ଛାଂଦ)

**ଭାଷାତତ୍ତ୍ୱ—**

କବି ସଦାନଂଦ କେବଳ ଯେ ଜଣେ ଭାଷାବିତ୍ ଥିଲେ, ତାହା ନୁହେଁ ସେ ଏକାଧାରରେ ଥିଲେ ଭାଷା ବୈଜ୍ଞାନିକ । ତାଙ୍କ କାବ୍ୟ

'ପ୍ରେମକଳ୍ପଲତା' ଓ 'ଯୁଗଳ ରସାମୃତ ଭଉଁରୀ'ରେ ଧ୍ୱନିତତ୍ତ୍ୱରୁ ଦୃଷ୍ଟାନ୍ତମାନ ପ୍ରଦାନ କରିଅଛନ୍ତି । 'ପ୍ରେମକଳ୍ପଲତା'ର ୧୬ଶ ଛାନ୍ଦରେ ନବେଷ୍ଟକ, ସବେଷ୍ଟକ, ଅନୁନାସିକ ପ୍ରଭୃତିର ବହୁଳ ଦୃଷ୍ଟାନ୍ତ ଅଛି ଓ 'ଯୁଗଳ ରସାମୃତ ଭଉଁରୀ'ର ୪୬ଶ ଛାଂଦରେ ନବେଷ୍ଟକ, ସବେଷ୍ଟକ, ମହାପ୍ରାଣମିଶ୍ରାକ୍ଷର, ତାଲବ୍ୟ, ମୂର୍ଦ୍ଧନ୍ୟ, ଦନ୍ତ୍ୟ ଅନୁନାସିକା ପ୍ରଭୃତିର ଦୃଷ୍ଟାନ୍ତ ଦେଖାଯାଏ ।

"ନବେଷ୍ଟକ - ସକଳ କାର୍ଯ୍ୟକାରଣ । ସଦନ ନଂଦନଂଦନ ॥

ସବେଷ୍ଟକ - ଭବେ ବାମା ପ୍ରେମ ଭାବ । ଧାମଭାବ୍ୟ ପ୍ରଭୁଭୁବ ॥

ଅନୁନାସିକା - ନମୋ ନାନା ନାମୋମାନ । ନୂନଂ ନମଣିମନ୍ୟନ" ॥

(ପ୍ରେମକଳ୍ପଲତା-୧୬ଶ ଛାଂଦ)

ନବେଷ୍ଟକ - ନୃତ୍ୟଘନକାନ୍ତ କ ସ୍ନେହ କରେ ।
କରୁ କରୁଣା କରୁଣା କରୁଣା ସାଗରେ ॥ ୨୭ ॥
କଦା ନୋହୁ ସେ ନାଗରେ ନରଣ ।
କଞ୍ଜନୟନା ସେ ଜଗତ ବରଣ ॥ ୨୮ ॥

ସବେଷ୍ଟକ - ବପ୍ରାଭବ ବୈଭବ ବଭୂଭୂପ ।
ଭବ୍ୟ ବପ୍ର ଭାବ୍ୟ ଭାବେ ବ ପ୍ରାପ୍ୟ ॥ ୨୯ ॥
ଭାବ ଭାବ ବାମା ପ୍ରେମ ପ୍ରଭାବ ।
ଭବଧାମ ପ୍ରଭୁ ଭୁବ ପ୍ରଭାବ ॥ ୩୦ ॥

ମହାପ୍ରାଣ ମିଶ୍ରାକ୍ଷର - ଦର୍ଘେ ଜଘ ମେଘ ଓଘକୁ ଶ୍ଳାଘ୍ୟ ।
ଅଘା ଅଘ ବ୍ୟାଘ୍ର ସିଂଘ ଦେ ଅର୍ଘ୍ୟ ॥ ୩୧ ॥
ସୁଦୁର୍ଲ୍ଲଭ ବଲ୍ଲଭ ଶୁଭେ ଲଭ ।
ଭବଭୟ ଭର୍ଗ ଲଭ୍ୟ ସୁଲଭ ॥ ୩୨ ॥

ତାଲବ୍ୟ ନୟମ - ଶଚଞ୍ଚଶ ଶଠଇଛେ ଛୁଇଁ ଛୁଇଁ ।
ଯଗ୍ୟଯଚ ଯଶ ଯେଯାଚଛଇ ॥ ୩୩ ॥

ମୂର୍ଦ୍ଧନ୍ୟ ନୟମ - ଋଢିଶଡ଼ାଣଣ୍ଡ ଠଣ ଠାଣିରେ ।
ଋଣ ଋଣ ଢ଼ରେ ଠବ୍ ଠଣରେ ॥

ଦନ୍ତ୍ୟ ନୟମ - ସନଦାନ୍ଦ ମୁଁ ସାଧ ସେ ସାଧନ ।
ସାନୁ ସୋସିଲେ ଦତ ସୁତା ସ୍ତନ ॥ ୩୪ ॥

ସତ ସଂଗିତ ସେ ସୁଧନେ ଦନ ।
ସରସ ଲତନୁ ଦନ୍ତସନ୍ଦନ ।। ୩୬ ।।

ଅନୁନାସିକା ନସୂମ - ମୌନ ମୁନମମନ ମୃଣି ମଣି ।
ନମଣ ନ୍ୟନନୂନଂ ମାନ୍ୟ ମଣି ।। ୩୭ ।।

ନମାମି ନାନା ନାମମାନ ସାନ ।
ମୁଁ ନମାନେ ନାମଣିମାମାନନ ।। ୩୮ ।।

(ଯୁଗଳ ରସାମୃତ ଭଉଁରୀ - ୪୭ଶ ଗ୍ରନ୍ଥ)

## ରାଗରାଗିଣୀ—

କବି ସ୍ୱଗ୍ରନ୍ଥମାନଙ୍କରେ ପ୍ରତ୍ୟେକ ଛାନ୍ଦର ଆବୃତ୍ତି ପାଇଁ ବିଭିନ୍ନ ରାଗ ରାଗିଣୀର ନିର୍ଦ୍ଦେଶ ଦେଇଥିଲେ ସୁଦ୍ଧା ପାଠକ ସମାଜର ବୋଧଗମ୍ୟ ହେବା ପାଇଁ ଏ ସମ୍ପର୍କରେ ସ୍ୱତନ୍ତ୍ର ଏକ ଗ୍ରନ୍ଥ 'ବାଳବୋଧିନୀ' ରଚନା କରିଥିଲେ ।

ଆରେ ବନ୍ଧୁ ଗଉଡ଼ମାଳଆ ଚଉଦ ବର୍ଣ୍ଣ ପୁଣି
ସପ୍ତେ ରହିତା ତିନ, ତା, ତି, ନ, ତା ଗୁରପୁଣି ।।
ବଉଳ ଘୋଷା ମୁଖାରୀ ଷଷ୍ଠବର୍ଣ୍ଣେ ରଖିବାର ବିଚାରରେ
ସଜନୀ ! ଲେଉଟି ନବ ସେ ପଦରେ ।।

× × ×

ଶୁଣରେ ଜୀବନ ଭୂପାଳ ଏସନ ଷଟଷଟ ଭିନଠାବରେ ରହି ।
ଗୁଜ ବର୍ଣ୍ଣେ ପାଦେ ପ୍ରାନ୍ତ ପାଦକରେ ଚଉବିଂଶ ଅକ୍ଷର କହି ।
ଆଉ ପ୍ରକାରେ ତାହା କହି, ଭେଦ ମାତ୍ରହିଁ ଦୁଇବର୍ଣ୍ଣ ଆଦ୍ୟେ ରହିଚଳେ ।
ଆଉ ରାଗ ସଙ୍ଗେ ପୋଇ ବୋଲାଇରେ
ସେହି ଅଠରଳଶ ଗଣା ସଙ୍ଖ୍ୟାରେ ।
ଫୁଲ-ମନସା ଆଠହିଁ । ଚାଳି ପୁଣି ବାର ଅକ୍ଷରେ ରହି ଯେ ।
ପୁଣି ଚଉଦ ଘୋଷା ମିଶାଇ ମୋ ବନ୍ଧୁରେ ।।
ଶଙ୍କରା ଭରଣ ଆଦ୍ୟେ ଚତୁଃଦଶାକ୍ଷର ।
ଦୂତ ଏ ଚେଣିକ ଜାଣ ଧ୍ରୁବ ଅଷ୍ଟାକ୍ଷର ।।
ପାଦେ ଚଉଦ ଚେମନ୍ତ, ଆରେ ବନ୍ଧୁ ପଇଁଶଏ ମିଶିଣ ସମସ୍ତ ।।
କନଡ ଆଦ୍ୟରେ ଏକବିଂଶ ବର୍ଣ୍ଣ ତା ପଛେ ଏକାଦଶ ଘେନ ।
ପ୍ରାନ୍ତେ ଏକୋଇଶରେ ଯେତେ ସନ ।
ଧ୍ରୁବ ତିନ ଗାଏ ଛପନ ଅକ୍ଷରେ ଏ ପଦହେଲା ସମ୍ପୂର୍ଣ୍ଣରେ ।।

## ଅଲଙ୍କାର ଓ ଛନ୍ଦ ଯୋଜନା—

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ଜୀବିତ ଥିଲେ। ଉକ୍ତ ସମୟର ସାହିତ୍ୟରେ ଶବ୍ଦାଡମ୍ବର ଓ ଆଳଙ୍କାରିକତା ଆତ୍ମପ୍ରକାଶ କରିଥିଲା। ସଂସ୍କୃତ ସାହିତ୍ୟରେ କାବ୍ୟଲେଖକ ରୂପେ ସୁପ୍ରସିଦ୍ଧି ଲାଭ କରିଥିବା କାଳିଦାସ, ଭାରବି, ମାଘ, ଶ୍ରୀହର୍ଷ ଏହି କବି ଚତୁଷ୍ଟୟଙ୍କ ରଚନା ପାଠକଲେ ଆମ୍ଭେ ଦେଖୁଁ ଯେ, କାଳିଦାସଙ୍କ ଯୁଗ (ପ୍ରାୟ ଖ୍ରୀ: ଅ ୧ମ ଶତାବ୍ଦୀ) ପରେ ଭାରବିଙ୍କଠାରୁ ଆରମ୍ଭ କରି ଶ୍ରୀହର୍ଷଙ୍କ ସମୟ (ଖ୍ରୀ: ଅ ୧୩ଶ ଶତାବ୍ଦୀ) ପର୍ଯ୍ୟନ୍ତ ସଂସ୍କୃତ ସାହିତ୍ୟରେ ଏହି ଶାବ୍ଦିକତା ଓ ଆଳଙ୍କାରିକତା କ୍ରମଶଃ ପ୍ରାଧାନ୍ୟ ଲାଭ କରିଅଛି। କାଳିଦାସଙ୍କ ରଚନାରେ ଅନୁପ୍ରାସ, ଯମକ ଓ ଶ୍ଳେଷ ଅଳଙ୍କାରମାନଙ୍କର ପ୍ରୟୋଗ ବିରଳ। କେବଳ ରଘୁବଂଶର ନବମ ସର୍ଗର ପ୍ରତ୍ୟେକ ପଦରେ ଯମକ ଅଳଙ୍କାର ପ୍ରୟୋଗ ଦେଖିବାକୁ ମିଳେ। କିନ୍ତୁ ଖ୍ରୀ: ଅ ସପ୍ତମ ଶତାବ୍ଦୀର ମହାକବି ଭାରବି ସ୍ୱକୃତ 'କିରାତାର୍ଜୁନୀୟ' ଗ୍ରନ୍ଥରେ ଅନେକବିଧ ପୂର୍ବୋକ୍ତ ଅଳଙ୍କାରମାନଙ୍କର ବହୁଳ ପ୍ରୟୋଗ କରି ପଞ୍ଚମ ସର୍ଗରେ ଗୋମୂତ୍ରିକାବନ୍ଧ, ସର୍ବତୋଭଦ୍ର, ଅର୍ଦ୍ଧଭ୍ରମକନାମକ ଛନ୍ଦ-ବନ୍ଧମାନଙ୍କର ଉଦାହରଣ ଦେଇଛନ୍ତି। ମାଘ କବି 'ଶିଶୁପାଳବଧ' କାବ୍ୟରେ ଭାରବିଙ୍କ ଦ୍ୱାରା ବ୍ୟବହୃତ ପୂର୍ବୋକ୍ତ ଅଳଙ୍କାରମାନ ପ୍ରୟୋଗକରି ୧୯ଶ ସର୍ଗରେ ମୁରଜବନ୍ଧ, ଚକ୍ରବନ୍ଧ, ଏକାକ୍ଷର, ପ୍ରତିଲୋମାନୁଲୋମପାଦ, ଦ୍ୱ୍ୟକ୍ଷର, ଅପଲବ୍ୟ, ଗତପ୍ରତ୍ୟାଗତ ଅସଂଯୋଗ ଓ ଅର୍ଥତ୍ରୟବାଚୀ ପ୍ରଭୃତି ଶବ୍ଦ କୌଶଳ ଦେଖାଇ ଅଛନ୍ତି। ଶ୍ରୀହର୍ଷ ନୈଷଧ କାବ୍ୟରେ ଅନୁପ୍ରାସ, ଯମକ ଓ ଶ୍ଳେଷ ପ୍ରଭୃତିର ବ୍ୟବହାର କରି ଯେଉଁ ଶବ୍ଦ କୁଶଳତା ଦେଖାଇ ଅଛନ୍ତି, ତାହା ସୁବିଦିତ। ଏ ପ୍ରସଙ୍ଗରେ ଅର୍ଥଚତୁଷ୍ଟୟବାଚୀ ଯେଉଁ କବିତା ନୈଷଧ କାବ୍ୟରେ ପ୍ରକାଶିତ ହୋଇଅଛି, ତାହା ଦ୍ରଷ୍ଟବ୍ୟ। କବିରାଜଙ୍କ କୃତ 'ରାଘବ ପାଣ୍ଡବୀୟ କାବ୍ୟ'ରେ (ଖ୍ରୀ: ଅ: ୧୨୦୦) ରାମାୟଣ ଓ ମହା-ଭାରତର କଥା ଯୁଗପତ୍ ବର୍ଣ୍ଣିତ ହୋଇଅଛି।

ଭଞ୍ଜଙ୍କ ପୂର୍ବବର୍ତ୍ତୀ ଉତ୍କଳୀୟ ସଂସ୍କୃତ ପଣ୍ଡିତମାନେ ଯେଉଁ ଶବ୍ଦ-ପାଣ୍ଡିତ୍ୟ ଦେଖାଇଅଛନ୍ତି, ତାହା ବିସ୍ମୟକର। ଉଦାହରଣତଃ ଜନୈକ ପଣ୍ଡିତ କାଳିଦାସଙ୍କ ମେଘଦୂତର 'ବ୍ରହ୍ମ ପ୍ରକାଶିକା' ନାମ୍ନୀ ଟୀକା ରଚନା କରି ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚାଯାତ୍ରାର ବର୍ଣ୍ଣନା କରିଅଛନ୍ତି। 'ସାହିତ୍ୟ

ଦର୍ପଣକାର' ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'ଭାଷାସମ' ନାମକ ରଚନା ବହୁବିଧ ଭାଷାରେ ସମାନ ରୂପ ବା ଅଭିନ୍ନ ରୂପ ହୋଇ ଅର୍ଥ ପ୍ରକାଶ କରେ ।

ଉପେନ୍ଦ୍ର ଭଞ୍ଜ ସଂସ୍କୃତ କବିମାନଙ୍କ ପଦାଙ୍କ ଅନୁସରଣ କରି-ଅଛନ୍ତି । ଓଡ଼ିଆ କବିମାନଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠ ଶାବ୍ଦିକ ଓ ଆଳଙ୍କାରିକ କବି । ଶାବ୍ଦିକତା ଓ ଆଳଙ୍କାରିକତାରେ ଭାରତୀୟ କବି ମଣ୍ଡଳୀଙ୍କ ମଧ୍ୟରେ ଭଞ୍ଜଙ୍କ ସ୍ଥାନ ଅତି ଉଚ୍ଚରେ । ତାଙ୍କୁ ଅନୁକରଣ କରିଥିବା ପରବର୍ତ୍ତୀ କବିମାନଙ୍କ ମଧ୍ୟରେ ଅଭିମନ୍ୟୁ ସାମନ୍ତସିଂହାର ଅଗ୍ରଗଣ୍ୟ । ❊

କବି ଅଭିମନ୍ୟୁ ସାମନ୍ତସିଂହାରଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ମଧ୍ୟ ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଥିଲେ । କବି ଜଣେ ଶବ୍ଦ ଓ ଅଳଙ୍କାରର କୁବେର କହିଲେ ଅତ୍ୟୁକ୍ତି ହେବନାହିଁ । କବି ସ୍ୱରଚିତ ଗ୍ରନ୍ଥମାନଙ୍କରେ ବିଭିନ୍ନ ଅଳଙ୍କାର, ଅନ୍ତଲିପି, ବହିର୍ଲିପି, ପ୍ରତିଲୋମାନୁ-ଲୋମପାଦ, (ଲୋମ-ପ୍ରତିଲୋମ-ବିଲୋମ) ଏକାକ୍ଷର, ଦ୍ୱାକ୍ଷର, ଅବିନା, ଏକଶବ୍ଦର ପୁନରୁକ୍ତି, ଚିତ୍ରବନ୍ଧ ଯଥା; କୁଣ୍ଡଳୀବନ୍ଧ, ବାହୁଟିବନ୍ଧ, ଖଡ୍‌ଗ-ବନ୍ଧ, ହାରବନ୍ଧ, କଙ୍କଣବନ୍ଧ, ଅଷ୍ଟଦଳପଦ୍ମବନ୍ଧ, ଶମ୍ଭୁବନ୍ଧ, ମୁରଜବନ୍ଧ, ସର୍ବତୋଭଦ୍ର, ଅର୍ଦ୍ଧଭ୍ରମକ, ଇତ୍ୟାଦି ଊନବିଂଶତି ବନ୍ଧର ସୁନ୍ଦର ବର୍ଣ୍ଣନା ଦେଇଅଛନ୍ତି । ଏହା ବ୍ୟତୀତ ଦଉତ୍ୟୁତାକ୍ଷର, ଶୃଙ୍ଖଳା, ଗୋମୂତ୍ରିକା, ମେଷଯୁଦ୍ଧ ଆଦିର ସଂଜ୍ଞା ଓ ସ୍ୱରୂପ ସମ୍ବନ୍ଧରେ ସ୍ୱଗ୍ରନ୍ଥରେ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ କବି ଛନ୍ଦଶ୍ଳେଷ ଓ ବନ୍ଧବାଣୀର ପ୍ରଶଂସା କରିଛନ୍ତି । ତନ୍ମଧ୍ୟରୁ କେତେକ ଉଦାହରଣ ଏଠାରେ ଦିଆଗଲା ।

**ଅନୁପ୍ରାସ**—କବି ଅନୁପ୍ରାସର ବହୁଳ ପ୍ରୟୋଗ କରି କମନୀୟ ପଦାବଳୀ ସୃଷ୍ଟି କରିଅଛନ୍ତି ।

**ଆଦ୍ୟାନୁପ୍ରାସ**—

ରଜନୀ ବିରଜମାନ ହୋଇବାରୁ ଆନନ୍ଦ ବିରଜ ।
ରଜକୁସୁମରୁ ଝଡ଼ି ଶୋଭା ହେଉ ସେ ପାଦପ ରଜ ॥ ୧ ॥

× × ×

❊ 'ଭଞ୍ଜପ୍ରଭା' ପ୍ରକାଶକ ଭଞ୍ଜଜୟନ୍ତୀ ସମିତି ୧୯୫୩ ପୃ: ୬୪-୬୫ ଉପେନ୍ଦ୍ର ଭଞ୍ଜଙ୍କ ଶବ୍ଦପାଣ୍ଡିତ୍ୟ—ଡଃ. କୁଞ୍ଜବିହାରୀ ତ୍ରିପାଠୀ, ଏମ୍. ଏ. ପି.ଏଚ୍.ଡି. ।

ଏ କାଳରେ ଗୃହଜଞ୍ଜାଳ ସାରି କେ ସ୍ୱାମୀ ଅଚେତନ
ଏକା ହୋଇ ଆସେ ଧୀରେ ଧୀରେ ସଖି ରାଜ ଧର୍ମାବନ ॥ ୭ ॥
ପୁରୁ ବାହାରିଥିଲା କେ ତାକୁ ଦେଖି ଏତେ ହସିଭାଷି ।
ପୁରୁଷପରି ନିର୍ଭୟେ ସଙ୍ଗବିନା ଆସୁ ଦୂରବାସୀ ॥ ୮ ॥

ଏହିପରି କବିଙ୍କ ରଚିତ 'ଯୁଗଳ ରସାମୃତ ଭଉଁରୀ'ର ସପ୍ତମ ଛାନ୍ଦର ପ୍ରତ୍ୟେକ ପଦ ଆଦ୍ୟାନୁପ୍ରାସ ସହ ରଚିତ । କବି ନିଜେ ମଧ୍ୟ 'ଶ୍ରୀ ଦୁତିୟାକ୍ଷର ଆଦ୍ୟାନୁପ୍ରାସୟେ ଛାନ୍ଦେ' ବୋଲି ଉଲ୍ଲେଖ କରିଅଛନ୍ତି । ଏହା ଛଡ଼ା କବିଙ୍କ ଅନ୍ୟ କାବ୍ୟ 'ଯୁଗଳ ରସାମୃତ ଲହରୀ'ର ଦ୍ୱିତୀୟ ଛାନ୍ଦ ମଧ୍ୟ ଆଦ୍ୟାନୁପ୍ରାସରେ ରଚିତ । ଯଥା :-

କବିମାନେ କରୁଣା କର ମୋରେ । କରିବି ମୁଁ କାବ୍ୟ ଅଳ୍ପଶ୍ରମରେ ॥ ୧ ॥

କାମିନୀର ପ୍ରାୟେ ଏହୁ ହୋଇବ । କାମ ଜଳଧିକି ଉଚ୍ଛୁଳାଇବ ॥ ୨ ॥

କଣ୍ଠିମ ଏ ରସିକ ଜନମନ । କଷ୍ଟୁ ଅଳଙ୍କାରେ ହୋଇ ମଣ୍ଡନ ॥ ୩ ॥

କୀର୍ତ୍ତି ଏଥୁଁ ବଢ଼ କବି ସଂସାରେ । କଳ୍ମଷାଦି ହରେ କହେ ବେଦରେ ॥୪॥

କୁ ମାର୍ଗରେ ତ ଗୀତ ନ ବର୍ଣ୍ଣୁଛୁ । କୂଟକର ରଚିତେ ଲୋଭ ଅଛୁ ॥ ୫ ॥

(ଯୁଗଳ ରସାମୃତ ଲହରୀ-୨ୟ ଛାନ୍ଦ)

**ମଧ୍ୟାନୁପ୍ରାସ—**

ଏଣେ ତ କଣୋରୀଗଣ ତରିକେ ଗ୍ରାମରେ ଯାଇ ।
ବଞ୍ଚିଲେ ଉପାୟେ ରଞ୍ଚିଲେ ଭୂତ ଭୂତ ସେ କହି ॥ ୧ ॥
ସହିଲେ ଯେ ରୂପେ କହିଲେ କବି କକାର୍ଯ୍ୟ ତାହା ।
ରସକୁ ଶୁଣହେ ବାସକୁ ପାଇ ହେଲେ ସେ ଯାହା ॥ ୨ ॥
ବିନୟ ନଦେନି ସେ ନୟନରେ ଲୋତକ ଭରି ।
ହୁଡ଼ିଲ ବନ୍ଧୁକୁ ଛାଡ଼ିଲ ହାହା ଭଜ ସେ ଝୁରି ॥ ୩ ॥

(ଯୁଗଳ ରସାମୃତ ଭଉଁରୀ-୩୦ଶ ଛାନ୍ଦ)

**ଅନ୍ତ୍ୟାନୁପ୍ରାସ—**

ଆହେ ସାଧୁଜନେ ଶୁଣ ଶ୍ରୀକୃଷ୍ଣ ଚରିତ ।
ଯେ ପଦ ଆଶ୍ରୟେ ତୁମ୍ଭେ ନାଶିଛ ଦୁରିତ ॥ ୧ ॥
ନାରଦ ପରୀକ୍ଷିତ ସମ୍ବାଦ ବୈକୁଣ୍ଠରେ ।
ରସାମୃତ ଲହରୀ କହିଲି ବିକୁଣ୍ଠରେ ॥ ୨ ॥

ମିଳନ ତହିଁରେ ମାନରସ ଅବଶେଷ ।
ଭଉଁରୀ ନାମ ଗ୍ରନ୍ଥରେ ହେଉ ଏବେ ଶେଷ ।। ୩ ।।

(ଯୁଗଳ ରସାମୃତ ଭଉଁରୀ-୨ୟ ଛାନ୍ଦ)

କବି ସଦାନନ୍ଦ ସ୍ଥଳବିଶେଷରେ ଅନୁପ୍ରାସ ପ୍ରୟୋଗରେ ବିଶେଷତ୍ୱ ସୃଷ୍ଟି କରି ପଦଗୁଡ଼ିକୁ କୌତୁକପ୍ରଦ କରିଅଛନ୍ତି । ଯଥା—

ଏ ଗଉଡ଼ ରାଷ୍ଟ୍ରନରେଶ ଗରିଷ୍ଠ ରିଷ୍ଟହୀନ ଶିଷ୍ଟ ବଳିଷ୍ଠ ।
ରିଷ୍ଟ ନକରେ ମୃଷ୍ଟ ଅନ୍ନ ଦେବାରେ ବହୁ ଭୂଦେବ କରେ ତୁଷ୍ଟ ।
ବାଳାରେ ! ପ୍ରଷ୍ଟବ୍ୟ ଏ ଯେ ନୋହେ ଦୁଷ୍ଟ ।
ଯେ ମନକୁ ଆସେ ବିମ୍ବୋଷ୍ଠି ଏ ବପୁ ପୁଷ୍ଟ ଏହା ରସିକ ଇଷ୍ଟ ।। ୩୧ ।।

କରୁଛି ଦୂକଟ ଏ ଯେ ମରହଟ କଟକ ରାଟଙ୍କ ମୁକୁଟ ।
ହାଟ ବାଟ ଲୁଟି ଭ୍ରାଟକୁ ଦିଆଇ ନିକଟେ ନିରନ୍ତରେ ନାଟ ।
ବାଳାରେ ! ବୋଲଇ ଏହୁ ଉଗ୍ରଭଟ ।
ଝୁଟ ନୋହଇ ଏହାର ଯେତେ ଲଟ ଜାଣଇ କେତେ ନଟକୁଟ ।। ୩୨ ।।

(ଲଳିତଲୋଚନା-୩୪ଶ ଛାନ୍ଦ)

ଏହି ବର୍ଣ୍ଣନାରେ କବି ଗୌଡ଼ରାଷ୍ଟ୍ର, ମରହଟ୍ଟା ଶବ୍ଦକୁ ମିଶାଇ ଅନୁପ୍ରାସ ବ୍ୟବହାର କରିଅଛନ୍ତି ।

**ଲାଟାନୁପ୍ରାସ—**

ପରକାଶ ହାସିର ପରକାସ । ହରଷ ନାହିଁ ଶ୍ୟାମସ୍ନେହ ରସ ।। ୧ ।।
ପରମ ଦାରୁଣ ଏ ପରମଦା । ବରଦାସରେ ଯେ ହେଲା ବରଦା ।। ୨ ।।

× × ×

ସୁଧାକର ମଣେ ଅସୁଧାକର । ସୁରାଗ ରଙ୍ଗିମ ତୋ ସୁରାଗର ।। ୪ ।।
ଧରରେ ଶୟନ ଯେହ୍ନେ ଧରରେ । ଗ୍ରହରେ ସ୍ନେହ କାହିଁ ନିଗ୍ରହରେ ।। ୫ ।।

(ଯୁ : ର : ଭ)

**ଆଦ୍ୟଯମକ—**

ଧୀରେ ଧୀରେ ଆଗ ବିଧୁର । ରସ ରସତା ପାନ କର ।। ୧ ।।
ରାମ ରାମ ଚଞ୍ଚଳେ କ୍ଷଣି । କୃଷ୍ଣ କୃଷ୍ଣ ସ୍ୱଭାବ ମଣି ।। ୨ ।।

ବାସ ବାସ ଅସନ କାସ । ବସ ବସରେ କ୍ରୋଧା ବେଶ ॥ ୩ ॥
ଦହ ଦହନେ ହର ବସି । ସହ ସହ କହନ୍ତ ହସି ॥ ୪ ॥

(ଯୁ : ର : ଭ-୧୨ଶ ଛାନ୍ଦ)

**ପ୍ରାନ୍ତଯମକ—**

ଶୁଣ କୃଷ୍ଣଲୀଳା ସୁଧୀରେ ସୁଧୀରେ । ଏଥିର ଆସ୍ୱାଦ ସଧିରେ ସଧୀରେ ॥୧॥
ଭାବେ ଶ୍ରୀକୃଷ୍ଣର ବିରହ ବିରହ । ବିରହୀ ଚନ୍ଦ୍ରାବଳୀ ବିଦେହ ବିଦେହ ॥୨॥
ଇତ୍ୟାରେ ଅନ୍ତ କୋପନା କୋପନା । ଏଣୁ ନାହିଁ ତା ଆକଳ୍ପନା କଳ୍ପନା ॥୩॥

(ଯୁ : ର : ଭ-୧୪ଶ ଛାନ୍ଦ)

"ଏଣେ ନୃପନନ୍ଦନ ଏମନ୍ତ କରି । ରଖି ନପାଇ ମନ ସେ ମତ୍ତକରୀ ॥
ରହିଥିଲ ସେ ଅତ୍ୟନ୍ତ ଆକୋପରେ । ଚଡ଼ିନୃପ ଦୁହିତା ସ୍ନେହ କୋପରେ" ॥

(ଲଳିତଲୋଚନା-୨୭ଶ ଛାନ୍ଦ)

କବି 'ଯୁଗଳ ରସାମୃତ ଭଉଁରୀ କାବ୍ୟର ପଞ୍ଚଦଶ ଛାନ୍ଦରେ ଆଦ୍ୟ ଓ ପ୍ରାନ୍ତରେ ଯମକ ପ୍ରୟୋଗ କରିଅଛନ୍ତି । "ପଞ୍ଚଦଶେ ସେ ସଂଖ୍ୟାରେ । ଆଦ୍ୟ ପ୍ରାନ୍ତ ଯମକରେ" ବୋଲି କବି ଗ୍ରନ୍ଥର ଅନୁକ୍ରମଣିରେ ଉଲ୍ଲେଖ କରିଅଛନ୍ତି ।

ବିଦଗ୍ଧ ବିଦଗ୍ଧ ନୋହ କାମାନଳେ ଭବ ଅସାର ଅସାର ।
ଭାସନ୍ତ ଭାସନ୍ତ ଦ୍ରବେ ରସେ ଯେହ୍ନେ ସୁନିବିଧାର ଧାର ॥ ୧ ॥
ସଜନୀ ସଜନନାମ୍ବର ଆଦକ ଆଣି ବିଧିରେ ବିଧିରେ ।
ଆସନ ଆସନ ମତେ ବସାଇ ସେପରି ହାସରେ ହାସରେ ॥ ୨ ॥
ଭୂଷଣ ଭୂଷଣ ଶ୍ୟାମାକୁ କରନ୍ତି ସମବୟସୀ ବୟସି ।
କେଶ ଯେ କେସଜେ ବାନ୍ଧିଲି ନବଢେ ରସ ବିଳାସୀ ବିଳାସି ॥ ୩ ॥

(ଯୁଗଳ ରସାମୃତ ଭଉଁରୀ-୧୫ଶ ଛାନ୍ଦ)

**ସର୍ବଯମକ—**

କାନ୍ତରମଣି କାନ୍ତରମଣୀ କାନ୍ତରମଣି ହ୍ରଦ ।
କୁରୁଣ୍ଟକରେ କୁରୁଣ୍ଟକରେ କୁରୁଣ୍ଟକରେ ଛେଦ ॥ ୩୦ ॥
ତମାଳତନୁ ତମାଳତନୁ ତମାଳତନୁ ଦେଖ ।
ତମାଳବାସ ତମାଳବାସ ତମାଳବାସ ରସ ॥ ୩୧ ॥
ସ୍ୱଚ୍ଛନ୍ଦରସ ସ୍ୱଚ୍ଛନ୍ଦରସ ଉଦକାଳ ଚନ୍ଦ୍ରମା ।
ସଦାନନ୍ଦ ଦାସ ସଦାନନ୍ଦ ଦାସର ଶ୍ରୀଭନୁଜେମା ॥ ୩୨ ॥

(ଯୁଗଳ ରସାମୃତ ଭଉଁରୀ-୧୭ଶ ଛାନ୍ଦ)

**ମହାଯମକ—**

କାନ୍ତରେ ଭସି ସୁଚର ହରେ ସେ ବରସେ ।
କାନ୍ତରେ ଭସି ସୁଚର ହରେ ସେ ବରସେ ॥ ୧ ॥
ଆନ ବନତା ଭୁରସ୍ତା ସନ୍ଥ ଅଚ୍ଛୁ ଧାଇ ।
ଆନ ବନତା ଭୁରଆ ସନ୍ଥ ଅଚ୍ଛୁ ଧାଇ ॥ ୨ ॥
ମାନସ ହରଣ ନେମାର ତୁ ବଦ୍ଧନ ।
ମାନସ ହରଣ ନେମାରତ ବଦ୍ଧନ ॥ ୩ ॥
ମାନକ ଲୋକନ କରୁଥିଲେ ପରିହାସତ ।
ମାନକ ଲୋକ ନକରୁଥିଲେ ପରିହାସତ ॥ ୪ ॥
(ଯୁଗଳ ରସାମୃତ ଭଉଁରୀ-୧୯ଶ ଛାନ୍ଦ)

**ରୂପକ ଅଲଙ୍କାର—**

'ଯୁଗଳ ରସାମୃତ ଭଉଁରୀ' କାବ୍ୟର ଅନୁକ୍ରମଣିରେ ବିଂଶଛାନ୍ଦରେ ରୂପକ ଅଳଙ୍କାର ଥିବା କବି ସଦାନନ୍ଦ ଉଲ୍ଲେଖ କରିଅଛନ୍ତି ।

"ଏଥୁଅନ୍ତେ ଶୁଣ ରସିକ ଭକ୍ତ । କରି କରିଣୀ ପ୍ରାୟେ କରି ଗତ ॥
ଆବୃତ୍ତ ହରଣ ନେହା ହରିଣୀ । କିବା ଭୂଭାଗ୍ୟ ଭଗିରଥି ଆଣି ସେ
ସହ୍ର ସୁରତରଙ୍ଗିଣୀ ହେ ।
ଶ୍ୟାମା ଶ୍ୟାମ କିଶୋର ହା ସୂର୍ଯ୍ୟସୁତା ସଙ୍ଗେ ବିହରିଲେ କି ମଣି ଯେ ॥୧॥
କି ବହୁ ପ୍ରକାରେ ବିଚିତ୍ର ଲତା । ମନ୍ତ୍ରବଳରେ ଚଳାଉଛୁ ଧାତା
ବହୁ ଶାଖା ପାଣି ପଲ୍ଲବ ସତ । ହାସ ପ୍ରକାଶ କୁସୁମ ବିଦିତ ସେ
ଚୂର୍ଣ୍ଣକୁନ୍ତଳ କେଶର ଯେ
ରଦନ କୁଟ୍ମଳ ଉରଜ ଫଳ ସେ ମଧ୍ୟେ ମୋହନ ତମାଳ ଯେ ॥ ୨ ॥

**ବିରୋଧାଭାସ ଅଲଂକାର—**

"ଯୁଗଳ ରସାମୃତ ଭଉଁରୀ" କାବ୍ୟର ୫୪ ଛାନ୍ଦରେ ଅନୁକ୍ରମଣିରେ କବି 'ବିରୋଧାଭାସ' ଅଳଙ୍କାର ଥିବା ଉଲ୍ଲେଖ କରିଛନ୍ତି ।

ସୁର ଅପୂର୍ବ ତେଜ ପ୍ରକାଶି ବେଳୁ ବେଳ ହେ ।
ସୁର ଅପୂର୍ବ ନିସ୍ତେଜ ଗତ ନିଜ କାଳ ହେ ॥ ୧ ॥
କୁମୁଦିନୀ ନୋହି ପ୍ରଫୁଲ୍ଲିତ ସେ ସଙ୍କୋଚ ହେ ।
କୁମୁଦିନୀ ପ୍ରଫୁଲ୍ଲିତ ଛାଡ଼ିଣ ସଙ୍କୋଚ ହେ ॥ ୨ ॥

ଦ୍ୱିଜବଜଙ୍କର ପ୍ରଭା ନୂତନ ହୋଇଲା ହେ ।
ଦ୍ୱିଜରାଜଙ୍କର ପ୍ରଭା ସେକାଳେ ବଢ଼ିଲା ହେ ॥

ସୁଚିବନ୍ତ ହୋଇଲେ ଏକାଳେ ଦ୍ୱିଜ ଚନ୍ଦ ହେ ।
ସୁଚିବନ୍ତ ରହିଲା ଛାଡ଼ିଣ ଦ୍ୱିଜ ଚନ୍ଦ ହେ ॥

ପୁଣ୍ୟଜନମାନଙ୍କର ହୋଇଲା ହରଷ ହେ ।
ପୁଣ୍ୟଜନମାନଙ୍କର କେବଳ ବରସ ହେ ॥ ୩ ॥

ସେହିପରି 'ଲଳିତଲୋଚନା' କାବ୍ୟରେ ପଣ୍ଡିତ ରାଜା ଚିତ୍ରପଟ ଦର୍ଶନ କରି ବିରୋଧାଭାସର ସୃଷ୍ଟି କରୁ ଅଛନ୍ତି । ଯଥା—

ସେବାକାରୀ ନାମକୁ କହ । ସେବକ ଜନେ ଦୟାବହ ॥
ଅର୍ଜୁନ ନାଶ କରେ ଦକ୍ଷ । ଅର୍ଜୁନଙ୍କର ମହାପକ୍ଷ ॥
କୁଟୀଳ କେଶୀର ଆରମ୍ଭ । କୁଟିଳ କେଶୀ ପ୍ରାଣପନ୍ତ ॥
କୁଣ୍ଡଳୀ ଯାହାର ପୂଜକ । କୁଣ୍ଡଳୀ ଶିରେ ନୃତ୍ୟସକ ॥

## ଅନ୍ତର୍ଲିପି ଓ ବହିର୍ଲିପି—

"ଯୁଗଳରସାମୃତଲହରୀ"ର ପରବର୍ତ୍ତୀ କାବ୍ୟ 'ଯୁଗଳ ରସାମୃତ ଭଉଁରୀ'ରେ କବି ଉକ୍ତ ଅଳଙ୍କାରର ବହୁଳ ପ୍ରୟୋଗ କରିଛନ୍ତି । ଉକ୍ତ କାବ୍ୟର ୪୭ଶ ଛାନ୍ଦର ଅନୁକ୍ରମଣିରେ ଏହାର ପ୍ରୟୋଗ କରିଥିବା କବି ଉଲ୍ଲେଖ କରିଛନ୍ତି ।

କବି 'ଯୁଗଳ ରସାମୃତ ଲହରୀ' ୧୦ମ ଛାନ୍ଦରେ ଶ୍ରୀକୃଷ୍ଣ ଓ ତାଙ୍କ ସଖାଙ୍କ କଥୋପକଥନରେ ଅନ୍ତର୍ଲିପିର ବ୍ୟବହାର କରିଅଛନ୍ତି ।

ଶ୍ରୀଦାମ କୃଷ୍ଣଙ୍କୁ କହିଲେ "ଠାରି କହିଲେ ବୁଝିବକି ?
ବୁଝିଲେ କନ୍ଦସରପଣା ଖାଇବ ନହେଲେ ମାଟି ଖାଇବ" ॥
ଶ୍ରୀଦାମ—"ଖଟରେ ଇନ୍ଦ୍ରାଣୀ ସୁବର୍ଣ୍ଣ ମଧରେ ସୁବର୍ଣ୍ଣମାଳ ପ୍ରାନ୍ତରେ ।
ଯାହାର ନାମଟି ବାହାର ଏଥିରୁ ଅନ୍ତର୍ଲିପି ବୁଝଧୀରେ" ॥ ୨୮ ॥
କୃଷ୍ଣ—"ସେ ବୋଇଲା ଏବେ ଜଣାଯାଇ ସିନା
ବ୍ୟାସେ ଉଲଟ ସର୍ଶୀ ସେ" ॥
"ହରିଣାକ୍ଷୀ କହେ ଶୁଣ ହେ ହରି ।
କଣ୍ଠ ଉପରେ ରଖିଅଛୁ ହରି ।

ତା ଉପରେ କଣ୍ଟା ତା' ଉପରେ ଫଳ
ତାହା ମଧ୍ୟରେ ଫଳ ଦୁଇ ଗୃହ ।
ପୁଣି ଫଳରୁ ଜାତକର ଫଳ
ଏ ଗୋଟିକ ବୃକ୍ଷ କାହା ହାତ" ॥ ୧୩ ॥
(ଯୁଗଳ ରସାମୃତ ଲହରୀ-୩୯ଶ ଛାନ୍ଦ)

**ପ୍ରତିଲୋମାନୁଲୋମପାଦ—**

କବି 'ଯୁଗଳ ରସାମୃତ ଭଉଁରୀ'ର ୨୫ଶ ଓ ୪୭ଶ ଛାନ୍ଦରେ 'ଲୋମବିଲୋମପାଦ'ର ପ୍ରୟୋଗ କରିଥିବା ଉକ୍ତ କାବ୍ୟର ଅନୁକ୍ରମଣିରେ ଉଲ୍ଲେଖ କରିଅଛନ୍ତି । ଏହାଛଡ଼ା କବିଙ୍କର ଅନ୍ୟ କାବ୍ୟରେ ମଧ୍ୟ ଲୋମ-ବିଲୋମର ପ୍ରୟୋଗ ଦେଖାଯାଏ ।

ବଦେ ବନମାଳୀ ମିଳି ମାନବ ଦେବ । ବନ୍ଦେ ମାରବରଜୁ'ନ ବରନ ଦେବ ॥
ହେ ନରଚିତ୍ତଭୃଙ୍ଗ ଭୃଙ୍ଗଚରନହେ । ହେ ଦେବକିହିଁନାଥନାହିଁକିବଦେହ ॥
ସାର ଭଙ୍ଗ ଭଞ୍ଜନ ନ ଭଙ୍ଗି ଭରସା । ସାଦର ବର ଧନ ଧର ବର ଦଶା ॥
ସାରନ୍ତି ଉଦର ପର ହୋଉନ୍ତି ରସା । ସାରଦାସ ବିନାସନା ବିସ ଦାରସା ॥
ବରଗଜମତ୍ତ ଗତି ଗଜ ଗରବ । ବସି ଭୃଙ୍ଗ ନଖ ଲେଖନତ ଭୃସିବ ॥
ଶରଦ ଶଶି ହାସି ସସାଦରସ । ସରସ ଆନନ ବିନା ନଆସ ରସ ॥
(ଯୁଗଳ ରସାମୃତ ଭଉଁରୀ-୨୫ଶ ଛାନ୍ଦ)

ଲୋମ ବିଲୋମ - ବିଲପନମସୁମନ ପଲ୍ଲବ । ବଲବସା ରତ ରସା ବଲ୍ଲବ ॥
ଶରଦ ଆସ ସିସ ଆଦରସ । ସମତାନ ନାସେ ନାନ ତାମସ ॥
(ଯୁଗଳ ରସାମୃତ ଭଉଁରୀ-୪୭ ଛାନ୍ଦ)

**ଲୋମ-ପ୍ରତିଲୋମ-ବିଲୋମ—**

"ତର ତର ତରଳ ବନ୍ଧୁ ପଥର ଏଥର ।
କର କର କର କରଦନା ହୃଦ କାତର ॥ ୫ ॥

ଘନ ଘନ ଘନ ରସ ଘନରସ ବରଷୁ ।
ସକଳ ସକଳରବେ ସକଳ ହୋଇ ପ୍ରକାଶୁ ॥ ୬ ॥

ସୁର ତରଙ୍ଗିଣୀ ସୁରତରଙ୍ଗିଣୀ ଲେଉଠ ।
ତାର ଧାଇ ଧାଇ ଧାଇ ଘୋଷୁ ଏବେ ପାଲଟ ॥ ୭ ॥

ସ୍ତମ୍ଭନାଦ ଚତୁର ଚତୁର ଚତୁଷ୍ଟ ଜନେ ।
ରହ ରହ ରହ ଶବ୍ଦ ପ୍ରତ୍ତ ଲେମାଦ ମନେ" ॥ ୮ ॥

(ଯୁଗଳ ରସାମୃତ ଲହରୀ-୪୬ଶ ଛାନ୍ଦ)

ଏତଦ୍‌ଭିନ୍ନ କବି ନିଜର କେତେକ କାବ୍ୟମାନଙ୍କରେ ଏକାକ୍ଷର ବିଶିଷ୍ଟ ପଦର ପ୍ରୟୋଗ କରିଅଛନ୍ତି । ବିଶେଷ କରି 'ଯୁଗଳ ରସାମୃତ ଲହରୀ' ଓ 'ଯୁଗଳ ରସାମୃତ ଭଉଁରୀ'ରେ ଏହାର ପ୍ରୟୋଗ ଦେଖାଯାଏ ।

"ଷଷ୍ଠ ଛାନ୍ଦେ ଏକବର୍ଣ୍ଣ । ନିୟମ ତହିଁ ଏସନ ॥
'କ' ଅକ୍ଷର ବନାହମେ । ସ୍ୱର ତେସନେ ଏ" ॥ ୭ ॥

(ଯୁଗଳ ରସାମୃତ ଭଉଁରୀ-୪୮ଶ ଛାନ୍ଦ)

ପୂର୍ବୋକ୍ତ ବର୍ଣ୍ଣନାଟିରେ କବି 'ଆଦ୍ୟୋ-ବନା' ନିୟମକୁ ପ୍ରୟୋଗ କରିଅଛନ୍ତି । ଯଥା :- "'କ' ଅକ୍ଷର ବନାହନେ' । ଏହି ସମ୍ପର୍କରେ କବି 'ଯୁଗଳ ରସାମୃତ ଲହରୀ କାବ୍ୟରେ ଉଲ୍ଲେଖ କରିଅଛନ୍ତି ।

"ଆଦ୍ୟୋ-ବନା ନିୟମ ଏକବର୍ଣ୍ଣ ।
ପୁଣି ସ୍ୱବାଦରେ କଷ୍ଟ ଉଦ୍‌ଗୀର୍ଣ୍ଣ ॥ ୪୨ ॥
ରେଫ୍ ଯୁକ୍ତାନ୍ତେ କେତେ ତାତପର୍ଯ୍ୟ,
ଛାନ୍ଦ ସରଲ ଭଣେ କବିସୂର୍ଯ୍ୟ" ॥ ୪୩ ॥

(ଯୁଗଳ ରସାମୃତ ଲହରୀ-୨ୟ ଛାନ୍ଦ)

## ଦୁଇ ଅକ୍ଷର ବିଶିଷ୍ଟ ପଦ—

କବି 'ଲଳିତଲୋଚନା' କାବ୍ୟର ନବମ ଛାନ୍ଦରେ ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦ କୌଶଳ ଦ୍ୱାରା 'ଦଶାବତାର' ସ୍ତୋତ୍ରଟି ବର୍ଣ୍ଣନା କରିଅଛନ୍ତି । ଯଥା—

ମୀନ - ନମୋ ନମ ମୀନ ନାମନ, ମମାନ ମାନ ମାମାନନ ॥
କଚ୍ଛପ - × × ×
କୂର୍ମ - କୂର୍ମ କର୍ମ କର୍ମ ମର୍ମକ, କକ କାମକୁ କୁକୁ କକ ॥
ବରାହ - ଦଂଷ୍ଟ୍ରିଷ୍ଟ ଦୁଷ୍ଟା ଦୁଷ୍ଟ ଦଂଷ୍ଟ୍ରୀ, ଦିଷ୍ଟୀଷ୍ଟୀ, ଦିଷ୍ଟି ଦୁଷ୍ଟି ଦ୍ୟୋଟି ॥
ନୃସିଂହ - ହରିହଂ ହର ହର ହରି, ହାହା ହୁହୁରହିହା ହରି ॥
ପର୍ଶୁରାମ - ଜୟଦ୍ୱିଜ ଯଦ୍ୱାଜ ଦ୍ୱାଜ, ଯଦ୍ୟାଦ ଯଜ୍ୱା ଦ୍ୱଜେ ଯାଜ ॥
ରାମ - ରାମ ମର୍ମା ରାମର ରମ, ମାର ରମ୍ୟର ମାର ରାମ ॥

ବଳରାମ - ବଳବାନ ବଲ୍ଲବ ବଳ, ବଦେବଳା ବଳୋ ବଳ ଖଳ ।
ବୁଦ୍ଧ - ବୁଦ୍ଧି ବୁଧ ବୁଦ୍ଧି ବବୁଦ୍ଧି, ବେଧା ବଧ୍ୱା ବଧ୍ୱ ବା ଧ୍ୱଧୀ ॥
କଳଙ୍କ - କଳ କାଳ କୁଳ କଳଙ୍କ, କଳା କଳା, କଳଙ୍କ କାଳକ" ॥

**ଏକ ଶବ୍ଦର ପୁନରୁକ୍ତି—**

କବି 'ଏକଶବ୍ଦର ପୁନରୁକ୍ତି' ପ୍ରୟୋଗ ଦ୍ୱାରା ନିଜର 'ଶବ୍ଦ-ପାଣ୍ଡିତ୍ୟ'ର ପରିଚୟ ପ୍ରଦାନ କରିଅଛନ୍ତି । ଯଥା—

"କଳା ପର୍ବତ ତଳେ କଳାବଣାକ କୋଳେ କଳା କଳାବୁ ବର୍ତ୍ତରେଟି ।
ବହୂ କାହ୍ନିଁନପାଉ ବହୁ ବୋଲଣା ନୋହୁ ବହୁଳା ବନ ଆଦରେଟି ଗୋ ॥୨॥
ହରି ଦେଖିଲେ ହରି ହରି ନେବଟି ଧରି ହରି କଟିଙ୍କ ମନାକର ।
ହରସୁତା ନିକଟେ ହରି ସେ ସବୁ ଘାଟେ ହରି-ବଦନଟି ତାହାର ଗୋ ॥୩॥

× × ×

"ଚନ୍ଦ୍ରବଳୀ କରଜା ଚନ୍ଦ୍ରାବଳୀର ମଳ୍ଲାବାତେ ପିମ୍ପଳ ପତ୍ର ପରି ।
ଭଣଇ କବିସୂର୍ଯ୍ୟ ହୋଇଲେହେଁ ଅଧୈର୍ଯ୍ୟ କପଟେ ହେଲେ ମହାଧୀର ।
ହେ ସୁଜନେ" ॥ ୮ ॥
(ଯୁଗଳ ରସାମୃତ ଲହରୀ-୭ମ ଛାନ୍ଦ)

**ଚିତ୍ରବନ୍ଧ—**

କବି ସଦାନନ୍ଦ 'ଲଳିତଲୋଚନା' କାବ୍ୟର ୯ମ ଓ ୧୦ମ ଛାନ୍ଦରେ ବିଭିନ୍ନ ଚିତ୍ରବନ୍ଧର ବର୍ଣ୍ଣନା କରିଅଛନ୍ତି ।

ମୁରଲବନ୍ଧ ଏହୁ ଜାଣ । ଯା ସ୍ୱରେ ଦ୍ରବଇ ପାଷାଣ ।
ନମ ନନ୍ଦନନ୍ଦନ ମନ । ନବ ବରବର ବରନ ।
ନନ୍ଦନ ବର ବରସନ । ନବ ରବ ରବ ନନ୍ଦନ ।
ବାହୁଟି ବନ୍ଧ ଦୁଇପଦ । ଅଧରେ ଚୂଡ଼ାଟି ବିଷଦ ।
ଶରଣାଗତ ଗଣା ରସ । ସଦା ମୁର ପରମ ଦାସ ।
ଛୁର ନାଗର ଗରବରେ । ମରେ ବଳେ ଗରବନାରେ ।
ଜାଣ ଏ ବାଜୁ ବାଜୁବନ୍ଧ । ସକଳ ଜନ ମନ ବନ୍ଧ ॥
ବରତ ବରତ ବରତ । ଗୋପିତ ଗୋପିତ ଗୋପିତ ॥
କୁଣ୍ଡଳବନ୍ଧ ଏହୁ ଦୁଇ । କବିଙ୍କ ମାନସ ଭ୍ରମାଇ ॥
ଗିରିଧାରି ଧାଇଖାଇଛୁ । କଳ କାଳ କାଳ ଦଳଛୁ ।
ସୁବର୍ଣ୍ଣ ଖଡ଼୍ଗବନ୍ଧ ଦୁଇ । ଶ୍ୟାମବନ୍ଧୁ କରେ ଶୋହଇ ॥
ପୂର୍ବେ ଯେ ଲୋମ ପ୍ରତିଲୋମ । ସର୍ବେ ହାରବନ୍ଧ ଜାଣିମ ॥

"କଙ୍କଣବନ୍ଧ ଏ ପୁଣି । କବି ଗୁଣକୁ କଥିଣି ।
କୁଣ୍ଡଳୁ କଲି ଶ୍ରାବନ । ପୁଣି କରଇ ସ୍ତବନ ।
ଭବ ବାମ ସମ ରାମ । ରାମ ପ୍ରେମ ଧାମ ହେମ ।
ହେମ ରଜତ ଜଜ୍ୱଳ । ଜାଳଭୁକ କାଳ ଆଳ ।
ଏ ଖଡ଼ଗବନ୍ଧ କ୍ଷାନ୍ତି । କବି ବୁଦ୍ଧି ବଳ୍ଲି ଧାନ୍ତି ।
ପାପତାପ ପରିହରି । ତାତ ମାତ ହୃତକାରୀ ।
ଗିରିଧାରୀ ଜନଧନ । ଜରବର ବରଜନ ।
ଶମ୍ଭୁବନ୍ଧରେ ଏପରି । ବୋଇଲି ସେ ଦଣ୍ଡଧାରୀ ।
ରସା ରସର ସଦୃଶ । ରତି ପ୍ରୀତି ରସ ବଶ ।
ରଦା ଛଦା ରସ ହାସ । ରତ୍ନ ତହ୍ନିଁର ସମ୍ଭାଶ ।
ଏ ଅଷ୍ଟଦଳ ପଙ୍କଜ । ବନ୍ଧ ପ୍ରକାଶିଲି ରଜ ।

× × ×

ଏ ବନ୍ଧ ଊନବିଂଶତି । ଯେଣୁ ହୋଇଲା ବସନ୍ତ" ॥

କବି ସଦାନନ୍ଦ 'ଲଳିତଲୋଚନା' କାବ୍ୟର ୧୦ମ ଛାନ୍ଦରେ ଦତ୍ତଚ୍ୟୁତାକ୍ଷର, ଶୃଙ୍ଖଳା, ଗୋମୂତ୍ରିକା, ମେଷଯୁଦ୍ଧ, ଛଳଶ୍ଳେଷ ଓ ବହ୍ନବାଣୀ ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି । ଯଥା—

"ବିଭକ୍ତି ଲୁପ୍ତ ଏହାର । ଦତ୍ତଚ୍ୟୁତ ହିଁ ଅକ୍ଷର ॥
ଶୃଙ୍ଖଳା ହୁଏ ପ୍ରକାଶ । ଅବା ନାହିଁତ ବିଶେଷ ॥
ଅଗ୍ନିବୀଜ କରେ ଲୋପ୍ୟ । ଅଧବର୍ଣ୍ଣ ହୋଏ ପ୍ରାପ୍ୟ ॥
କପାଟ କପାଟ ଲୋପ୍ୟ । ଗୋମୂତ୍ରିକା ତ ସ୍ୱରୂପ ॥
ମନ୍ତ୍ରୀ ରାଜା ସ୍ୱମ୍ଭୂତ । ମେଷଯୁଦ୍ଧହିଁ ବିଦିତ ॥

× × ×

ବହେ ରହିଁ ମାର ଶୋଭା । ବହ୍ନବାଣୀ ମନଲୋଭା ।
ଛଳଶ୍ଳେଷ ବିନା ଗୀର । ହୁଅଇ କି ମନୋହର" ॥

ଏହାଛଡ଼ା କବି 'ଯୁଗଳ ରସାମୃତ ଭଉଁରୀ' କାବ୍ୟରେ ୨୪ଶ ଛାନ୍ଦରେ ଛଳଶ୍ଳେଷ, ୨୮ଶ ଛାନ୍ଦରେ ଶୃଙ୍ଖଳା ଓ ୪୭ଶ ଛାନ୍ଦରେ ଗୋମୂତ୍ରିକା ଆଦିର ପ୍ରୟୋଗ କରିଥିବା ବିଷୟ ଅନୁକ୍ରମଣିରେ ଉଲ୍ଲେଖ କରିଅଛନ୍ତି ।

**ଛଳଶ୍ଳେଷର ଉଦାହରଣ—**

"ମନ୍ଦହାସେ କହେ ଯୁବତୀ ହେ ପଶୁପତି ଭଲ ଏ ବେଭାର ।
ସବୁ ଅଙ୍ଗ ଲାଗି ଅଳତା କଜ୍ଜଳ ନଳଲୋହିତ ସୁନ୍ଦର ହେ ॥

ସତ ! ଚନ୍ଦ୍ରଲେଖା ଧାରଣ ଉଚିତ ହେ ।
ଏକ କଥା ଦେଖି ଅଶୋଚିତ ହେ ॥
ଗୌଣ ଅର୍ଦ୍ଧାଙ୍ଗେଭ ଆସିଲଚ ହେ ।
ତୁମ୍ଭେ କି ଶିବ ଜାଣି ନୋହେ ତ ହେ" ॥ ୨ ॥

ଆହେ ନନ୍ଦସୁତ ବିବେକ ମହତ ଯାଆ ଆଜ ନ କନ୍ଦାଅ ।
ତୁମ୍ଭ ହୃଦୟ ଅଧିଦେବୀ ଯେ ରୋଷ କରିବେଟି ବୁଝିଥାଅ ହେ ।
ଧୀର ! ତବ ମୌଳିମାଳା ଲାଗି ଯାଉରେ ।
ଲକ୍ଷାଳଙ୍ଛି ଦୁଇ ପଦ୍ମର ହେ । ଏବେ ତା ଯାଇ ଭୂଷଣ କର ହେ
କହୁଁ ଗୁଣ ନାହିଁକି ତୁମ୍ଭର ହେ ॥

## ଶୃଙ୍ଖଳା—

କହେ ସଜନୀ ବାସର । ବାସର ମଣି ପ୍ରାଚିର ।
ପ୍ରାଚିର କଳଶ ମଣି । ସମଣି କିଣି ସେ୍ୱ ॥ ୧ ॥
ଗୋବନ୍ଦ ଶୃଙ୍ଗେ ଝଟକ । ଝଟକ ଧ୍ୱଜ ପ୍ରବଳ ।
ପ୍ରବଳକ୍ଷ ବର୍ଷି ନକ୍ଷତ୍ରମାଳ ସେ୍ୱ ॥ ୨ ॥
କଞ୍ଜନ ଧ୍ୱଜର ତେଜ । ରଚେ ସର୍ବେ ଥିଲେ ସଜ ।
ଲେସ ଜଳେ କି ସମାନ ସେମାନେ ମ୍ଳାନ ସେ୍ୱ ॥ ୩ ॥

## ଗୋମୂତ୍ରିକା—

(ଗୋମୂତ୍ରିକା) - ଶକ୍ତି ସରହେ ଶାରଦା ଝଳକେ ।
ଭକ୍ତି ସହଜେ ଶାରଦା ତୁଳକେ ॥ ୪୧ ॥
ଉମା ରମା ରତି କେତେ ଅଛନ୍ତି ।
ପ୍ରେମାଧମା ପତି ତୋତେ ଇଛନ୍ତି ॥ ୪୨ ॥
ସେମାନେ ତ ଏ ସୁଭାଗି ନୁହଁନ୍ତି ।
ସେମା ସତ ବଶୁ ଯୋଗୀ କହନ୍ତି ॥ ୪୩ ॥

—❀—

# ଚତୁର୍ଥ ପରିଚ୍ଛେଦ

# କବିଙ୍କର ଧର୍ମମତ

## କବିଙ୍କର ଧାର୍ମିକ ଜୀବନର ବିକାଶଧାରା—

କବି ସଦାନନ୍ଦ ଜଣେ ଚୈତନ୍ୟପନ୍ଥୀ ବା ବ୍ରଜପନ୍ଥୀ ବୈଷ୍ଣବ ଓ ବିଶୁଦ୍ଧ ପ୍ରେମଭକ୍ତି ରସର ଉପାସକ । ଏହା କବି ସ୍ୱଗ୍ରନ୍ଥମାନଙ୍କରେ ଉଲ୍ଲେଖ କରିଛନ୍ତି । କବି ବୈଷ୍ଣବାଚାର୍ଯ୍ୟ ବିଶେଷତଃ ଗୋସ୍ୱାମୀମାନଙ୍କର ସଂସ୍କୃତ ଭାଷାରେ ଲିଖିତ ବହୁଗ୍ରନ୍ଥ ଆଲୋଚନା କରିଥିଲେ ଏବଂ ବୈଷ୍ଣବ ଜୀବନରେ ଏଗୁଡ଼ିକୁ ବେଦବତ୍ ପ୍ରାମାଣିକ ଗ୍ରନ୍ଥରୂପେ ଗ୍ରହଣ କରିଥିଲେ ।

କବି ସଦାନନ୍ଦ ବା ସଦାଶିବ ଓତା ପୂର୍ବାଶ୍ରମରେ ସାମବେଦୀ ବ୍ରାହ୍ମଣ ଥିଲେ ଓ ତାଙ୍କର କୁଳଦେବତା ଶ୍ରୀ ଶ୍ରୀ ଲଡ଼ୁକେଶ୍ୱର ମହାଦେବ (ନୟାଗଡ଼ସ୍ଥ ଶରଣକୁଳ)ଙ୍କ ଭକ୍ତ ଥିଲେ । ତେଣୁ କବି ତାଙ୍କର ଆଦ୍ୟ ଜୀବନରେ ବୈଷ୍ଣବ ନଥିଲେ ବରଂ ଜଣେ ନୈଷ୍ଠିକ ଶିବଭକ୍ତ ବ୍ରାହ୍ମଣ ଥିବା ତାଙ୍କ ରଚିତ କାବ୍ୟ କବିତାର ବହୁ ସ୍ଥଳରେ ଉଲ୍ଲିଖିତ ହୋଇଅଛି । ନିବନ୍ଧଟିର ପ୍ରଥମ ପରିଚ୍ଛେଦରେ ଏ ବିଷୟ ବିଶଦ ଭାବେ ଆଲୋଚିତ ହୋଇ-ଅଛି । କବିଙ୍କ ଶିବଭକ୍ତିର ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଛି, କବିଙ୍କ ରଚିତ 'ଶ୍ରୀଲଡ଼ୁକେଶ୍ୱର ଜଣାଣ', ଯାହାକି ଏହି ନିବନ୍ଧର ଦ୍ୱିତୀୟ ପରିଚ୍ଛେଦରେ ପ୍ରଦତ୍ତ କରାଯାଇଅଛି । ସାମବେଦୀ ବ୍ରାହ୍ମଣ ଭାବରେ ଅନ୍ୟାନ୍ୟ ହିନ୍ଦୁ ଦେବଦେବୀଙ୍କ ପ୍ରତି ମଧ୍ୟ କବି ଆସକ୍ତ ଥିବା ତାଙ୍କ ଅନ୍ୟ କାବ୍ୟ କବିତାରୁ ଜଣାପଡ଼େ । 'ନିଷ୍କାମଚିନ୍ତାମଣି' କାବ୍ୟର ପ୍ରଥମ ଛାନ୍ଦରେ କବି ସରସ୍ୱତୀଙ୍କ ବନ୍ଦନା କରିଅଛନ୍ତି । ଶ୍ରୀଜଗନ୍ନାଥଙ୍କ ପ୍ରତି କବିଙ୍କର ଭକ୍ତିଥିବା 'ଲଳିତ ଲୋଚନା' କାବ୍ୟରୁ ଜଣାଯାଏ । ମାତ୍ର ବୈଷ୍ଣବ ଦୀକ୍ଷା ଗ୍ରହଣ କରିବା ପରେ କବି ସମ୍ପୂର୍ଣ୍ଣ ଭାବରେ ଶ୍ରୀଚୈତନ୍ୟଙ୍କଠାରେ ମନ ପ୍ରାଣ ଅର୍ପଣ କରି ବ୍ରହ୍ମଚାରୀ ରୂପେ ଜୀବନ ଅତିବାହିତ କରିବା କଥା ସେ ବହୁବାର ନିଜ କାବ୍ୟାଦିରେ

ସୂଚାଇ ଦେଇଅଛନ୍ତି । ଏହି ନିବନ୍ଧର ପ୍ରଥମ ପରିଚ୍ଛେଦରେ କବିଙ୍କ ଜୀବନୀ ଆଲୋଚନା ପ୍ରସଙ୍ଗରେ ଏ ସମସ୍ତର ପର୍ଯ୍ୟାପ୍ତ ଆଲୋଚନା କରାଯାଇଅଛି । କବି ନିଜ ଶିକ୍ଷାଗୁରୁଙ୍କଠାରୁ ଆଜ୍ଞାପାଇ ବୈଷ୍ଣବଦୀକ୍ଷା ଗ୍ରହଣ କରିଥିଲେ ଏବଂ 'ଭଜ ରାଧା-ହରି' ବୋଲି ଶିକ୍ଷାଗୁରୁ ଯେଉଁ ଆଦେଶ ଦେଇଥିଲେ, ତାହାକୁ ସେ ଅବଜ୍ଞା କରିନଥିଲେ । ଶିକ୍ଷାଗୁରୁଙ୍କ ନାମ କବି ଉଲ୍ଲେଖ କରିନାହାନ୍ତି ଏବଂ ଉକ୍ତ ଗୁରୁ ବୈଷ୍ଣବପନ୍ଥୀ ଥିଲେ କି ନାହିଁ, ତାହା ମଧ୍ୟ ବ୍ୟକ୍ତ କରିନାହାନ୍ତି ।

ନାମ ଶ୍ରୀଲକ୍ଷ୍ମୀକେଶ୍ୱର କୂଳ ଇଷ୍ଟ ମୋର,
ଶିକ୍ଷାଗୁରୁ ଯେଣୁ କଲେ ଆଜ୍ଞା ।
ବୈଇଷ୍ଣବ ଦୀକ୍ଷାକରି ଭଜ ରାଧା ହରି
ସେ କଥା ନକଲି ତ ଅବଜ୍ଞା ॥ ୩୯ ॥
ସାମବେଦ ଅନ୍ତର୍ଗତ ଦ୍ୱିଜକୁଳେ ଜାତ ।
ଏବେ ମୋ ଆଶ୍ରୟ ବ୍ରଜବାମା ।
ବୀର ଶ୍ରୀ ବୀରକେଶରୀ ଦେବ ତେଜ କରି,
ପଦ ପୂର୍ବେ କବିସୂର୍ଯ୍ୟ ବ୍ରହ୍ମା ॥ ୪୦ ॥
(ମୋହନଲତା-୩୧ଶ ଛାନ୍ଦ)
ଅପ୍ରକାଶିତ କାବ୍ୟ

କବି ବୈଷ୍ଣବ ହେବା ପରେ ଗୁରୁଦତ୍ତ ନାମ 'ସାଧୁଚରଣ ଦାସ' ନାମରେ ପରିଚିତ ହୋଇଥିଲେ ।

"ସାଧୁଚରଣ ଦାସ ବୋଲି ଆପଣା ଶ୍ରୀମୁଖେ ଆଜ୍ଞା ହୋଇଛି" ।
(ପ୍ରେମତରଙ୍ଗିଣୀ ୩୬ଶ ଛାନ୍ଦ ୩୮ ପଦ)

"ଶ୍ରୀଗୁରୁଙ୍କ ଆଜ୍ଞା ସାଧୁଚରଣ ବୋଲିଣ ।
ଏହି ନାମ ମୋର ଅଟେ ଜୀବର କାରଣ" ॥ ୧୦ ॥
(ଲଳିତଲୋଚନା-୧ମ ଛାନ୍ଦ)

କିଶୋର ଦାସ ଗୋସ୍ୱାମୀ କବିଙ୍କର ଦୀକ୍ଷାଗୁରୁ ଥିଲେ ଓ ଉକ୍ତ ଗୁରୁଙ୍କ ଆଜ୍ଞାରେ କବି ବୈଷ୍ଣବ ସମ୍ପ୍ରଦାୟ ଭୁକ୍ତ ହୋଇଥିଲେ ।

ବର୍ଣ୍ଣାଶ୍ରମ ଭେଦରେ ବୈଷ୍ଣବ ସଦାନନ୍ଦ ବିଶ୍ୱାସ କରୁନଥିଲେ । ଏଣୁ ତାଙ୍କ ଗୁରୁ ନିମ୍ନ ଶ୍ରେଣୀର ହେଲେ ମଧ୍ୟ ତାଙ୍କୁ ସେ ପ୍ରଭୁ ରୂପରେ ମାନୁଥିଲେ ।

"ବର୍ଣ୍ଣାଶ୍ରମ ଭେଦ ତହିଁ ମୋ ବସ୍ତୁର ନାହିଁ
ଏମନ୍ତ ଯେ ଅଟେ ପ୍ରଭୁ ମୋର ।
ତାଙ୍କ କୃପାକୁ ଇଚ୍ଛଇ, ଅଭାଗ୍ୟ ମୁଁ କାହିଁ
ପାଇବ ଦର୍ଶନ ତାହାଙ୍କର ॥ ୧୬ ॥
ଯେ ଯେ ଶ୍ରୀରାଧାଚରଣ, ଦାସ ନାମେ ପ୍ରାଣ
ବନ୍ଧୁ ମୋହର ସେ ଗଲେ କାହିଁ ।
ଯାଙ୍କ ସଙ୍ଗୁ ନିଷ୍ଠା ମୋର ଯେ ଦେବତାନ୍ତର
ଭକ୍ତି ଛଡ଼ାଇଲେ ତତ୍ତ୍ୱ କହି" ॥ ୧୭ ॥
(ନିଷ୍ଠାମାଳମଣି-୬ଷ୍ଠ ଛାନ୍ଦ)

ଉପରୋକ୍ତ ବର୍ଣ୍ଣନାରୁ ଜଣାଯାଏ କବି ବୈଷ୍ଣବ ଦୀକ୍ଷା ଗ୍ରହଣ କରିବା ପୂର୍ବରୁ 'ରାଧାଚରଣ ଦାସ' ନାମକ ଏକ ପରମ ବୈଷ୍ଣବଙ୍କଠାରୁ ବୈଷ୍ଣବତତ୍ତ୍ୱ ଲାଭ କରିଥିଲେ । ଦାସେ କବିଙ୍କୁ ଭକ୍ତିତତ୍ତ୍ୱ କହି 'ଦେବତାନ୍ତର' ଭକ୍ତି ଛଡ଼ାଇଥିଲେ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବ୍ରଜବାସୀ ଗୋସ୍ୱାମୀ ସମ୍ପ୍ରଦାୟର ବୈଷ୍ଣବ ଥିଲେ । ଯୁଗଳମୂର୍ତ୍ତି ରସତତ୍ତ୍ୱରେ ସ୍ୱକୀୟା ପରକୀୟା ଭାବକୁ କେତେକ ବୈଷ୍ଣବ ଆଦର କରୁନଥିବା ବିଷୟ କବି ସ୍ୱରଚିତ କାବ୍ୟ 'ପ୍ରେମ ତରଙ୍ଗିଣୀ'ର ପଞ୍ଚବିଂଶ ଛାନ୍ଦରେ ଉଲ୍ଲେଖ କରିଅଛନ୍ତି । ପୁଣି ସେ ବୈରାଗୀ ହୋଇ ମଧ୍ୟ, କବିସୂର୍ଯ୍ୟ ବ୍ରହ୍ମା ପଦବୀ ବ୍ୟବହାର କରୁଥିଲେ ।

"କବିସୂର୍ଯ୍ୟ ବ୍ରହ୍ମାପଦ, ଏ ଆସି ମୋତେ ହେଲା ବିପଦ ହେ,
ବିବେକ ଜନେ ! ବୈଷ୍ଣବ କଲେ ବାଦ ହେ" ॥ ୪୫ ॥
(ଯୁଗଳ ରସାମୃତ ଲହରୀ-୬ଷ୍ଠ ଛାନ୍ଦ)

"ସଦାଶିବ କବିସୂର୍ଯ୍ୟ ବ୍ରହ୍ମା, ସଦା ଶରଣ ମୁଁ ବ୍ରଜବାମା" (୩୪ ପଦ)
(ଯୁଗଳ ରସାମୃତ ଲହରୀ-୪୪ଶ ଛାନ୍ଦ)

"ମୋ କବିସୂର୍ଯ୍ୟ ବ୍ରହ୍ମାପଦ, ଶୁଭୁଥାଉଛି ଲୋକେ ଶବଦ
ମୁଁ ଯେ ବୋଲଇ କେହି ନ ବଦ, ନିନ୍ଦେ ପିଶୁନ ହେ" ॥ ୧୨ ॥
(ଯୁଗଳ ରସାମୃତ ଲହରୀ-୪ର୍ଥ ଛାନ୍ଦ)

"ସର୍ବେ ଜାଣିବା ପାଇଁ ଏ ନାମ ଭଣି ।
ସାଧୁଚରଣ ଦାସ ମୁଁ ଥିବ ଜାଣି" ॥ ୩୪ ॥
(ପ୍ରେମ ତରଙ୍ଗିଣୀ-୨୯ଶ ଛାନ୍ଦ)

କବି ଯେ ଚୈତନ୍ୟପନ୍ଥୀ ବା ବ୍ରଜପନ୍ଥୀ ଥିଲେ ଏହା ତାଙ୍କ ସ୍ୱ ରୁ ପରମ୍ପରରୁ ସ୍ପଷ୍ଟ ପ୍ରମାଣିତ ହୁଏ । ସ୍ୱରଚିତ କାବ୍ୟ 'ପ୍ରେମ ତରଙ୍ଗିଣୀ'ର ୩୬ଶ ଛାନ୍ଦର ୩୪ ପଦଠାରୁ ୪୦ ପଦ ମଧ୍ୟରେ ସ୍ପଷ୍ଟ ସୂଚନା ଦେଇଅଛନ୍ତି ।

କବିଙ୍କ ଅନ୍ୟାନ୍ୟ କାବ୍ୟ କବିତାକୁ ବାଦ୍ ଦେଲେ କେବଳ ନିଷ୍ଠାନୀଳମଣି, ନାମଚିନ୍ତାମଣି, ପ୍ରେମକଳ୍ପଲତା, ପ୍ରେମତରଙ୍ଗିଣୀ, ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ପାଠରତ୍ନାବଳୀ, ଚିଟାଉ-ଚନ୍ଦ୍ରୋଦୟ, ବିଶ୍ୱମ୍ଭର ବିହାର, କଣ୍ଠିନଉଜ୍ଜ୍ୱଳ, ଚିତ୍ତତରଙ୍ଗିଣୀ ଓ ବ୍ରଜ-ଲୀଳାମୃତ ସମୁଦ୍ର ପ୍ରଭୃତିକୁ ଆଲୋଚନା କଲେ ଦେଖାଯିବ ସଦାନନ୍ଦ ଶ୍ରୀଚୈତନ୍ୟ ଅନୁଗତ ଜଣେ ପରମ ବୈଷ୍ଣବ କବି ଓ ବିଶୁଦ୍ଧ ପ୍ରେମଭକ୍ତିର ଏକନିଷ୍ଠ ଉପାସକ । କବିଙ୍କ ରଚିତ ନିମ୍ନ ଜଣାଣଟି ଉକ୍ତ ଉକ୍ତିର ଜ୍ୱଳନ୍ତ ପ୍ରତୀକ ।

## —ଶ୍ରୀଚୈତନ୍ୟ ଜଣାଣ—

( ଘୋଇବାଣୀ )

"ଆହେ କୃଷ୍ଣ ଚଇତନ୍ୟ ପତିତପାବନ ଏ ଦୀନରେ ବାରେ କୃପାକର ।
କୋଟି କୋଟି ଦୁରାଚାର କରିଛ ଉଦ୍ଧାର ଦ୍ରବୀଭୂତ ହୁଅ ଏକବାର ॥ ୧ ॥
ତୁମ୍ଭ ବିନା ଏ ସଂସାର ଭିତରେ ମୋହର କେ ଅଛି ଶରଣ ମନେକର ।
ଯେବେ କରୁଅଛ ହେଳା ଭବଜଳେ ଭେଳା ବୁଡ଼ିଲାହିଁ ହେ ଉଦ୍ଧରି ଧର ॥୨॥
ତୁମ୍ଭ ଦୀନବନ୍ଧୁ ନାମ ସାର୍ଥକର ପ୍ରେମଦାତା ବୋଲି ତ୍ରିଭୁବନେ ଭରେ ।
ଯେବେ କରିବ ନିରାଶ ନାହିଁଟି ମୋ ଦୋଷ କାଳି ନିନ୍ଦା ହେବ ବିଶ୍ୱରରେ ॥୩॥

## ଉପାସ୍ୟ ଦେବତା ଓ ଉପାସନା ପଦ୍ଧତି—

ଶ୍ରୀକୃଷ୍ଣ ଚୈତନ୍ୟ କବି ସଦାନନ୍ଦଙ୍କର ଉପାସ୍ୟ ଦେବତା ଥିଲେ ଓ କବି ତାଙ୍କୁ ପୂର୍ଣ୍ଣ ଅବତାର ବୋଲି ସ୍ୱୀକାର କରୁଥିଲେ । କବି ଶ୍ରୀଚୈତନ୍ୟଙ୍କୁ ରାଧାକୃଷ୍ଣଙ୍କ ମିଳିତ ଅବତାର ବୋଲି ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କୁ ଓ ଶ୍ରୀକୃଷ୍ଣଙ୍କୁ ଅବତାରୀ ବୋଲି ପ୍ରତିପାଦନ କରି ପ୍ରେମ ତରଙ୍ଗିଣୀରେ ଉଲ୍ଲେଖ କରିଅଛନ୍ତି ।

ପୁଣି ଭକ୍ତଭାବ ଅଙ୍ଗୀକାର କରି ରାଧାକୃଷ୍ଣ ରସେ ଭୋଳା ।
ହରି ବୋଲି ବୋଲି ଊର୍ଦ୍ଧ୍ୱେ ବାହୁ ତୋଳି ଦ୍ରବାଇଲେ ଦାରୁଶିଳା ॥ ୩୦ ॥
ପୁନରପି ହରି ପ୍ରକଟେ ସନ୍ନ୍ୟାସ ତୀର୍ଥ ଭ୍ରମଣ ଛଳରେ ।
ମହା ମହାପାତକୀଙ୍କି ଉଦ୍ଧରିଲେ ସ୍ୱମହିମା ପ୍ରକାଶରେ ॥ ୩୧ ॥

କେତେ ଦିନ ରାଧାଭାବ ଅଙ୍ଗୀକାର କରି କୃଷ୍ଣର ବିରହେ ।
ମହା ଉନ୍ମାଦ ସାତ୍ତ୍ୱିକ ପୂର୍ଣ୍ଣ ବନ୍ଧୁ କୃଷ୍ଣ ବୋଲି ପଡ଼େ ମୋହେ ॥ ୩୨ ॥

ଅଗୋଚର ରସାମୃତ କୃପାକରି ପିଆଇଲେ ଭକ୍ତଗଣେ ।
ଅଷ୍ଟଚ୍ଚାଳିଶ ବରଷେ ଅନ୍ତର୍ଦ୍ଧାନ ଟୋଟା ଗୋପୀନାଥ ସ୍ଥାନେ ॥ ୩୩ ॥

(ପ୍ରେମ ତରଙ୍ଗିଣୀ-୩୬ଶ ଛାନ୍ଦ)

(ଗୌରବତାର - ରାସବିହାରୀ ମଠ କଟକଙ୍କ ଦ୍ୱାରା ଖ୍ରୀ: ଅ ୧୯୩୧ରେ ପ୍ରକାଶିତ)

ପୂର୍ବୋକ୍ତ ବର୍ଣ୍ଣନାରେ କବି ଶ୍ରୀଚୈତନ୍ୟଙ୍କୁ 'ସର୍ବ ଅବତାରର ବୀଜ' ବୋଲି ବର୍ଣ୍ଣନା କରିଅଛନ୍ତି । କୃଷ୍ଣାବତାରରେ ତିନବାଞ୍ଛା ପୂର୍ଣ୍ଣ ନହେବାରୁ ଅବତାରୀ କୃଷ୍ଣ ସର୍ବ ଅବତାରର ସ୍ୱଭାବ ଧାରଣ କରି ଭକ୍ତଭାବ ଅଙ୍ଗୀକାର କରି ନିଜ ରସ ନିଜେ ଆସ୍ୱାଦନ କରିବା ପାଇଁ ଓ ରାଧାକୃଷ୍ଣ ପ୍ରେମରସତତ୍ତ୍ୱ ଭକ୍ତମାନଙ୍କ ଗୋଚରୀଭୂତ କରିବା ପାଇଁ 'ଶ୍ରୀଚୈତନ୍ୟ ଅବତାର' (ରାଧାକୃଷ୍ଣଙ୍କ ମିଳିତ ଅବତାର) ହେବା କଥା ଉଲ୍ଲେଖ କରିଛନ୍ତି (୧) ।

କବି ଶ୍ରୀକୃଷ୍ଣ ଚୈତନ୍ୟଙ୍କୁ ନିଜର ଇଷ୍ଟ ଭାବେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ପ୍ରସିଦ୍ଧ ଉଜ୍ଜ୍ୱଳରସର ମହିମାଗାନ କରିଅଛନ୍ତି ।

କବି କେବଳ ରାଗାନୁଗା ଭକ୍ତି ରସାତ୍ମକ ଶ୍ରୀରାଧାକୃଷ୍ଣ ଲୀଳା ବିଷୟକ କାବ୍ୟ କବିତା ରଚନା କରି ତୃପ୍ତ ହୋଇନାହାନ୍ତି । ବିଶୁଦ୍ଧ ବ୍ରଜପନ୍ଥୀ ବୈଷ୍ଣବ ଭାବରେ କେତେକ ଗୋସ୍ୱାମୀ ଗ୍ରନ୍ଥ ଓଡ଼ିଆରେ ଅନୁବାଦ କରିବା ସଙ୍ଗେ ସଙ୍ଗେ (ଚନ୍ଦ୍ର ତରଙ୍ଗିଣୀ, ବ୍ରଜଲୀଳାମୃତ ସମୁଦ୍ର, କାର୍ତ୍ତିକ ଉଜ୍ଜ୍ୱଳ ପ୍ରଭୃତି) ଶ୍ରୀଚୈତନ୍ୟଙ୍କ ଜୀବନୀ ସମ୍ବଳିତ 'ବିଶ୍ୱମ୍ଭର ବିହାର'

---

(୧) "ଅନର୍ପିତଚରୀଂ ଚିରାତ୍ କରୁଣୟାବତୀର୍ଣ୍ଣଃ କଲୌ ।
ସମର୍ପୟିତୁମୁନ୍ନତୋଜ୍ଜ୍ୱଳରସାଂ ସ୍ୱଭକ୍ତି ଶ୍ରିୟମ୍" ॥

ଅର୍ଥାତ୍ ଶ୍ରୀଚୈତନ୍ୟ କଳିଯୁଗରେ ଅବତାର କର୍ତ୍ତୃକ ଅନର୍ପିତ ମୁଖ୍ୟ ଉଜ୍ଜ୍ୱଳ ରସ ସମ୍ପୂର୍ଣ୍ଣ । ଭକ୍ତି ପ୍ରଦାନାର୍ଥ କୃପାବଶରେ ଅବତୀର୍ଣ୍ଣ ହୋଇଅଛନ୍ତି ।

(ଶ୍ରୀଚୈତନ୍ୟ ଚରିତାମୃତ - ଆଦିଲୀଳା)

ନାମକ ଏକ ବୃହତ କାବ୍ୟ ଏବଂ ବୈଷ୍ଣବ ପାଠବର୍ଣ୍ଣିତ ଗ୍ରନ୍ଥ 'ପାଠ-ରତ୍ନାବଳୀ' ରଚନା କରିଅଛନ୍ତି । 'ବିଶ୍ୱମ୍ଭର ବିହାର' କାବ୍ୟଟି କବି ସମ୍ପୂର୍ଣ୍ଣ କରିପାରିନାହାଁନ୍ତି । ଏଥିରେ କବି ଶ୍ରୀଚୈତନ୍ୟଙ୍କୁ ଅବତାରୀ ଶ୍ରୀକୃଷ୍ଣଙ୍କର ପରିପୂର୍ଣ୍ଣ ଅବତାର ରୂପେ ପ୍ରତିପାଦନ କରି ଶ୍ରୀଚୈତନ୍ୟ ବାଲ୍ୟକାଳରେ ତାଙ୍କ ପୂର୍ବଜନ୍ମର ଲୀଳା ଯଥା—ଶ୍ରୀକୃଷ୍ଣାବତାର ସମୟର ବାଲ୍ୟଲୀଳା ସ୍ମରଣକରି ବିରହଗ୍ରସ୍ତ ହେଉଥିବା ଚିତ୍ର ପ୍ରଦାନ କରିଅଛନ୍ତି ।

ବନ୍ଧୁହେ ଶୁଣ ସୁମର ପୂର୍ବକଥା, ବିଶ୍ୱମ୍ଭର ଲୋଟେ ମହୀ ।
ବାପ ବ୍ରଜେଶ୍ୱର ନନ୍ଦଘୋଷ ମୋର, ଯଶୋଦା ଜନନୀ କାହିଁ ॥ ୧ ॥

ବଳଥାଇ ଅଗ୍ର ପରସେ ଯେ ସ୍ନେହେଁ, ବୃନ୍ଦାଦମ୍ଭା ମୋ ରୋହିଣୀ ।
ବୃନ୍ଦାମାତା ଶୁଣି ପୌର୍ଣ୍ଣମାସୀ ଆଣି, କାହିଁ ଗୋପ ଠାକୁରାଣୀ ॥ ୨ ॥

ପୁନଶ୍ଚ କବି ଯୁଗାବତାର ଶ୍ରୀଚୈତନ୍ୟଙ୍କ ସମ୍ପର୍କରେ ପାଠ-ରତ୍ନାବଳୀରେ ଦ୍ୱାଦଶ ବୈଷ୍ଣବ ଶାଖାଙ୍କ ଶ୍ରୀପାଟ ଦର୍ଶନର ବିସ୍ତୃତ ବର୍ଣ୍ଣନା କରିଅଛନ୍ତି ।

ନମସ୍ତେ ଗଉର କିଶୋର । ସେ କଳିଯୁଗେ ଅବତାର ॥ ୭ ॥

× × ×

ବୃନ୍ଦାବନରେ ଯେତେ ଲୀଳା । ରସ ଆବେଶେ ହୋଇ ଭୋଳା ॥
ସେ ରସ ଆସ୍ୱାଦନ ଅର୍ଥେ । ପ୍ରକାଶ ହୋଇଲେ ଜଗତେ ॥ ୨୦ ॥
ବହୁତ ରୂପ ଅଛି ମୋର । ଗୋପାଳ ରୂପ ନଟବର ॥
ସର୍ବ ରୂପରେ ଶିରୋମଣି । ଶ୍ୟାମ ତ୍ରିଭଙ୍ଗୀ ବେଣୁପାଣି ॥ ୩୧ ॥
ଧନ୍ୟ ବୃଷଭାନୁ ଦୁହିତା । ସେ ରୂପେ ଆସ୍ୱାଦ ଲୋଭିତା ॥ ୩୨ ॥
ଏ ଲାଗି ସାଗରେ ଝାସିବି । ଏମନ୍ତ କାମନା କରିବି ॥ ୩୩ ॥

---

ବିଭିନ୍ନ ପାଟଦର୍ଶନ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ସେ ଆଶ୍ରା ପାଇ ମନ ତୋଷ । ଶାଖା ଦରଶନେ ଲାଳସ ॥ ୮୦ ॥
ଦ୍ୱାଦଶ ଶାଖାଙ୍କ ଶ୍ରୀପାଟ । ଦର୍ଶନେ ମାନସ ଉଚ୍ଚାଟ ୮୧ ॥
ଚଉଷଠି ମହାନ୍ତଙ୍କର । ଶ୍ରୀପାଟ ଦର୍ଶନ ବିସ୍ତର ॥ ୮୨ ॥
ଉପଶାଖାଙ୍କ ପାଟକିଛି । ଦେଖିବାକୁ ସେ ମନେଇଛି" ॥ ୮୩ ॥

(ପାଠରତ୍ନାବଳୀ-୧ମ ଛାନ୍ଦ,
ଅପ୍ରକାଶିତ, ବାଣୀବିହାରସ୍ଥ ପୋଥିବିଭାଗରୁ ପ୍ରାପ୍ତ)

ପୁରୁଷ ଅଙ୍ଗ ହେବ ମୁହିଁ । ରାଧା ହୋଇବ ଭାବଗ୍ରାହୀ ॥ ୩୪ ॥
ବୋଲେ ହେ ଦାରୁଣ ମାଧବ । ନ ଜାଣ କାମ ଅନୁଭବ ॥ ୩୫ ॥
ତେବେ ଜାଣିବ ପ୍ରୀତିକ୍ଳେଶ । ହୋଇବ ସର୍ବ ଗର୍ବ ନାଶ ॥ ୩୬ ॥
ଏ କଥା ଅପ୍ରମାଣ ନୋହେ । ଏ ରୂପ ମୋର ସର୍ବ ମୋହେ ॥ ୩୭ ॥
ଏଣୁ ମୁଁ ରାଧାଭାବ ଘେନ । ଜନମ ହୋଇଛି ଅବନୀ ॥ ୩୮ ॥
ମୋ ରସ ଆସ୍ୱାଦଛି ମୁହିଁ । ଶ୍ରୀରାଧା ଭାବ କାନ୍ତି ବହି ॥ ୩୯ ॥

କବି ଶ୍ରୀକୃଷ୍ଣ ଚୈତନ୍ୟଙ୍କୁ ନିଜର ପରମ ଇଷ୍ଟ ଭାବରେ ଭକ୍ତି ଓ ଉପାସନା କରୁଥିଲେ ମଧ୍ୟ ଅନ୍ୟାନ୍ୟ ଦେବାଦେବୀଙ୍କୁ 'ନ ନିନ୍ଦ ନ ବନ୍ଦ' ବ୍ୟବହାର ପ୍ରଯୁଜ୍ୟ ବୋଲି ସ୍ୱରଚିତ କାବ୍ୟ 'ନିଷ୍ଠାମଳମଣି'ରେ ଉଲ୍ଲେଖ କରିଅଛନ୍ତି । କବିଙ୍କ ମତରେ ଅନ୍ୟାନ୍ୟ ଦେବଦେବୀଙ୍କଠାରେ ଈଶ୍ୱର ଶକ୍ତି ନ୍ୟୂନାଧିକରେ ଅଛି ଓ ସମସ୍ତେ କୃଷ୍ଣଙ୍କର ଆଶ୍ରିତ । କୃଷ୍ଣ ସର୍ବଶକ୍ତିମାନ୍, ନିତ୍ୟ ତତ୍ତ୍ୱମୟ ଓ ସମସ୍ତଙ୍କର ଆଶ୍ରୟଦାତା । 'ଗଣେଶ'ଙ୍କୁ ଅଗ୍ରପୂଜ୍ୟ ଭାବି ଉପାସନା କରିବ ଓ ଭକ୍ତିରେ ବିଘ୍ନ ନ ପଡ଼ିବା ପାଇଁ ପ୍ରାର୍ଥନା କରିବ । ଶିବ ବିଷ୍ଣୁ ଅଭିନ୍ନ ଓ ଶିବ ବୈଷ୍ଣବାଗ୍ରଣୀ, ତେଣୁ ତାଙ୍କ ଚରଣ ବନ୍ଦନା କରିବ । ପ୍ରକୃତି ଭଗବତୀ ଓ ଦୁର୍ଗା କୃଷ୍ଣଙ୍କ ତାମସ ଶକ୍ତି । କୃଷ୍ଣଙ୍କ ଆଜ୍ଞାରେ ସେମାନେ ସଂସାର ପାଳନ କରୁଥିବା ହେତୁ ତାଙ୍କୁ ଉପାସନା କରିବ । ମାତ୍ର ଶାକ୍ତଙ୍କ ପରି ପୂଜାରେ ଛାଗ ମହିଷି ବଳିଦାନ କରିବ ନାହିଁ । ଚନ୍ଦ୍ର ସୂର୍ଯ୍ୟଙ୍କୁ ମଧ୍ୟ ଅବହେଳା କରିବ ନାହିଁ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବ୍ରହ୍ମାଣ୍ଡର ଜନ୍ମ, ପାଳନ ଓ ସଂହାର କର୍ତ୍ତା । ଏମାନଙ୍କୁ କୃଷ୍ଣଙ୍କ ଅବତାର ଜାଣି ଆଦର କରିବ ।

ବୈଷ୍ଣବଙ୍କର ହରି କେବଳ ପ୍ରଭୁ । ତାଙ୍କର ନିର୍ମାଲ୍ୟ ସେବାକରି ବ୍ରଜେନ୍ଦ୍ର ନନ୍ଦନଙ୍କୁ ପାଇବାହିଁ ବୈଷ୍ଣବର କାମ୍ୟ । କବି ବୈକୁଣ୍ଠର ଲକ୍ଷ୍ମୀ ନାରାୟଣଙ୍କ ଅପେକ୍ଷା ଓ ଦ୍ୱାରକାର କୃଷ୍ଣଙ୍କ ଅପେକ୍ଷା ବ୍ରଜ ବା ବୃନ୍ଦାବନର 'ଶ୍ରୀରାଧାକୃଷ୍ଣଗୋପୀ'ଙ୍କ ଲୀଳାର ଜୟଗାନ କରିଛନ୍ତି । ଏହି ଲୀଳା ଅନ୍ୟ ଲୀଳାଠାରୁ ଶ୍ରେଷ୍ଠ ଓ ପରିପୂର୍ଣ୍ଣ । କାରଣ ଏଥିରେ ନବରସ ଓ ଶୃଙ୍ଗାରମାଧୁର୍ଯ୍ୟ ରହିଅଛି । ଏଥିରେ ସୁଧାକରରୁ ସୁଧାଧାର ଧାର ଧାର ହୋଇ ସ୍ରବୁଛି । ତେଣୁ କବିଙ୍କ ମତରେ ଏହି 'ବୃନ୍ଦାବନ କୃଷ୍ଣ'ହିଁ ବୈଷ୍ଣବର ପ୍ରାଣନାଥ ।

ଶୁଣରେ ଚିତ୍ତ ମୋର କରି ବିଚାର କେବଳ ଈଶ୍ୱର ସେ ଏକ ।
ଯେତେ ଏ ସୁରାସୁର ନରଜୀବ ମାତର ତଥାପି ତୋତେ ସେ ଅଧିକରେ ।

ଆରେ ମନ ! ନ୍ୟୂନାଧିକ ଅଛୁ ଶକ୍ତିରେ
ନ ନିନ୍ଦ ନ ବଦ ବେଶ୍ଭରେ ॥
କେବଳ ସର୍ବାଶ୍ରୟ ନିତ୍ୟ ତତ୍ତ୍ୱ ନିଷ୍ଟୟ କୃଷ୍ଣଙ୍କୁ ଭଜ ନିରନ୍ତରରେ;
ଆରେ ମନ; ମହାଦେବ ନନ୍ଦନ ଗଣେଶ ଏଥୁଁ ଭିନ୍ନ
ଅଗ୍ରପୂଜ୍ୟ ସେ ଦଇବରେ ॥ ୧ ॥

କବି ସଦାନନ୍ଦ ଯୁଗଳମୂର୍ତ୍ତିର ଉପାସକ । 'ଚୈତନ୍ୟଚନ୍ଦ୍ର' ହେଉଛନ୍ତି କୃଷ୍ଣ ଓ 'ଗଦାଧର' ହେଉଅଛୁ 'ରାଧା' । ଏହି ଗୌଡ଼ୀୟ ଭାବରେ କବି ସମ୍ପୂର୍ଣ୍ଣ ଅନୁପ୍ରାଣିତ ହୋଇ ସ୍ୱଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ।

"ଗଦାଧର ବିନା ଯେହୁ ଗୌରାଙ୍ଗ ଭଜଇ ।
ନିଷ୍ଫଳ ତା ଭଜନ ପାଇବ ଅବା କାହିଁ ଯେ" ॥ ୨୩ ॥
(ନିଷ୍କାମଚିନ୍ତାମଣି-୩ୟ ଛାନ୍ଦ)

"ତଥାହି ରସିକ ପ୍ରିୟାୟାଂ - ଗଦାଧର ବିନାଯସ୍ତୁ ଗୌରଚନ୍ଦ୍ର
ମୁପାସତେ ।
ନିଷ୍ଫଳ ଭଜନଂ ତସ୍ୟ ରସଭକ୍ତି ର୍ନଲଭ୍ୟତେ" ॥
(ନିଷ୍କାମଚିନ୍ତାମଣି-୩ୟ ଛାନ୍ଦ)

"ବାହ୍ୟ ଲୋକେ ନାହିଁ ଜ୍ଞାତ, ବୁଝ ରସିକ ଭଗତ ,
ବୃଷଭାନୁ ସୁତା ଗଉରାଙ୍ଗ ସଙ୍ଗେ ଶ୍ରୀ ଗଦାଧର ପଣ୍ଡିତ ॥ ୧ ॥
ବୃନ୍ଦାବନେ ସ୍ୱକ୍ତ ରାଧାପ୍ରେମ ଭକ୍ତି ପ୍ରଦାୟିନୀ ଏ କଳିରେ ॥ ୨ ॥
ବହିରେହା ଗୌରାଙ୍ଗର ବୋଲାଇଲେ ଗଦାଧର
ବିଧିରେ ପଣ୍ଡିତ ନାମ ଖ୍ୟାତ ସର୍ବ ଭକ୍ତ ତାର ସୁଧାକର ॥ ୩ ॥
ତଥାହି ରାଧାତନ୍ତ୍ରେ—"ବୃନ୍ଦାବନେଶ୍ୱରୀ ରାଧା ପ୍ରେମଭକ୍ତି
ପ୍ରଦାୟିନୀ କଳୌ ଗୌରାଙ୍ଗ ଦଇତ ଶ୍ରୀଗଦାଧର ପଣ୍ଡିତ" ॥
(ବିଶ୍ୱମ୍ଭର ବିହାର-୪ର୍ଥ ଛାନ୍ଦ)

କବି ସଦାନନ୍ଦ ପ୍ରତିଷ୍ଠିତ ଦକ୍ଷିଣପଡ଼ା ମଠରେ ରାଧାକୃଷ୍ଣ ଯୁଗଳ-ମୂର୍ତ୍ତି ପ୍ରତିଷ୍ଠା କରି ଉପାସନା କରୁଥିବା କଥା ତାଙ୍କ ଗ୍ରନ୍ଥମାନଙ୍କରୁ ଜଣାପଡ଼େ । ଏହି ଯୁଗଳମୂର୍ତ୍ତିଙ୍କ ନାମ 'ରସେଶ୍ୱରୀ ରସିକର୍' ବୋଲି କବି ରଖିଥିଲେ ।

କବି ନିଜର ଉପାସ୍ୟ ଦେବତାଙ୍କୁ 'ରସେଶ୍ୱରୀ ରସିକରାୟ' ନାମକରଣ କରିଥିବାରୁ ଅନୁମାନ କରାଯାଏ ଯେ, କବି ଶ୍ୟାମାନନ୍ଦ

ଉପସମ୍ପ୍ରଦାୟର ବୈଷ୍ଣବ ଥିଲେ । ଶ୍ୟାମାନନ୍ଦ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ ଓ ସେ ଷଡ଼ଗୋସ୍ୱାମୀଙ୍କ ମଧ୍ୟରୁ ଅନ୍ୟତମ । 'ଜୀବଗୋସ୍ୱାମୀ'ଙ୍କ ଶିଷ୍ୟ ଥିଲେ । ଶ୍ୟାମାନନ୍ଦ ଓ ତାଙ୍କ ଶିଷ୍ୟ ରସିକାନନ୍ଦ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଚୈତନ୍ୟଧର୍ମର ପ୍ରଚାର କରିଥିଲେ । ଏହି ସମ୍ପ୍ରଦାୟର ବୈଷ୍ଣବମାନେ 'ମଦନମୋହନ' ବା 'ରସିକରାୟ' ନାମରେ କୃଷ୍ଣ,ରାଧା ଓ ଶ୍ରୀଚୈତନ୍ୟ ପୂଜା କରନ୍ତି ।

କବି ସ୍ୱରଚିତ 'ପାଟରତ୍ନାବଳୀ'ରେ ଶ୍ୟାମାନନ୍ଦ ଓ ରସିକାନନ୍ଦଙ୍କ ବିଷୟରେ ଅଲୌକିକ ଘଟଣାମାନ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଠ ପରିଦର୍ଶନ କରିଥିବା ବିଷୟ ଉଲ୍ଲେଖ କରିଅଛନ୍ତି ।

ଶ୍ରୀମହାପ୍ରଭୁଙ୍କର ସେ ଭୃତ୍ୟ । ଗଉର ଦାସ ଯେ ପଣ୍ଡିତ ॥ ୨୩ ॥
ତାହାଙ୍କ ପାଦ ସେବାକାରୀ । ହୃଦୟାନନ୍ଦ ଅଧିକାରୀ ॥ ୨୪ ॥
ତାଙ୍କର ଶିଷ୍ୟ ଶ୍ୟାମାନନ୍ଦ । ଯାହାକୁ ପ୍ରସନ୍ନ ଗୋବିନ୍ଦ ॥ ୨୫ ॥
ଯେ କୁଞ୍ଜ ମାର୍ଜନ କାଳରେ । ଶ୍ରୀରାଧା ନୂପୁର ପାଇଲେ ॥ ୨୬ ॥
ନିତ୍ୟସିଦ୍ଧା ଏ ମାଗିନେଇ । ନୂପୁର ଚିହ୍ନ ଭାଲେ ଦେଇ ॥ ୨୭ ॥
ଅନୁସେବକ କରିଗଲେ । ମଧୁର ରସ ଭକ୍ତ କଲେ ॥ ୨୮ ॥
ସଖାଙ୍କ ଭକ୍ତି କଲେ ତ୍ୟାଗ । ମଧୁରେ ବଢ଼ାଇଲେ ରାଗ ॥ ୨୯ ॥
କୃଷ୍ଣର ଆଜ୍ଞା ହେଲା ତାଙ୍କୁ । ତୁ ବେଗେ ଚଳ ଉତ୍କଳକୁ ॥ ୩୦ ॥
ପଥେ ଦୁଷ୍ଟଜୀବଙ୍କ ଖଣ୍ଡ । ସାଧୁ ଯେ ଚମି ନପାରନ୍ତି ॥ ୩୧ ॥
ସେ ସ୍ଥାନେ ଭକ୍ତି ପ୍ରବର୍ତ୍ତାଅ । ପଶୁ ମନୁଷ୍ୟଙ୍କୁ ବୁଝାଅ ॥ ୩୨ ॥
ତେଣୁ ଗୋପୀବଲ୍ଲଭ ପୁରେ । ସେ ବସାକଲେ ସୁବର୍ଣ୍ଣରେ ॥ ୩୩ ॥
ଅରଣ୍ୟ ହସ୍ତୀ ଅଜଗର । ହରିନାମରେ କରି ଧୀର ॥ ୩୪ ॥
ବ୍ୟାଘ୍ରକୁ ଦେଲେ ହରିନାମ । କଲେ ସେ ଆନନ୍ଦେ ଆଶ୍ରମ ॥ ୩୫ ॥
ଶିଷ୍ଟ କରଣ କୁଳେ ଜନ୍ମ । ରସିକାନନ୍ଦ ତାଙ୍କ ନାମ ॥ ୩୬ ॥
ତାଙ୍କର ପ୍ରିୟ ଶିଷ୍ୟେ ଏହି । ଏହାଙ୍କୁ ଗାଦି ଗଲେ ଦେଇ ॥ ୩୭ ॥
ଏହାଙ୍କ ଗୁଣ ଅକଥନ । ନଯାଇ ମାନବଙ୍କ ଯା ବଚନ ॥ ୩୮ ॥

(ପାଟରତ୍ନାବଳୀ-ଦ୍ୱିତୀୟ ଅଧ୍ୟାୟଃ)

"ବୈଷ୍ଣବ କବି ସାଧୁଚରଣ ଦାସ ଚୈତନ୍ୟପନ୍ଥୀ ବା ମାଧ୍ୱପନ୍ଥୀ ବୈଷ୍ଣବ" ଥିବା ବିଷୟ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ସ୍ୱଲିଖିତ ସମାଲୋଚନା

ପୁସ୍ତକ 'ଓଡ଼ିଆ ସାହିତ୍ୟର ଇତିହାସ' ତୃତୀୟ ଭାଗ ପୃଷ୍ଠା ୩୫୪ରେ ଉଲ୍ଲେଖ କରିଅଛନ୍ତି ।

ଶ୍ରୀଚୈତନ୍ୟ ଈଶ୍ୱରଙ୍କ ଅବତାର ହୋଇଥିଲେ ହେଁ ତାଙ୍କୁ ମାଧବେନ୍ଦ୍ର ପୁରୀଙ୍କ ଶିଷ୍ୟ ଈଶ୍ୱରପୁରୀଙ୍କଠାରୁ ମନ୍ତ୍ରଦୀକ୍ଷା ଗ୍ରହଣ କରିବାକୁ ହୋଇଥିଲା । ତାଙ୍କର ଗୁରୁ ପରମ୍ପରା ଏହିପରି—




ତେଣୁ କବି ସଦାନନ୍ଦ ଚୈତନ୍ୟପନ୍ଥୀ ବୈଷ୍ଣବ ହୋଇଥିବାରୁ ମାଧ୍ୱାଚାର୍ଯ୍ୟ ସମ୍ପ୍ରଦାୟଭୁକ୍ତ ହୋଇଥିବା ସୁସ୍ପଷ୍ଟ । ତାଂକ ମତରେ ଶ୍ରୀବ୍ରହ୍ମ, ରୁଦ୍ର ଓ ସନକ ଚାରି ବୈଷ୍ଣବ ସମ୍ପ୍ରଦାୟର ଚାରିଧାମ ହେଉଛି ରାମେଶ୍ୱର, ବଦରିକାଶ୍ରମ, ଦ୍ୱାରକା ଓ ଶ୍ରୀପୁରୁଷୋତ୍ତମ । (୨)

ଚାରି ଗୁରୁଂକର ଚାରିଗୋଟି ସମ୍ପ୍ରଦାୟ ଓ ଚାରିଧାମ—

ରାମାନୁଜ — ଶ୍ରୀ — ରାମନାଥ
ମାଧ୍ୱାଚାର୍ଯ୍ୟ — ବ୍ରହ୍ମ — ବଦରିକାଶ୍ରମ
ବିଷ୍ଣୁସ୍ୱାମୀ — ରୁଦ୍ର — ଦ୍ୱାରିକା
ନିମ୍ବାର୍କ — ସନକ — ପୁରୁଷୋତ୍ତମ

---

(୨) ସେବ୍ୟ ସେବକ ସମ୍ବନ୍ଧ ବୈଷ୍ଣବର କୃଷ୍ଣ ପ୍ରଭୁ ଆମ୍ଭେ ଦାସ ।
ଶ୍ରୀ ବ୍ରହ୍ମ ରୁଦ୍ର ସନକ ସମ୍ପ୍ରଦାୟ ଚତୁର ରୂପେ ପ୍ରକାଶ ।। ୮ ।।
ଶ୍ରୀ ଯେ ଲକ୍ଷ୍ମୀ ତାଂକ ମତରେ ପ୍ରକାଶ ହୋଇଲେ ଯେ ରାମାନୁଜ ।
ବ୍ରହ୍ମାଙ୍କ ମତ ଭକ୍ତିରେ ଯେ ବିଦିତ ମାଧ୍ୱଆଚାର୍ଯ୍ୟ ନିଜ ।। ୯ ।।
ସନକମାନଙ୍କ ମଧ୍ୟରେ ପ୍ରଧାନ ହେଲେ ଯେ ନିମ୍ବାନୁଜ ।
ଶିବଙ୍କ ମତ ଗ୍ରହଣ କଲେ ବିଷ୍ଣୁସ୍ୱାମୀ ଏ ପ୍ରକାରେ ହେଜ ।। ୧୦ ।।
ଶିଷ୍ୟାନୁଶିଷ୍ୟ କ୍ରମରେ ଭୁବନରେ ଭରିଲା ବୈଷ୍ଣବମତ ।
କ୍ରମେ ଚଳି ଆସୁଛି ସ୍ୱାର୍ଥିର ନୋହେ ତେମନ୍ତ ।। ୧୧ ।।

(ନିଷ୍ଠାମାଳମଣି-୨ୟ ଛାନ୍ଦ)

କବି ସଦାନନ୍ଦ ମାଧ୍ୱାଗ୍ରର୍ଯ୍ୟ ସମ୍ପ୍ରଦାୟ ହୋଇଥିବା ହେତୁ ତାଙ୍କ ସମ୍ପ୍ରଦାୟର ନାମ ବ୍ରହ୍ମ ଓ ଧାମର ନାମ ବଦରିକାଶ୍ରମ । ଗୁରଧାମ ମଧ୍ୟରେ କବି ବୈଷ୍ଣବମାନଙ୍କର ବୃନ୍ଦାବନକୁ ନିତ୍ୟଧାମ ବୋଲି ଉଲ୍ଲେଖ କରିଥିଲେ ମଧ୍ୟ ଉପରୋକ୍ତ ଗୁରଧାମରୁ କେଉଁଟି ବୃନ୍ଦାବନ, ତାହା ସେ ଉଲ୍ଲେଖ କରିନାହାଁନ୍ତି । (୩)

ଶ୍ରୀଚୈତନ୍ୟଙ୍କ ସନ୍ୟାସ ଗୋଷ୍ଠୀରେ ଧର୍ମପାଳନ ଓ ଆଚରଣରେ କଠୋର ନିୟମର ବ୍ୟବସ୍ଥା କରାଯାଇଥିଲା । ଶ୍ରୀଚୈତନ୍ୟ ସେହି ନିୟମ ଗୁଡ଼ିକୁ ନିଜ ଉପରେ ମଧ୍ୟ ଜାରି କରିବାକୁ ପଶ୍ଚାତ୍‌ପଦ୍ ହେଉନଥିଲେ ।

ଏପରିକି ଶ୍ରୀଚୈତନ୍ୟଙ୍କର ଜଣେ ଭକ୍ତ 'ଛୋଟ ହରିଦାସ' ଶ୍ରୀଚୈତନ୍ୟଙ୍କ ଭୋଜନ ପାଇଁ ମାଧବୀ ଦାସୀଙ୍କ ଗୃହରୁ କିଛି ଚାଉଳ ଆଣିଥିବା ହେତୁ, ତାଙ୍କୁ ଚୈତନ୍ୟଙ୍କ ସହ ସମସ୍ତ ସମ୍ପର୍କ ଛିନ୍ନ କରିବାକୁ ହୋଇଥିଲା । ଫଳରେ ଅନୁତାପ ଓ ଦୁଃଖରେ 'ଛୋଟ ହରିଦାସ' ଆତ୍ମହତ୍ୟା କରିଥିଲେ । ଶ୍ରୀଚୈତନ୍ୟ ରାଜଦର୍ଶନ ଓ ସ୍ତ୍ରୀଦର୍ଶନକୁ ସନ୍ୟାସୀଙ୍କ ପକ୍ଷେ ଅନୁଚିତ ଭାବି ଘୃଣା କରୁଥିଲେ । ସାର୍ବଭୌମଙ୍କଠାରୁ ମହାରାଜା ପ୍ରତାପରୁଦ୍ର ଦର୍ଶନ ପ୍ରୟାସୀ ଶୁଣି ଶ୍ରୀଚୈତନ୍ୟ କହିଥିଲେ;

"ସନ୍ୟାସୀ ବିରକ୍ତ ଆମାର ରାଜଦରଶନ ।
ସ୍ତ୍ରୀ ଦରଶନ ସମ ବିଷେର ଭକ୍ଷଣ" ।। (୪)

ସେ ସମୟରେ ଶ୍ରୀଚୈତନ୍ୟଙ୍କର ମାତ୍ର ତିନିଜଣ ଭକ୍ତ ଥିବାକଥା ଜଣାଯାଏ । (୫)

---

(୩) ଗୁରୁ ସମ୍ପ୍ରଦାର ଗୁରଧାମ ଜଗନ୍ନାଥ ବଦରିକାଶ୍ରମ ।
ଦ୍ୱାରକା ପୁରୁଷୋତ୍ତମ ଗୁରମଧ୍ୟେ ବୃନ୍ଦାବନ ନିତ୍ୟଧାମ ।। ୧୨ ।।
(ନିଷ୍ଠାମାଳମଣି-୨ୟ ଛାନ୍ଦ)

(୪) 'ରାୟ ରାମାନନ୍ଦ'—ଲେଖିକା ଶ୍ରୀମତୀ ସରଳାଦେବୀ । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ, ପୃଷ୍ଠା-୩୫ ।

(୫) ଶ୍ରୀଚୈତନ୍ୟ ଚରିତାମୃତ ଅନ୍ତ୍ୟଲୀଳାରେ ବର୍ଣ୍ଣିତ ଅଛି ଯେ,
"ପ୍ରଭୁ ଲେଖାକରେ ଯାରେ ରାଧିକା-ଗଣ ।
ଜଗତେର ମଧ୍ୟେ ପାତ୍ର ସାଡ଼େ ତିନିଜଣ ।
ସ୍ୱରୂପ ଗୋସାଇଁ ଆର ରାୟ ରାମାନନ୍ଦ ।
ଶିଖିମାହାନ୍ତି ତିନ ତାର ଭଗିନୀ ଅର୍ଦ୍ଧଜନ ।"

କବି ମାଧ୍ୱପନ୍ଥୀ ବା ଚୈତନ୍ୟପନ୍ଥୀ ବୈଷ୍ଣବ ଥିବା ହେତୁ ଆଜୀବନ କଠୋର ସନ୍ନ୍ୟାସବ୍ରତ ଅବଲମ୍ବନ କରିବା ସଙ୍ଗେ ସଙ୍ଗେ ଧର୍ମପାଳନ ଓ ଆଚରଣରେ ମଧ୍ୟ କଠୋର ନୀତି ନିୟମକୁ ଅନୁସରଣ କରୁଥିଲେ (୬)। କବି ନିଷ୍ଠାପର ବୈଷ୍ଣବର ଉପାସନା ପଦ୍ଧତି ସମ୍ପର୍କରେ ସ୍ୱରଚିତ କାବ୍ୟ 'ନିଷ୍ଠାମଙ୍ଗଳମଣି'ରେ ଆଲୋଚନା କରିଅଛନ୍ତି ।

ରାତ୍ରି ଚାରିଦଣ୍ଡ ଥାଉଁ ଉଠିବ । ଶ୍ରୀ ଶ୍ରୀ ଗୁରୁ ଧ୍ୟାନମାନ କରିବ ॥ ୭ ॥
ଶ୍ରୀ ଶ୍ରୀ ପ୍ରଣାଳୀ କ୍ରମରେ ଚଳିବ । ମହାପ୍ରଭୁ ପାଦପଦ୍ମେ ମିଳିବ ॥ ୮ ॥
ଯେଉଁ ରସ ଯାହାର ସେ ବିଚାରେ । ଚିନ୍ତା କରିବ ସାଧକ ମନରେ ॥ ୯ ॥
ପୁଣି ରାଧାକୃଷ୍ଣ ନାମ କୀର୍ତ୍ତନ । କରୁ କରୁ ପ୍ରବେଶ ହେବ ଦିନ ॥ ୧୦ ॥
ଉଠି ବାହ୍ୟକ୍ରିୟା ଦନ୍ତଧାବନ । ସାରି ଯଥା ବିଧାନେ କରି ସ୍ନାନ ॥ ୧୧ ॥
ରାଧାକୁଣ୍ଡ ମନ୍ତ୍ର ପଢ଼ି ବୁଡ଼ିବ । ଉଠି ଜଳରୁ କୂଳରେ ମିଳିବ ॥ ୧୨ ॥
ଗଙ୍ଗା ଯମୁନାଷ୍ଟକ ଏହି ଦୁଇ । ପଢ଼ି ଯମଷଟ୍ପଦୀ ଅବା ତହିଁ ॥ ୧୩ ॥
ତହୁଁ ଆସି ପ୍ରବେଶ ହେଲେ ପୁର । ତୁଳସୀଙ୍କ ମୂଳରେ ଦେବଦ୍ୱାର ॥ ୧୪ ॥
(୭)

ନିଜାଭିମତ ବାକ୍ୟ ପଢ଼ି କରି । ଅନ୍ୟ କାମନା ମନରେ ନଧରି ॥ ୧୫ ॥
ତହୁଁ ବ୍ରଜସାମଗ୍ରୀ ଶ୍ୟାମାଙ୍ଗନୀ । ନିର୍ମାଲ୍ୟାଦି ପାଇବ ଭାଗ୍ୟମାନ ॥ ୧୬ ॥
ତେବେ ତିଳକ ଶ୍ରୀହରି ମନ୍ଦିର । କରି ଦେଇବ ଦେହେ ନାମାକ୍ଷର ॥ ୧୭ ॥
ଗୋପୀ ଚନ୍ଦନ ଦେଇ ସେବାକର । ଅଥବା ଭାଗ୍ୟେ ଥୋଇ ଥାଅପୁର ॥୧୮॥
ଏଣୁ ଶ୍ରୀଗୁରୁ ଶ୍ରୀମୂର୍ତ୍ତି ସାକ୍ଷାତ । ସେହି ସେବା କରିବ ଯଥୋଚିତ ॥୮୮॥
(୮)

ଏହା କରିବା ପାଇଁ ମୂଳ ଗୁରୁ । ଅଟେ ଆପଣା ମନ କଳ୍ପତରୁ ॥ ୮୯ ॥
ମନଠାରେ ଅଛି ସର୍ବ କାର୍ଯ୍ୟ । ସର୍ବ ବିଷୟେ ମନ ଅଟେ ନିଜ ॥ ୯୦ ॥
ଆରେ ଚିତ୍ତ ତୁ ମୋତେ କୃପାକର । ଏହି ପଥେ ଗମନ ସଦା କର ॥ ୯୧ ॥

---

(୬) ବ୍ରହ୍ମଚର୍ଯ୍ୟ ଆଶ୍ରମ ତ ମୋହର ଦଇବେ ॥ ୫୬ ଛାନ୍ଦ ॥

(ଯୁଗଳ ରସାମୃତ ଲହରୀ)

(୭) ଯନ୍ମୂଳେ ସର୍ବତୀର୍ଥାନି ଯଦଗ୍ରେ ସର୍ବଦେବତାଃ
ଯନ୍ମଧ୍ୟେ ସର୍ବଯଜ୍ଞାଶ୍ଚ ତୁଳସୀ ତ୍ୱାଂ ନମାମ୍ୟହମ୍ ॥

(ନିଷ୍ଠାମଙ୍ଗଳମଣି-୫ମ ଛାନ୍ଦ)

ବିପେଶ୍ୱରୀ ରସିକର ଚରଣେ । ସ୍ନେହାନୁବନ୍ଧ କର ଅନୁକ୍ଷଣେ ॥ ୯୨ ॥
ନିଷ୍କାମୀଳମଣି ଗ୍ରନ୍ଥେ ବିଚାର । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାର ॥ ୯୩ ॥

(ନିଷ୍କାମୀଳମଣି-ପଞ୍ଚମ ଛାନ୍ଦ)

କବି ଉପରୋକ୍ତ ପଦଗୁଡ଼ିକର ରାଗାନୁଗା ଭକ୍ତି ମାର୍ଗର ବୈଷ୍ଣବ-ମାନଙ୍କର ଉପାସନା ପଦ୍ଧତି ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି । ତାଙ୍କ ମତରେ ରାଗାନୁଗା ପନ୍ଥୀ ବୈଷ୍ଣବମାନେ ସଦାଗୃହୀ ହେବା ବିଧେୟ । ଏମାନେ ପ୍ରତ୍ୟେହ ବ୍ରହ୍ମ ଛନଦଣ୍ଡ ଥାଇ ଶଯ୍ୟାତ୍ୟାଗ କରି ପ୍ରଥମେ ଶ୍ରୀଗୁରୁଙ୍କୁ ଧ୍ୟାନ କରିବେ ଓ ପ୍ରଭାତ ହେବା ପର୍ଯ୍ୟନ୍ତ ରାଧାକୃଷ୍ଣ ନାମ କୀର୍ତ୍ତନ କରିବେ । ତତ୍ପରେ ବାହ୍ୟକ୍ରିୟା ସମାପ୍ତ କରି ସ୍ନାନ ସମୟେ ରାଧାକୁଣ୍ଡ ମନ୍ତ୍ର ପାଠ କରିବେ ଓ ସ୍ନାନାନ୍ତେ କୂଳରେ ଗଙ୍ଗା ଯମୁନାଷ୍ଟକାଦି ପାଠ କରିବେ । ଏହାପରେ ଗୃହକୁ ଆସି ତୁଳସୀ ମୂଳରେ ମନ୍ତ୍ରପଢ଼ି ଜଳ ଦାନ ପ୍ରଦକ୍ଷିଣ ଓ ପ୍ରଣାମ କରି ବ୍ରଜ ସାମଗ୍ରୀ ଶ୍ୟାମାଦିନୀ ଓ ନିର୍ମାଲ୍ୟାଦି ପାଇ ଶ୍ରୀହରି ମନ୍ଦିର ତିଳକ, ନାମାକ୍ଷର ଆଦି ଶରୀରରେ ବ୍ରଜବୈଷ୍ଣବ ଚିହ୍ନମାନ ଧାରଣକରି ଗୋପୀଚନ୍ଦନ ଧେନୁ ସେବା କରିବେ । ଗୁଞ୍ଜ ତୁଳସୀ ପଦ୍ମ, ଶ୍ୟାମାଦିନୀ, ଧାତ୍ରୀ ଏବଂ ପଞ୍ଚମାଳା ଧାରଣ ପୂର୍ବକ ରାଧାକୃଷ୍ଣଙ୍କର ସ୍ତୁତି ସ୍ତବ ପାଠ କରିବେ । ନାମାକ୍ଷର ବାସଓଢ଼ଣି ଘେନିବେ । ଶ୍ରୀଗୁରୁ ଚରଣ ଧ୍ୟାନାନ୍ତେ ପ୍ରଣାଳୀ କ୍ରମରେ ଗୌରଚନ୍ଦ୍ର ଓ ତାଙ୍କ ଭକ୍ତମାନଙ୍କ ଚରଣ ବନ୍ଦନା କରିବେ ଓ ସର୍ବଦା ଗୁରୁକୃପାଶ୍ରିତ ହେବେ । ସଖୀଭାବାପନ୍ନ ହୋଇ ଶ୍ରୀରାଧା ଓ ତାଙ୍କ ସଖୀ ରୂପମଞ୍ଜରୀଙ୍କୁ ସେବା କରିବେ । ବିଶୁଦ୍ଧ ପ୍ରେମଭକ୍ତି ବା ରାଗାନୁଗା ଭକ୍ତିମାର୍ଗର ସାଧକମାନଙ୍କ ସିଦ୍ଧି ପାଇଁ ଶ୍ରୀରାଧିକାଙ୍କ ସେବା ମୂଳ ଅଟେ ।

---

(୮) ତଥାପି ପୁରାଣର ପ୍ରମାଣ ଦେଇ ।
ଗୁରୁ ଆଗେ ନପୂଜ କୃଷ୍ଣ ପୂଜଇ ଯେ
ଦୁର୍ଗତି ପାଏ ପୂଜିବାର ନିଷ୍ଫଳ
ବିହିତ କହିବାକୁ ନାହିଁତ କାଳ ଯେ ॥ ୧୨ ॥

ତଥାହି ଜ୍ଞାନାର୍ଣ୍ଣବ—"ଗୁରୋଃ ସମୀପେ ଯସ୍ତୁ ପୂଜୟେଦ୍‌ଗ୍ରତୋ ହରିଂ ।
ସ ଦୁର୍ଗତି ମବାପ୍ନୋତି, ପୂଜାଚ ବିଫଳା ଭବେତ୍" ॥

(ନିଷ୍କାମୀଳମଣି-୪ର୍ଥ ଛାନ୍ଦ)

"ଶ୍ରୀରାଧିକା ସେବା ମୂଳ ଅଟଇ, ତାହା କରିବ ଜାଣି ତାହାଙ୍କର;
କୃଷ୍ଣ ସିନା ପ୍ରାଣେଶ୍ୱର ତାଙ୍କର ।" (୯)

ଗୁରୁଙ୍କଠାରୁ ପ୍ରାପ୍ତ ଇଷ୍ଟମନ୍ତ୍ର, ଯଥା—ହରିନାମ, ଗୋପାଳମନ୍ତ୍ର, ବୀଜ, ରାଧାମନ୍ତ୍ର, ସ୍ମରଣ କରିବେ । ପଞ୍ଚନାମ ଯୁଗଳମନ୍ତ୍ର, ଗଦାଧରମନ୍ତ୍ର, ଗୌରଯୁଗଳ ମନ୍ତ୍ର, ଚୈତନ୍ୟ ମନ୍ତ୍ର, କୃଷ୍ଣ-ତାରକ-ବାସୁଦେବ ମନ୍ତ୍ର ଜପ କରିବେ । ହରି ନାମକୁ ସାର କରିବ । ସାଧକର ପଞ୍ଚନାମ ଓ ସିଦ୍ଧର କାମଗାୟତ୍ରୀ ମୂଳ । ଜପ ପରେ ଶ୍ରୀମୂର୍ତ୍ତି ଦର୍ଶନ ସ୍ପର୍ଶନ କରି ଚରଣାମୃତ ପାନ କରିବେ । ଗୁରୁ ବୈଷ୍ଣବଙ୍କୁ ପ୍ରଣାମାନ୍ତେ ଅଧରାମୃତ ପାଇବେ । କୃଷ୍ଣ ଚିନ୍ତା ଓ କୃଷ୍ଣଚରିତ ପାଠରେ ଦିବସ ଉଦ୍‌ଯାପନ କରିବେ । ସନ୍ଧ୍ୟାରେ ଆରତି ଦର୍ଶନ କରି ନାମ କୀର୍ତ୍ତନ କରିବେ ଓ ରାତିରେ କୃଷ୍ଣଙ୍କୁ ଧ୍ୟାନ କରି ଶୟନ କରିବେ । ଏକାଦଶୀ, ଜୟନ୍ତୀ ଉପବାସ ଓ ଦୋଳଯାତ୍ରାଦି ଉତ୍ସବମାନ ପାଳନ କରିବେ । ଧନଜନ ଦାସ ଦାସୀ ସବୁ କୃଷ୍ଣଙ୍କୁ ସମର୍ପଣ କରି ମନକୁ ଶ୍ରୀରାଧାକୃଷ୍ଣଙ୍କ ସଖୀସଖୀ ବା ଦୂତୀ ଭାବରେ ସ୍ଥାପନ କରିବେ । ଯଦି କେହି କୃଷ୍ଣଙ୍କୁ ଅସାକ୍ଷାତ ବୋଲି ଭାବେ, ତେବେ 'ଗୁରୁ' ସେଠାରେ ସାକ୍ଷାତ କୃଷ୍ଣ । ତେଣୁ ନିଷ୍ଠାପୂର୍ଣ୍ଣ ଗୁରୁସେବା ଦ୍ୱାରା ହିଁ ବୈକୁଣ୍ଠ ପ୍ରାପ୍ତି ହେବ । କବିଙ୍କ ରଚିତ ଭକ୍ତିକାବ୍ୟ 'ନିଷ୍ଠାଚିନ୍ତାମଣି'ର 'ଆଚାରନିଷ୍ଠା' ଛାନ୍ଦରୁ ଏହା ସୁସ୍ପଷ୍ଟ ଯେ, କବି ଜଣେ ସୁବିଜ୍ଞ ପଣ୍ଡିତ ତଥା ରସିକ ହେଲେ ମଧ୍ୟ ସଦାଚାରୀ ନିଷ୍ଠାପର ବୈଷ୍ଣବ ଥିଲେ । ଆଚାର ନିଷ୍ଠାକୁ ବୈଷ୍ଣବ ଜୀବନର ଶ୍ରେଷ୍ଠ ପାଥେୟ ବୋଲି ମାନନେଇଥିଲେ । କବିଙ୍କ ବୈଷ୍ଣବ ସମ୍ପ୍ରଦାୟରେ

---

(୯) କବିଙ୍କ କୃତ 'ନିଷ୍ଠାଚିନ୍ତାମଣି' ଶେଷ ଛାନ୍ଦରେ ନିମ୍ନମତେ ବର୍ଣ୍ଣିତ ଅଛି;

(କ) "ଜାଣି ଏ ଗ୍ରନ୍ଥରେ ସାର ଶ୍ରୀଦଶମସ୍କନ୍ଧ ।
ବ୍ରଜଲୀଳା ସୁରସ ପ୍ରସଙ୍ଗ ଅନୁବନ୍ଧ ଯେ ॥ ୧୨ ॥

× × ×

ପ୍ରେମସାର ପୂର୍ଣ୍ଣରାଗ ସଂଯୋଗ ଯହିଁରେ ।
ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ ଯେ ॥ ୧୬ ॥
ଯେଉଁ ପ୍ରେମେ କୃଷ୍ଣ ବୋଲେ ସୁହିନପାଶରିଲି ।
ସେ ଭାବରୁ ଆଜଠାରୁ ବଞ୍ଚିତ ହୋଇଲି" ॥ ୧୭ ॥

(ଖ) କୃଷ୍ଣର ଜନ୍ମ କର୍ମ ନାହିଁ । ମୋତେ କଣିଲେ ଭାବ ଦେଇ ॥
(ଶ୍ରୀମଦ୍ ଭାଗବତ ଦଶମସ୍କନ୍ଧ) ଜଗନ୍ନାଥ ଦାସ

'ଇଷ୍ଟଗୋଷ୍ଠୀ' ଏକ ପ୍ରଧାନ ଅଙ୍ଗ ଥିଲା । ଏହା କେବଳ ଉଚ୍ଚକୋଟୀର ସିଦ୍ଧ ସାଧକ ମଧ୍ୟରେ ଆବଦ୍ଧ ଥିଲା । ଏହି 'ଇଷ୍ଟଗୋଷ୍ଠୀ'ର ବୈଷ୍ଣବମାନଙ୍କ ଆଚରଣ ମଧ୍ୟ ସ୍ୱତନ୍ତ୍ର । କବିଙ୍କ ଆଶ୍ରୟଦାତାମାନେ ଧନବନ୍ତ ଥିଲେ ମଧ୍ୟ କବି 'ଇଷ୍ଟଗୋଷ୍ଠୀ' ଅନ୍ତର୍ଭୁକ୍ତ ସଙ୍ଗୀମାନଙ୍କ ଅଭାବରେ ସୁଖୀ ନଥିଲେ । ଏ ସମ୍ପର୍କରେ 'ନଷ୍ଟାମଣିମଣି'ରେ ଉଲ୍ଲେଖ କରି ଲେଖିଅଛନ୍ତି—

ଯେହୁ ଅତି ଧନବନ୍ତ, ଦାତା ଜନ ଖ୍ୟାତ କରେ ତା ସଙ୍ଗେ ମୋ କାର୍ଯ୍ୟ ନାହିଁ ।
ଯେବେ ବସାଇ ପୋଷିବ, ତହିଁରେ କଣିବ ଇଷ୍ଟଗୋଷ୍ଠୀ କଥା ତ୍ୟାଗ ଯହିଁ ॥
କହେ ଅବା ଝୋଲଧରି, ଭିକ୍ଷାଟନକରି ମୁଖେ ସ୍ତୁତି ରାଧା ପ୍ରାଣେଶ୍ୱର ।
ସ୍ୱତନ୍ତ୍ରତା ଥିବ ତହିଁ ପରବଶ ନୋହି କେ ଦେଉ ନଦେଉ କ ବର୍ତ୍ତର ॥
ଯେବେ କୃଷ୍ଣ ଚାହୁଁଥିବ, ଅବଶ୍ୟ ମିଳିବ ଦେବଯୋଗ୍ୟ ସୁମିଷ୍ଟାନ୍ନ ।
ଭାର୍ଯ୍ୟା ପୁତ୍ର ଦାସୀ ଦାସ ସମାନ ବିଶେଷ କାହିଁକେ ପୂଜିବ ଭକ୍ତମାନ ॥

× × ×

ଯେବେ ମୋତେ ଅନାଦର, କରିବେ ବିଗୁର ନାହିଁ ଇଷ୍ଟ ବନ୍ଧୁ ମୋର ସେତ ।
ବେଦ ସ୍ୱଭାବେ ନିର୍ଗୁଣ ହେଲେ କି କାରଣ ଅନ୍ତର୍ଯ୍ୟାମୀ ତାଙ୍କ ହୃଦେସ୍ଥିତ ॥
ଯେହୁ ବୈଷ୍ଣବ ଗୋସାଇଁ, ଏକୁ ଦୁଇନାହିଁ, କୃଷ୍ଣ ଭକ୍ତ ରୂପେ ଅବତାର ।
ଯାହା ଭାଗ୍ୟ ଉଦେ ଯେତେ ତାହା ହୃଦେ ତେତେ କଳାଯେନ ବିଜେ ତାହାଙ୍କର ॥

(ନଷ୍ଟାମଣିମଣି-ଷଷ୍ଠ ଛାନ୍ଦ)

**ନାମ, ଧାମ ଓ ତତ୍ତ୍ୱ—**

"ଚୌଷଠି ଅଙ୍ଗେତେ ଶ୍ରେଷ୍ଠ ନବବିଧା ଭକ୍ତି
କୃଷ୍ଣପ୍ରେମ କୃଷ୍ଣଦିତେ ଧରେ ମହାଶକ୍ତି ॥
ତା'ର ମଧ୍ୟେ ସର୍ବଶ୍ରେଷ୍ଠ ନାମ ସଙ୍କୀର୍ତ୍ତନ" ॥ (୧୦)

ଚୌଷଠି ପ୍ରକାର ଭକ୍ତି ସାଧନାଙ୍ଗ ମଧ୍ୟରୁ ନଅଟି ମୁଖ୍ୟ ଅଙ୍ଗକୁ 'ନବଧାଭକ୍ତି' ବୋଲାଯାଏ । ଯଥା :- ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ,

(୧୦) 'ଶ୍ରୀବୃହଦ୍ ଭାଗବତାମୃତମ୍'—୨ୟ ଖଣ୍ଡ, ୧ମ ଅଧ୍ୟାୟର ଟୀକା ଶ୍ରୀ ସନାତନ ଗୋସ୍ୱାମୀ ।

ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ, ଆତ୍ମନିବେଦନ । ଏହି ନବଅଙ୍ଗ ବା ନବଧା ଭକ୍ତି ମଧ୍ୟରୁ ନାମ ସଙ୍କୀର୍ତ୍ତନ ଶ୍ରେଷ୍ଠ ଅଙ୍ଗ । (୧୧) ବିଶେଷତଃ କଳିଯୁଗରେ ନାମ ସଙ୍କୀର୍ତ୍ତନ ସର୍ବଶ୍ରେଷ୍ଠ ବୋଲି ପୁରାଣମାନଙ୍କରେ ବର୍ଣ୍ଣିତ ଅଛି । ସତ୍ୟଯୁଗରେ ବିଷ୍ଣୁଙ୍କୁ ଧ୍ୟାନ ଦ୍ୱାରା, ତ୍ରେତାରେ ଯଜ୍ଞ ଦ୍ୱାରା, ଦ୍ୱାପରରେ ସେବା ବା ପରିଚର୍ଯ୍ୟା ଦ୍ୱାରା ଓ କଳିଯୁଗରେ ନାମ ସଙ୍କୀର୍ତ୍ତନ ଦ୍ୱାରା ଆରାଧନା କରାଯାଏ । କଳିଯୁଗରେ ଯୁଗଧର୍ମ ନାମ ସଙ୍କୀର୍ତ୍ତନ କେବଳ ସାଧ୍ୟ ଏଥିରେ ସନ୍ଦେହ ନାହିଁ ।

"ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳଂ ।
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା" ॥ (୧୨)

କେବଳ ସେତିକି ନୁହେଁ ନାମ କୀର୍ତ୍ତନରେ ଯେଉଁ ପ୍ରେମ ମିଳେ, ତାହା ପୂର୍ବ ଯୁଗମାନଙ୍କରେ କଠୋର ଧ୍ୟାନ ଯଜ୍ଞାଦିରେ ମଧ୍ୟ ମିଳୁନଥିଲା । ସେଥିପାଇଁ କଳିଯୁଗକୁ ଅନ୍ୟ ଯୁଗଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି ।

"ପ୍ରଣାମହ କଳିଯୁଗ ସର୍ବଯୁଗ ସାର ।
ହରିନାମ ସଙ୍କୀର୍ତ୍ତନ ଯାହାତେ ପ୍ରଚାର ।"

ଏହି ନାମ କୀର୍ତ୍ତନ ଦ୍ୱାରା ଜନ୍ମଜନ୍ମାର୍ଜିତ ପ୍ରାରବ୍ଧ ଖଣ୍ଡନ ହୁଏ ॥ (୧୩) ନାମ ସଙ୍କୀର୍ତ୍ତନ ଦ୍ୱାରା ସର୍ବ ଅନର୍ଥ ନାଶଯାଇ ସର୍ବଶୁଭ ହୁଏ । (୧୪)

"ନାମ ସଙ୍କୀର୍ତ୍ତନ ହୈତେ ସର୍ବାନର୍ଥ ନାଶ ।
ସର୍ବ ଶୁଭୋଦୟ କୃଷ୍ଣେ ପ୍ରେମର ଉଲ୍ଲାସ ॥

---

(୧୧) 'ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥
(ଶ୍ରୀମଦ୍ ଭାଗବତ ୭ । ୫ । ୧୮)

(୧୨) କୃତେ ଯ ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।
ଦ୍ୱାପରେ ପରିଚର୍ଯ୍ୟାୟାଂ କଳୌତଦ୍ଧରି କୀର୍ତ୍ତନାତ୍ ॥ (ଭାଗବତ)

(୧୩) "ନାତଃ ପରଂ କର୍ମନିବନ୍ଧ କୃନ୍ତନଂ ।
ମୁମୁକ୍ଷତାଂ ତୀର୍ଥପଦାନୁ କୀର୍ତ୍ତନାତ୍ ।
ନଯତ୍ ପୁନଃ କର୍ମସୁ ସଜ୍ଜତେ ।
ମନୋରଜ ସ୍ତମୋଭ୍ୟାଂ କଳିଳଂ ତତୋନାର୍ଥ" ॥
(ଶ୍ରୀମଦ୍ ଭାଗବତ-ଷଷ୍ଠ ସ୍କନ୍ଧ)

ସଙ୍କୀର୍ତ୍ତନ ହୈତେ ପାପ ସଂସାର ନାଶନ,
ଚିତ୍ତ ଶୁଦ୍ଧି ସର୍ବଭକ୍ତି ସାଧନ ଉଦ୍‌ଗମ ॥
କୃଷ୍ଣ ପ୍ରେମୋଦ୍‌ଗମ ପ୍ରେମାମୃତ ଆସ୍ୱାଦନ,
କୃଷ୍ଣ ପ୍ରାପ୍ତି ସେବାମୃତ ସମୁଦ୍ରେ ମଜ୍ଜନ ॥"
(ଚୈତନ୍ୟ ଚରିତାମୃତ)

ନାମ ଦ୍ୱାରା ଚିତ୍ତ ପାପମୁକ୍ତ ହୋଇ ଶୁଦ୍ଧ ହୋଇଯାଏ । 'ନାମ' ଦ୍ୱାରା ଚିତ୍ତଦର୍ପଣ ମାର୍ଜ୍ଜିତ ହୋଇଯାଏ । ସଂସାରର ତ୍ରିତାପ ଜ୍ୱାଳା ନିବାରିତ ହୁଏ । ସର୍ବ ଅବିଦ୍ୟା ନାଶ ପୂର୍ବକ ଶ୍ରେଷ୍ଠ କୈରବ ଚନ୍ଦ୍ରିକାରେ ହୃଦୟ ଉଦ୍‌ଭାସିତ ହୁଏ ଏବଂ ନାମ କରୁଥିବା ବ୍ୟକ୍ତି ଆନନ୍ଦ ସାଗରରେ ଭାସି ପୂର୍ଣ୍ଣାମୃତ ପାନକରେ । ଆତ୍ମାକୁ ସର୍ବତୋଭାବେ ସ୍ନାନ କରାଏ । ଏଣେ ଯେଉଁ ଶ୍ରୀକୃଷ୍ଣ ସାଧନ ଓ ସଙ୍କୀର୍ତ୍ତନ ତାହାର ଜୟ ହେଉ ।

ମହାମନ୍ତ୍ର' ଅନୁଚ୍ଚ ସ୍ୱରରେ ଜପକରିବା ବିଧି; କିନ୍ତୁ ନାମ ଉଚ୍ଚସ୍ୱରରେ କୀର୍ତ୍ତନୀୟ । 'ଜପରେ ମଧ୍ୟ ସଂଖ୍ୟା ରଖି ଜପ ନକଲେ ଜପର ଫଳ ମିଳେ ନାହିଁ ।' ମହାପ୍ରଭୁ ଶ୍ରୀଚୈତନ୍ୟ ନୀଳାଚଳରେ ନିଜର ଭିକ୍ଷା ପ୍ରସଙ୍ଗରେ କହିଥିଲେ ଯେ ଏକଲକ୍ଷ ନାମ ଜପ କରିବ, ତାଙ୍କ ଗୃହରେ ମହାପ୍ରଭୁ ଭୋଜନ କରିବେ । ହରେକୃଷ୍ଣ ମହାମନ୍ତ୍ର, ମନ୍ତ୍ରରାଜ ଓ ଜପ୍ୟ ଅନୁଚ୍ଚ ଜପଠାରୁ ଉଚ୍ଚ ସଙ୍କୀର୍ତ୍ତନର ଫଳ ଅଧିକ । (୧୫) ଜପଦ୍ୱାରା ନିଜର ଶ୍ରେୟ

---

(୧୪) "ଚେତୋଦର୍ପଣମାର୍ଜନଂ ଭବମହାଦାବାଗ୍ନି ନିର୍ବାପଣଂ ।
ଶ୍ରେୟଃ କୈରବ ଚନ୍ଦ୍ରିକା ବିତରଣଂ ବିଦ୍ୟାବଧୂଜୀବନମ୍ ॥
ଆନନ୍ଦାମ୍ବୁଧିବର୍ଦ୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତାସ୍ୱାଦନଂ ।
ସର୍ବାତ୍ମସ୍ନପନଂ ପରଂ ବିଜୟତେ ଶ୍ରୀକୃଷ୍ଣ ସଙ୍କୀର୍ତ୍ତନମ୍ ॥"
(ଶିକ୍ଷାଷ୍ଟକ)

(୧୫) "ଆପନେ ସଭାରେ ପ୍ରଭୁ କହେ ଉପଦେଶ ।
କୃଷ୍ଣନାମ ମହାମନ୍ତ୍ର ଶୁନହ ହରିଷେ ।
ହରେକୃଷ୍ଣ, ହରେକୃଷ୍ଣ, କୃଷ୍ଣ, କୃଷ୍ଣ, ହରେ, ହରେ ।
ହରେରାମ, ହରେରାମ, ରାମ, ରାମ, ହରେ, ହରେ ॥
ପ୍ରଭୁ କହେ କହିଲାଙ୍ଗ ଏଇ ମହାମନ୍ତ୍ର ।
ଇହା ଜପ ଗିୟା ସବେ କରିୟା ନିର୍ବନ୍ଧ ॥"
(ଚୈତନ୍ୟ ଭାଗବତ)

ନାଭ ହୁଏ । କିନ୍ତୁ ଉଚ୍ଚ ସଙ୍କୀର୍ତ୍ତନ ଦ୍ୱାରା ସ୍ଥାବର ଜଙ୍ଗମ ତଥା ନାମ ଶୁଣୁଥିବା ସମସ୍ତ ଜୀବର ମଙ୍ଗଳ ହୁଏ । ଶ୍ରୀଚୈତନ୍ୟ ମହାପ୍ରଭୁ ଯେତେବେଳେ ପ୍ରଥମେ ସଙ୍କୀର୍ତ୍ତନ ପ୍ରଚାର କଲେ, ସେତେବେଳେ ନବଦ୍ୱୀପର ନଗରବାସୀଙ୍କୁ କହିଥିଲେ—

"ଦଶ ପାଞ୍ଚ ମିଳି ନିଜ ଦ୍ୱାରରେ ବସିଣ୍ଡ ।
କୀର୍ତ୍ତନ କରହେ ସବେ ହାତେ ତାଳି ଦେଇ ॥
'ହରୟେ ନମଃ କୃଷ୍ଣ ଯାଦବାୟ ନମଃ'
ଗୋପାଳ ଗୋବିନ୍ଦ ରାମ ଶ୍ରୀମଧୁସୂଦନ ।
ସଙ୍କୀର୍ତ୍ତନ କହିଲି ଏ ତୋମାର ସବାରେ ।
ସ୍ତ୍ରୀ ପୁତ୍ର ବାପେ ମିଳି କର ଗିୟା ଘରେ ॥"

(ଚୈତନ୍ୟ ଭାଗବତ)

ନାମ କରୁ କରୁ 'ନାମୀ'ର ଧାମ, ଲୀଳା ଓ ସାଗରରେ ସାଧକ ମଗ୍ନ ହୁଏ । ଆଜୀବନ 'ହରେକୃଷ୍ଣ ହରେରାମ' ସାଧନର ଫଳ ଗୌର-ପ୍ରାପ୍ତି, ଏହା ନାମାଚାର୍ଯ୍ୟ ହରିଦାସଙ୍କ ଜୀବନୀରୁ ଜଣାଯାଏ । (୧୬)

ଶ୍ରୀଚୈତନ୍ୟପନ୍ଥୀ ରାଗାନୁଗା ମାର୍ଗର ଭକ୍ତ । ସଦାନନ୍ଦ ସ୍ୱରଚିତ ଗ୍ରନ୍ଥାଦିରେ 'ନାମର ମାହାତ୍ମ୍ୟ' ସମ୍ପର୍କରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ 'ନାମ ଚିନ୍ତାମଣି' ନାମରେ ମଧ୍ୟ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରି ଯାଇଅଛନ୍ତି । ଏହାର ପ୍ରଥମ ଛାନ୍ଦରେ କବି ନିମ୍ନପ୍ରକାରେ ବର୍ଣ୍ଣନା କରିଅଛନ୍ତି ।

ନାମ ଚିନ୍ତାମଣି କରି ଭଜନ । କାମୀ ନିଷ୍କାମୀ ସର୍ବ କାର୍ଯ୍ୟେ ପୂର୍ଣ୍ଣ ॥ ୮ ॥
ସତ୍ୟଯୁଗରେ ଧ୍ୟାନେ ପାପନାଶ । ତ୍ରେତୟାରେ ଯଜ୍ଞରେ ସେହି ଆଶ ॥ ୯ ॥
ଯୁଗ ଦ୍ୱାପରେ ପରିଚର୍ଯ୍ୟା କଲେ । ହୋଏ ପାତକ ବିନାଶ ସମୂଳେ ॥ ୧୦ ॥
କଳିଯୁଗେ କଳୁଷ ଅତିଘୋର । ନାହିଁ ସମ ପ୍ରାୟଶ୍ଚିତ ମାତର ॥୧୧॥ (୧୭)
ଯେତେ ବେଦନା ତେତେ ଓଉଷଧ । କୃଷ୍ଣନାମେ ଅଘ ହୋଏ ଦଗଧ ॥୧୨॥

---

(୧୬) 'ଶ୍ରୀ ଶ୍ରୀ ନାମ ଓ ନାମ ମାହାତ୍ମ୍ୟ' ପୃଷ୍ଠା–୪୪
ଲେଖକ ଓ ପ୍ରକାଶକ ଶ୍ରୀ କିଶୋରୀ କିଙ୍କର ଦାସ, ଏମ୍. ଏ.

(୧୭) କୃତେ ଯ ଧ୍ୟାୟତୋ·········କୀର୍ତ୍ତନାତ୍ ॥
(ଭାଗବତ ବାଣୀକୁ ଅନୁସରଣ କରିଅଛନ୍ତି ।)

ଋଷି ଆଜ୍ଞା ଶାସ୍ତ୍ରରେ ଏ ପ୍ରମାଣ । ହରିନାମ ଭବାର୍ଣ୍ଣବ ତାରଣ ॥ ୧୩ ॥
ଦୃଢ଼ ଲାଗି କହିଲେ ତିନବାର । ନାହିଁ ନାହିଁ ନାହିଁ ଅନ୍ୟ ପ୍ରକାର ॥ ୧୪ ॥
(୧୮)

ତେବେ ଭବରୋଗାର୍ଥେ ଯେ ଭଜନ୍ତି । କେଣୁ ନାମ ମହିମାକୁ ଜାଣନ୍ତି ॥ ୧୫ ॥
କୃଷ୍ଣନାମଟି ଯେଣୁ ଚିନ୍ତାମଣି । ସର୍ବକାମନା ପୂର୍ଣ୍ଣକରେ ଜାଣି ॥ ୧୬ ॥

× × ×

ଦେଶ ଗଉଡ଼େ ଦ୍ୱିଜକୁଳେ ଜନ୍ମ । ସର୍ବ ଲକ୍ଷଣେ ଗଉର ବରନ ॥ ୨୨ ॥
କୃଷ୍ଣ ଚଇତନ ନାମ ପ୍ରକାଶ । କଲେ ଆପଣା ତତ୍ତ୍ୱ ପରକାଶ ॥ ୨୩ ॥
ଗୁରୁ ଏଣୁ ବଇଷ୍ଣବ ତା ଖ୍ୟାତି । କୃଷ୍ଣ ସହିତେ ଏକାଂ ନିଶ୍ଚିନ୍ତି ॥ ୨୪ ॥
ଏହି ଯେନ ପ୍ରଥମେ ତାଙ୍କ ନାମ । କରୁ ପ୍ରକାଶିବା ଭକ୍ତ ଉତ୍ତମ ॥ ୨୫ ॥
ପୁଣି ରାଧାକୃଷ୍ଣ ଆଦି ନାମକୁ । ଛନ୍ଦ ଛନ୍ଦେ ସୁଖ ହେବ ସାଧୁଙ୍କୁ ॥ ୨୬ ॥

('ଶ୍ରୀନାମ ଚିନ୍ତାମଣି'-ପ୍ରଥମ ଛାନ୍ଦ)

କବି ନାମ ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ବୈଷ୍ଣବ ମୂଳଗ୍ରନ୍ଥ 'ଭାଗବତ'କୁ ଆଦର୍ଶ ରୂପେ ଗ୍ରହଣ କରିଅଛନ୍ତି । ଶ୍ରୀଚୈତନ୍ୟ କୃଷ୍ଣ, ଗୁରୁ ଓ ବୈଷ୍ଣବ ତିନତତ୍ତ୍ୱର ଏକକ ଅଧିକାରୀ ହୋଇଥିବାରୁ ତାଙ୍କ ନାମ ପ୍ରଥମେ ଭଜନ କରିବା ନିମନ୍ତେ ସାଧୁମାନଙ୍କୁ ଉପଦେଶ ଦେଇଅଛନ୍ତି । ଶ୍ରୀଚୈତନ୍ୟଙ୍କ ନାମ ଭଜନ ପରେ ଶ୍ରୀରାଧାକୃଷ୍ଣଙ୍କ ନାମଭଜି ଅଧିକ ଆନନ୍ଦ ଓ ତୃପ୍ତି ଲାଭ କରିବାକୁ ହେବ । କୃଷ୍ଣନାମ ଚିନ୍ତାମଣି ସ୍ୱରୂପ । ଯେଉଁମାନେ କୃଷ୍ଣନାମ ଭଜନ୍ତି ସେମାନେ ଗୃହଧାମ ସହିତ ବୈକୁଣ୍ଠ ପ୍ରାପ୍ତି ହୁଅନ୍ତି । ତେଣୁ କୃଷ୍ଣ ଭକ୍ତମାନେ ଶ୍ରବଣ କୀର୍ତ୍ତନ ଭଜନ ଦ୍ୱାରା କାଳାତିପାତ କରିବା ଉଚିତ ।(୧୯)

କବି କୃତ 'ଶ୍ରୀନାମ ଚିନ୍ତାମଣି' କାବ୍ୟର ଦ୍ୱିତୀୟ ଛାନ୍ଦରେ କବି ଭଜନର ପରିଣାମ ସମ୍ପର୍କରେ ବର୍ଣ୍ଣନା କରି ନାମ ଭଜିବା ପାଇଁ କୃଷ୍ଣ ଭକ୍ତମାନଙ୍କୁ ପ୍ରବର୍ତ୍ତାଇ ଅଛନ୍ତି ।

---

(୧୮) 'ହରେର୍ନାମ ହରେର୍ନାମ ହରେନାମୈବ କେବଳମ୍ ।
କଳୌନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ॥'

(୧୯) "ଶ୍ରବଣ କୀର୍ତ୍ତନ ହେତେ କୃଷ୍ଣ ହୟ ପ୍ରେମା ।
ସେଇ ପରମ ପୁରୁଷାର୍ଥ ପୁ ରୁଷାର୍ଥ ସୀମା ॥"

(ଶ୍ରୀଚୈତନ୍ୟ ଚରିତାମୃତ-ମଧ୍ୟଲୀଳା)

ଦୂତେ ହରିନାମ ଭଜ ଆଉ ଜପ ତପ କି କାରଣରେ ।
ଅଜାମିଳ ପାପୀ ମରଣ କାଳରେ ସୁତକୁ ଡାକିଲା ନାରାୟଣରେ ॥
ବିଷ୍ଣୁ ଦୂତେ ବଇକୁଣ୍ଠକୁ ନେଲେଟି, ଡରି ପଳାଇଲେ ଯମ ଗଣରେ ॥୧॥
ଏ କଳିଯୁଗରେ ଜଗାଇ ମାଧାଇ ଗୁରୁ ଗୋରୁ ଦ୍ରୋହୀ ବ୍ରାହ୍ମଣରେ ।
ପତିତପାବନ ଗଉର ତାରିଲେ ହରିନାମ ବୋଲାଇଲା କ୍ଷଣରେ ॥୨॥
ମିନ୍ତ ହୋଇ କରି ଛନ୍ଦରେ କୁମ୍ଭୀର ଛନ୍ଦିଲା ଯେ କରୀଚରଣରେ ।
ଆରତେ ଡାକିଲା, ହରି ଚକ୍ରେ ଛେଦି ନକ୍ର ସୁଖୀ ହେଲା ବାରଣରେ ॥୩॥

× × ×

ପାଞ୍ଚଦିନ ଜୀଉ ହରିନାମ ନେଉ ଭେଟିବ ଗୋପୀକା ରମଣରେ ॥୧୫॥
ହରିନାମ ଚିନ୍ତାମଣି ଏ ଦ୍ୱିତୀୟ ଛାନ୍ଦ ତ୍ରିବର୍ଣ୍ଣିକ ନାମ ଜାଣରେ ।
କହେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା କହୁଛି ନକର ଆଚରଣରେ ॥୧୬॥
(ଶ୍ରୀ ଶ୍ରୀ ନାମ ଚିନ୍ତାମଣି-୨ୟ ଛାନ୍ଦ)

ଉପରୋକ୍ତ ପଦମାନଙ୍କରେ କବି ଦୃଢ଼ତାର ସହ ହରିନାମ ଭଜନ କରିବାକୁ ଓ ଜପିବାକୁ କୃଷ୍ଣଭକ୍ତମାନଙ୍କୁ ଉପଦେଶ ଦେବା ଛଳରେ ନାନା ଦୃଷ୍ଟାନ୍ତର ସାହାଯ୍ୟ ନେଇଅଛନ୍ତି । ହରିନାମ ଧରି ପାପୀ ଅଜାମିଳ ମୃତ୍ୟୁ ପରେ ବୈକୁଣ୍ଠ ଗଲା । 'ଜଗାଇ ମାଧାଇ' ଶ୍ରୀଚୈତନ୍ୟଙ୍କର ପରମ ଭକ୍ତ ହୋଇଥିଲେ । ହସ୍ତୀ ହରିକୃପାରୁ କୁମ୍ଭୀରଠାରୁ ରକ୍ଷାପାଇଥିଲା । ପିଙ୍ଗଳା ବେଶ୍ୟା ବିଭୁକୃପା ଦ୍ୱାରା ପାପମୁକ୍ତ ହୋଇପାରିଥିଲା । ଭୁଷଣ୍ଡ ଅମର ହୋଇପାରିଲା । ଦ୍ରୌପଦୀ ସମେତ ପଞ୍ଚପାଣ୍ଡବ ବିପଦମୁକ୍ତ ହୋଇଥିଲେ । ବ୍ରହ୍ମା, ଶିବ, ବାସୁକୀ ପ୍ରଭୃତି ଦେବତାମାନେ ମଧ୍ୟ ନାମ ପ୍ରଭାବରେ ପ୍ରଭାବିତ । ମୀରାବାଈ, ହରିଦାସ ପ୍ରମୁଖ ଈଶ୍ୱର ନାମର ପ୍ରଭାବରେ ଶତ୍ରୁ କବଳରୁ ସୁରକ୍ଷିତ ହୋଇ ସ୍ୱ ସ୍ୱ ଅଭୀଷ୍ଟ ସାଧନ କରିପାରିଥିଲେ । ପବନସାଧନା ବା ଯୋଗସାଧନାଠାରୁ ନାମର ମହିମା ଶ୍ରେଷ୍ଠ । କୃଷ୍ଣ ଭଜନ ବିନା ଯୁଗଯୁଗ ଜୀବନଧାରଣ କରିବା ବୃଥା । ସ୍ୱଳ୍ପ ଜୀବନକାଳ ମଧ୍ୟରେ ଜୀବ ଯଦି କୃଷ୍ଣଙ୍କୁ ଭଜିପାରେ ତେବେ ତାହାହିଁ ଜୀବନର ପରମ ସାର୍ଥକତା । ଏହା ଫଳରେ ସେ ଗୋପୀରମଣ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭକରେ ।

କବିଙ୍କ ଲିଖିତ 'ଶ୍ରୀନାମ ଚିନ୍ତାମଣି' କାବ୍ୟଟି ତାଙ୍କ ଇଷ୍ଟଙ୍କର ବିଭିନ୍ନ ନାମ ବର୍ଣ୍ଣନରେ ପରିପୂର୍ଣ୍ଣ । ଶ୍ରୀଚୈତନ୍ୟଙ୍କର ଅଷ୍ଟୋତ୍ତର ଶତନାମ

ବର୍ଣ୍ଣନାଠାରୁ ଆରମ୍ଭ କରି ଶ୍ରୀରାଧାଙ୍କର ଅଷ୍ଟୋତ୍ତର ଶତନାମ, ଶ୍ରୀଯୁଗଳ ଅଷ୍ଟୋତ୍ତର ଶତନାମ ବର୍ଣ୍ଣନା ପର୍ଯ୍ୟନ୍ତ ଏଥିରେ ନିହିତ ଅଛି ।

**ଧାମ—**

କବି ଶ୍ରୀଚୈତନ୍ୟପନ୍ଥୀ ବୈଷ୍ଣବ ଭାବରେ ନିତ୍ୟବାସସ୍ଥଳୀ ଶ୍ରୀବୃନ୍ଦାବନ ଧାମର ଉପାସକ । ବିଶୁଦ୍ଧ ପ୍ରେମଭକ୍ତି ମାର୍ଗର ଉପାସକଙ୍କ ମତରେ ମର୍ତ୍ତ୍ୟର ବୃନ୍ଦାବନ ସ୍ୱର୍ଗର ବୈକୁଣ୍ଠପୁର ଅପେକ୍ଷା ଶ୍ରେଷ୍ଠ । ଏହି ମତବାଦକୁ କବି ସ୍ୱରଚିତ ଗ୍ରନ୍ଥାଦିରେ ପ୍ରତିପାଦନ କରିଅଛନ୍ତି ।

"କୃଷ୍ଣର ଅଶେଷ ଧାମ, କହେବ କହିବା କ୍ଷମ ।
ଧାମଭେଦ ନାମଭେଦେ ସେ ଦମ୍ପତିର ।
ଲକ୍ଷ୍ମୀନାରାୟଣ କାହିଁ, ରୁକ୍ମିଣୀ ବାସୁଦେବହିଁ
ସୀତାରାମ କେଉଁଠାରେ ପାର୍ବତୀ ହର
ଏହି ଅନୁରୂପରେ ଲୀଳା,
ପ୍ରକାଶ ବିଳାସ ଅଂଶ ଆବେଶ କଳା ॥ ୧ ॥

କୃଷ୍ଣ ସ୍ୱୟଂ ଭଗବାନ, ସେହୁ ବ୍ରଜେନ୍ଦ୍ରନନ୍ଦନ ।
ଶ୍ରୀଗୋଲକ ବୃନ୍ଦାବନେ ନିତ୍ୟ ବିହାର ।
କାହିଁ ସଦା ଚୁହାଁଚୁହିଁ ପଲକ ପତନ ନୋହି
କାହିଁ ପରକୀୟା ବ୍ୟାଜେ ବୃଦ୍ଧି ରସର,
ଯୋଗମାୟା ପୂର୍ବ ଆଜ୍ଞାରେ,
କଷ୍ଟେ ମଷ୍ଟେ ବିଧାତା ମିଳାଏ ସେଠାରେ ॥ ୨ ॥

× × ×

ଶ୍ରୀକୃଷ୍ଣ ତନୁ ସମାନ, ଜାଣ ଦିବ୍ୟ ବୃନ୍ଦାବନ
ସର୍ବତ୍ର ବ୍ୟାପି ବ୍ୟାପକ ଅଚିନ୍ତ୍ୟ ଘନ ।
ଭୂମି ଚିନ୍ତାମଣି ଯାହାର ।
ବୃକ୍ଷେ କଳ୍ପଦ୍ରୁମେ ପକ୍ଷୀ ପଣ୍ଡିତ ବର ॥ ୩ ॥

× × ×

କୋଟି କୋଟି ଚିନ୍ତାମଣି ମିଳୁ ବା ତାକୁ ନଗଣି
ଏହି ବାହ୍ୟନେତ୍ରେ ଦେଖା ଦେଲେହେଁ ହରି
କହେବ ମୋର ଭାଗ୍ୟରେ ଶ୍ରୀବୃନ୍ଦାବନ ଧୂଳିରେ
ଧୂସର ହୋଇବିକ ଶରୀର କପର

କବିସୂର୍ଯ୍ୟ ବ୍ରହ୍ମା ରଚିତ ।
'ନିଷ୍ଠାଞ୍ଜନମଣି' ନାମେ ବାତୁଳ ଗୀତ" ॥ ୧୦ ॥

(ନିଷ୍ଠାଞ୍ଜନମଣି-୮ମ ଗ୍ରନ୍ଥ)

କବି ସଦାନନ୍ଦ ବୃନ୍ଦାବନର ମାହାତ୍ମ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି ଯେ, ବ୍ରହ୍ମା, ଉଦ୍ଧବ ପ୍ରଭୃତି ଦେବତା ଓ ଭକ୍ତଙ୍କର ଶ୍ରୀବୃନ୍ଦାବନରେ ଗୁଳ୍ମ ଲତା ହେବାପାଇଁ ଆଗ୍ରହ ରହିଅଛି । ତେଣୁ ବୈକୁଣ୍ଠାଧିପତି ବିଷ୍ଣୁଙ୍କ ଲୀଳା କର୍ଣ୍ଣରେ ଶୁଣିବା ପାଇଁ ଲାଳାୟିତ ନହୋଇ ବୃନ୍ଦାବନର ଗୋପଗୋପୀମାନଙ୍କର ଦୈନିକ ଗ୍ରାମ୍ୟକଥା ଶୁଣିବାକୁ ଲାଳାୟିତ ହେବା ସଙ୍ଗେ ସଙ୍ଗେ ଏ ଜନ୍ମପରେ ବୃନ୍ଦାବନରେ ପୁନର୍ଜନ୍ମ ଲଭି କରିବାକୁ, ତୃଣଦର୍ଶନ ହୋଇ ବାସନା ପ୍ରକାଶ କରିଅଛନ୍ତି । ଏପରିକି କବି ବୃନ୍ଦାବନର ସ୍ଥାବର ଜଙ୍ଗମ, କୀଟ ପତଙ୍ଗ ଯେଉଁପରି ଭାବରେ ହେଲେ ଜନ୍ମ ଲଭିକରି ବୃନ୍ଦାବନ ଧୂଳିରେ ତନୁ ଧୂସର କରିବାକୁ ଚାହିଁଅଛନ୍ତି ।

କବି ସ୍ୱକୃତ 'ଶ୍ରୀନାମ ଚିନ୍ତାମଣି' କାବ୍ୟର ଷଷ୍ଠ ଅଧ୍ୟାୟରେ ମଧ୍ୟ ଏହି ମର୍ମରେ ଉଲ୍ଲେଖ କରିଅଛନ୍ତି ।

ତେଣୁ କବି ସାଧାରଣ ମନୁଷ୍ୟ ହୋଇ ମୃତ୍ୟୁପରେ ବୃନ୍ଦାବନଧାମ ଲଭ କାମନା କରିବା କିଛି ବିଚିତ୍ର ନୁହେଁ । କବି ସ୍ୱଗ୍ରନ୍ଥ 'ଯୁଗଳ ରସାମୃତ ଲହରୀ', 'ପ୍ରେମ ତରଙ୍ଗିଣୀ' ଓ 'ନାମ ଚିନ୍ତାମଣି' ଆଦିରେ ମଧ୍ୟ ଏହି ଧାମର ବର୍ଣ୍ଣନା କରିଅଛନ୍ତି । ତନ୍ମଧ୍ୟରୁ 'ଶ୍ରୀନାମ ଚିନ୍ତାମଣି'ର ପ୍ରଦତ୍ତ ଶ୍ରୀବୃନ୍ଦାବନ ଧାମର ବର୍ଣ୍ଣନା ଯଥାର୍ଥ ଓ ଉଚ୍ଚକୋଟୀର ଅଟେ ।

"ମନ ଭଜ ବୃନ୍ଦାବନ, ନିତ୍ୟ ଚିନ୍ତାମଣି ସ୍ଥାନ ହେ । ଘୋଷା ।
ଭଦ୍ର ଶ୍ରୀଲୋହ ଭାଣ୍ଡୀର । ମହାତାଳ ଖଦିର ବହୁଳା ଯହିଁ ।
କୁମୁଦ କାମ୍ୟ ମଧୁ ବୃନ୍ଦାବନ ଏ ଦ୍ୱାଦଶ ପ୍ରକାରେ ରହି ହେ" ॥ ୧ ॥
କୃଷ୍ଣ ତନୁ ବର୍ଣ୍ଣ ଅନନ୍ତ ବିଦ୍ରୂପ ଏହିଠାରେ ଅଛି ନାହିଁ ।
ସଦାନନ୍ଦ୍ୟାଲୀଳା ଯହିଁ ହୋଏ ତାହା କେ ଦେଖିବ ଅଛି କାହିଁହେ ॥ ୨ ॥
ଜୀବେ ଦୟାକରି ହରି ତା ପ୍ରକାଶି ଭାରତ ଭୂମି ମଧ୍ୟରେ ।
ଅଧ ଉର୍ଦ୍ଧ୍ୱ ବ୍ୟାପି ରହିଛି କେ ଅବା କେ କଳନା କରିପାରେ ହେ ॥ ୩ ॥
ଯହିଁ ରାଧାକୁଣ୍ଡ ଯହିଁ ଶ୍ୟାମକୁଣ୍ଡ ଯହିଁ ଗୋବର୍ଦ୍ଧନ ଗିରି ।
ଆବୃତ୍ତ ଅଷ୍ଟକୁଞ୍ଜ ମଧ୍ୟେ ଅନଙ୍ଗାମ୍ବୁଜ ରସ ଚିନ୍ତାକରି ହେ ॥ ୪ ॥

× × ×

ଗୋବିନ୍ଦ ଗୋପିନାଥ ଜୟ ମଦନମୋହନ ତିନି ମୂରତି ।
ନିଜ ଭକ୍ତ ସୁଖ ଅର୍ଥେ ନନ୍ଦସୁତ ପ୍ରକାଶ ହୋଇ ଅଛନ୍ତି ହେ ॥ ୧୦ ॥

(ନାମ ଚିନ୍ତାମଣି-୧୨ଶ ଛାନ୍ଦ)

ଶ୍ରୀବୃନ୍ଦାବନ ଧାମର ଉପରୋକ୍ତ ବର୍ଣ୍ଣନାଟି ଅତ୍ୟନ୍ତ ବାସ୍ତବମୁଖୀ ହୋଇଅଛି । ଏଥିରୁ ଅନୁମାନ କରାଯାଏ ଯେ କବି କିଛି ଦିନ ଲାଗି ଶ୍ରୀବୃନ୍ଦାବନ ଧାମରେ କାଳାତିପାତ କରିଥିଲେ । ଏହାହିଁ ଥିଲା କବିଙ୍କର ସାଧକ ଜୀବନର ଶ୍ରେୟ ଓ ପ୍ରେୟ । ସଦାନନ୍ଦ ଚୈତନ୍ୟପନ୍ଥୀ ବୈଷ୍ଣବ । ଏହି ସମ୍ପ୍ରଦାୟଭୁକ୍ତ ବୈଷ୍ଣବଗଣ ଯୁଗଳ ଉପାସନାର ପକ୍ଷପାତୀ । ଏମାନଙ୍କ ମତରେ ବୃନ୍ଦାବନର ଶ୍ରୀକୃଷ୍ଣ ସର୍ବଶ୍ରେଷ୍ଠ, ଅପ୍ରାକୃତ ନବୀନ ମଦନ, କାମ ଗାୟତ୍ରୀ ଓ କାମ ବୀଜରେ ତାଙ୍କର ଉପାସନା ହୁଏ ।

"ବୃନ୍ଦାବନେ ଅପ୍ରାକୃତ ନବୀନ ମଦନ ।
କାମ ଗାୟତ୍ରୀ, କାମ ବୀଜେ ଯାଁର ଉପାସନ ॥
ପୁରୁଷ ଯୋଷିତ କିବା ସ୍ଥାବର ଜଙ୍ଗମ ।
ସର୍ବ ଚିତ୍ତାକର୍ଷକ ସାକ୍ଷାତ୍ ମନ୍ମଥ ମଦନ ॥" (୨୦)

ସଦାନନ୍ଦଙ୍କ ମତରେ ଯେଉଁମାନେ ରାଧାକୃଷ୍ଣ ଯୁଗଳ ଉପାସକ ନୁହଁନ୍ତି ଏବଂ ଯୁଗଳ ଲୀଳା ସମ୍ବନ୍ଧରେ ଗ୍ରନ୍ଥରଚନା କରିନାହାନ୍ତି ସେମାନେ ବାସ୍ତବରେ କବି ପଦବାଚ୍ୟ ନୁହଁନ୍ତି । ଏଣୁ କବି 'ଯୁଗଳ ରସାମୃତ ଲହରୀ ଓ 'ଯୁଗଳ ରସାମୃତ ଭଉଁରୀ' ନାମକ ଦୁଇଟି କାବ୍ୟ ରଚନା କରିଥିଲେ ।

**ତତ୍ତ୍ୱ—**

କବି ସଦାନନ୍ଦ ପୂର୍ଣ୍ଣ ଶ୍ରୀଚୈତନ୍ୟପନ୍ଥୀ ବୈଷ୍ଣବ ଥିବାରୁ ମଧୁର ଭକ୍ତି ବା କାନ୍ତଭାବର ଏକନିଷ୍ଠ ଉପାସନା ତାଙ୍କର ଆଦର୍ଶ ଥିଲା । ବିଶେଷତଃ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ସାଧକ ଥିବାରୁ ସେ ଗୌଡ଼ୀୟ ଗୋସ୍ୱାମୀମାନଙ୍କ ଗ୍ରନ୍ଥମାନଙ୍କୁ ବେଦଠାରୁ ଅଧିକ ସମ୍ମାନ ଦେଖାଉଥିଲେ । କବି ସ୍ୱକାବ୍ୟରେ ଗୌରଚନ୍ଦ୍ରଙ୍କୁ ଆଗୁର୍ଯ୍ୟ ସର୍ବେଶ୍ୱର ଗୌରକୃଷ୍ଣ ବୋଲି ପ୍ରତିପାଦନ କରି ଶ୍ରୀଚୈତନ୍ୟ ଲୀଳାର ତତ୍ତ୍ୱ ଅତି ସରଳ ଭାବରେ ଉପସ୍ଥାପିତ କରିଯାଇଅଛନ୍ତି ।

---

(୨୦) (କ) 'ଶ୍ରୀଚୈତନ୍ୟଚରିତାମୃତ'—ଶ୍ରୀକୃଷ୍ଣଦାସ ଗୋସ୍ୱାମୀ ।
(ଖ) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଏମ୍. ଏ.

ଶ୍ରୀରାଧାକୃଷ୍ଣ ପ୍ରେମରସକଳାର ପୁନଃ ପ୍ରଚାରାର୍ଥେ ଶ୍ରୀକୃଷ୍ଣ ଗୌରାଙ୍ଗ ରୂପରେ ନବଦ୍ୱୀପରେ ଜନ୍ମ ଗ୍ରହଣ କଲେ । ସ୍ୱରସ ଆସ୍ୱାଦନରେ ସେ ମଗ୍ନ ଯାଇଥିଲେ । ଭକ୍ତ ଭାବରେ ଅଙ୍ଗୀକାର ଥିଲେ । ତାଙ୍କ ଆବିର୍ଭାବରେ ବ୍ରଜଭାବ ସର୍ବ ହୃଦୟରେ ବ୍ୟାପିଗଲା । ନିମ୍ନୋକ୍ତ ଉଦାହରଣଟିରୁ ଏହା ସ୍ପଷ୍ଟ ଅନୁମିତ ହୁଏ ।

"ଜୟ ବୃଷଭାନୁସୁତା ବ୍ରଜେନ୍ଦ୍ର କୁମାର ।
ରାଧାକୃଷ୍ଣ ନାମ ସର୍ବେଶ୍ୱରୀ ସର୍ବେଶ୍ୱର ହେ ॥ ୧ ॥
କିଶୋରୀ କିଶୋର ବର୍ଣ୍ଣ ସ୍ୱର୍ଣ୍ଣ ନୀଳମଣି ।
ଜୟ ଜୟ ରସିକା ରସିକ ଶିରୋମଣି ହେ ॥ ୨ ॥
ମହାପ୍ରେମ ମଦରେ ପ୍ରମତ୍ତ ଅନୁକ୍ଷଣ ।
ପ୍ରୀତିରଙ୍ଗ ପରସ୍ପେ ବିହ୍ୱଳ କ୍ଷଣକ୍ଷଣ ହେ ॥ ୩ ॥
ଘୂର୍ଣ୍ଣାୟମାନ ନୟନ ଦୁହେଁ ରସାଳସେ ।
ଅନ୍ୟୋନ୍ୟନାରେ ପ୍ରାପ୍ତି ଲୋଭ ପରକାଷ୍ଠା ରସେ ଯେ ॥ ୪ ॥
ଅପ୍ରାକୃତ ଅନଙ୍ଗରେ ପୀଡ଼ିତ ହୃଦୟ ।
ମହାଭାବ ରୂପା ରସରାଜ ଜୟ ଜୟ ହେ ॥ ୫ ॥
ଜୟ ଜୟ ଲୋକୋତ୍ତର ଚେଷ୍ଟା ଅଙ୍ଗୀକାରୀ ।
ପ୍ରୀତିବନ୍ଧ-ବେଧୋରୀ ଚୌର୍ଯ୍ୟରତିକାରୀ ହେ ॥ ୬ ॥
ତିନବାଞ୍ଛା ପୂର୍ଣ୍ଣ ଯେହୁ ଉତ୍କଣ୍ଠା ମାନସେ ।
ତଦର୍ଥେ ପ୍ରକାଶ ନବଦ୍ୱୀପେ ଗୌଡ଼ଦେଶେ ଯେ ॥ ୭ ॥
ଭକ୍ତଭାବ ଅଙ୍ଗୀକାରୀ ସ୍ୱରସ ଆସ୍ୱାଦେ ।
କ୍ରମେ କ୍ରମେ ବ୍ରଜଭାବେ ବ୍ୟାପି ସର୍ବହୃଦେ ଯେ ॥ ୮ ॥
× × ×
ରାଧିକା ସଙ୍ଗରେ ରସି କୃଷ୍ଣ ହୁଏ ପ୍ରାପ୍ତି ।
କାହା ଅନୁଗତେ ଗୌର ଭଜ କେ ଜାଣନ୍ତି ଯେ" ॥ ୨୨ ॥
(ପ୍ରେମ ତରଙ୍ଗିଣୀ-୧ମ ଗ୍ରନ୍ଥ)

ଚୈତନ୍ୟପନ୍ଥୀ ବୈଷ୍ଣବ ଭାବରେ କବି ଶ୍ରୀମଦ୍ ଭାଗବତ ମହାପୁରାଣକୁ ଅନ୍ୟ ବୈଷ୍ଣବମାନଙ୍କ ପରି ଶ୍ରେଷ୍ଠ ସିଦ୍ଧାନ୍ତ ଶାସ୍ତ୍ର ବୋଲି ବିଶ୍ୱାସ କରିଥିବା ଦେଖାଯାଏ ।

"ଅନେକ ପୁରାଣ ଗ୍ରନ୍ଥ ବ୍ୟାସଦେବ କଲେ ।
ତଉରୁ ସଂଶୟଗତ ନୋହି ଭ୍ରମ ହେଲେ ॥ ୩ ॥

ଶ୍ରୀନାରଦ ଗୋସ୍ୱାମୀର ଅନୁଗ୍ରହ ପାଇ ।
ଭଜନ୍ତେ କୃଷ୍ଣ ଆବେଶେ ଅବତାର ହୋଇ ଯେ ॥ ୪ ॥
ହରି ବର୍ଣ୍ଣିଲେ ମୋହ ବିନା ଚିତ୍ତ ମୋର ।
କେହୁ ଜାଣେ ଏହା ଦେହେଁ ହେବ ଅବତାର ଯେ ॥ ୫ ॥
ଏଣୁ ମହାପୁରାଣ ଯେ ଶ୍ରୀମଦ୍ଭାଗବତ ।
କର୍ମ ଜ୍ଞାନ କହି କଲେ ଭକ୍ତିର ସିଦ୍ଧାନ୍ତ ଯେ ॥ ୬ ॥
ପରମାତ୍ମା ବ୍ରହ୍ମ ଭଗବାନ ତିନି କଥା । (୨୧)
ବୁଝାଇ କହିଲେ ଯେହ୍ନେ ଭେଦାଭେଦ ତଥା ॥ ୭ ॥

× × ×

ଶ୍ରୀରୂପ ଗୋସ୍ୱାମୀ ଆଦିଙ୍କର ମତ ଯେହି ।
ବେଦବଚନୁ ଅଧିକ ଆମ୍ଭେମାନୁ ତହିଁ ଯେ ॥ ୨୪ ॥

× × ×

ବହୁ ଗ୍ରନ୍ଥ କଳାଭ୍ୟାସ ବ୍ୟାଖ୍ୟାବାଦ ତେଜ ।
ଶ୍ରୀରୂପ ଗୋସ୍ୱାମୀ ଆଜ୍ଞା ନିଜ ମନେ ହେଜ ॥ ୨୮ ॥ (୨୨)

(ନିଷ୍ଠା ନୀଳମଣି-ତୃତୀୟ ଛାନ୍ଦ)

ପୂର୍ବବର୍ଣ୍ଣିତ ପଦମାନଙ୍କରେ କବି ଶ୍ରୀମଦ୍‌ଭାଗବତକୁ ମହାପୁରାଣ ରୂପେ ପ୍ରତିପାଦନ କରିଅଛନ୍ତି । ଭଗବତ ତତ୍ତ୍ୱକୁ ପ୍ରକାଶ କରିବା ପାଇଁ କୃଷ୍ଣ ଆବେଶରେ ବ୍ୟାସଙ୍କ ଦେହରେ ଅବତାର ହେଲେ । ପରମାତ୍ମା, ବ୍ରହ୍ମ ଓ

---

(୨୧) "ସ୍ୱୟଂ ଭଗବାନ କୃଷ୍ଣ ବିଷ୍ଣୁ ପରତତ୍ତ୍ୱ ।
ପୂର୍ଣ୍ଣଜ୍ଞାନ ପୂର୍ଣ୍ଣାନନ୍ଦ ପରମ ମହତ୍ତ୍ୱ ॥
ନନ୍ଦସୁତ ବଲି ଯାରେ ଭାଗବତେ ଗାଇ ।
ସେହି କୃଷ୍ଣ ଅବତୀର୍ଣ୍ଣ ଚୈତନ୍ୟ ଗୋସାଇଁ ॥
ପ୍ରକାଶ ବିଶେଷେ ତେହୋ ଧରେ ତିନ ନାମ ।
ବ୍ରହ୍ମ ପରମାତ୍ମା ଆର ସ୍ୱୟଂ ଭଗବାନ ॥"

(ଶ୍ରୀଚୈତନ୍ୟ ଚରିତାମୃତ-ଆଦିଲୀଳା)

(୨୨) "ବହୁ ଗ୍ରନ୍ଥାକଳାଭ୍ୟାସ ବ୍ୟାଖ୍ୟା ବାଦବିବର୍ଜିତା ।
ବିଶ୍ରମ୍ଭେଣ ଗୁରୋଃ ସେବା ସାଧୁବର୍ତ୍ମାନୁବର୍ତ୍ତନଂ" ॥

(ଶ୍ରୀରୂପ ଗୋସ୍ୱାମୀ)

ଭଗବାନ ଏହି ତତ୍ତ୍ୱ ବୁଝାଇ ଭୁକ୍ତି ମୁକ୍ତି ତୁଚ୍ଛ କରି ଭକ୍ତିକୁ ସାରକଲେ । କୃଷ୍ଣ ଅବତାର ଓ ଅନ୍ୟାନ୍ୟ ସହସ୍ର ଅବତାର ଓ ପରତତ୍ତ୍ୱର ଚରମ ଶ୍ରେଷ୍ଠ ଅବତାର ସମସ୍ତେ ତାଙ୍କର ଅଂଶ । ସ୍ୱୟଂ ଭଗବାନ ଏହାଙ୍କର ଅଂଶ । ଭକ୍ତମାନଙ୍କ ମଧ୍ୟରେ ଯଜ୍ଞପତ୍ନୀ ଓ ଗୋପୀମାନେ ଶ୍ରେଷ୍ଠ । ଦଶମସ୍କନ୍ଧ ଭାଗବତରେ ସାର ଅଂଶ । ବ୍ରଜଲୀଳା ଏଥିରେ ସୁରସ ପ୍ରସଙ୍ଗରସ ବର୍ଣ୍ଣିତ ପାଞ୍ଚ ଅଧ୍ୟାୟ ଭାଗବତରେ ଶ୍ରେଷ୍ଠ ଓ ଏହାର ଏକତିଂଶ ଅଧ୍ୟାୟ ସର୍ବଶ୍ରେଷ୍ଠ । କାରଣ ଏଥିରେ ପ୍ରେମ ଭକ୍ତି ରସ ସର୍ବୋଚ୍ଚ ସୀମା ସ୍ପର୍ଶ କରିଅଛି ।

“ଯେଉଁ ପ୍ରେମେ କୃଷ୍ଣ ବୋଲେ ବୁଝିନପାରିଲି ।
ସେ ଭାବରୁ ଆଜଠାରୁ ବଞ୍ଚିତ ହୋଇଲି ॥”

ଏହି କାରଣରୁ ଭାଗବତ ଗ୍ରନ୍ଥ ବୈଷ୍ଣବମାନଙ୍କର ଅତି ପ୍ରିୟ ଗ୍ରନ୍ଥ । ସ୍ୱୟଂ କୃଷ୍ଣଚନ୍ଦ୍ର ଏହି ପ୍ରେମ ଭକ୍ତି ରସ ଆସ୍ୱାଦନ କରିବା ପାଇଁ ଚୈତନ୍ୟ ରୂପରେ ଅବତାର ଗ୍ରହଣ କଲେ ଏବଂ ସେ ନିଜେ ଏ ରସ ଆସ୍ୱାଦନ କଲେ । ସେ ଗୋପୀ ଭାବରେ ବଣା ହେଲେ ଏବଂ ପୂର୍ବର ନିଜ ରୂପ ଧ୍ୟାନ କରି ସଦା ବିରହ ପ୍ରଳାପରେ ଆବିଷ୍ଟ ରହିଲେ । ‘ଭାଗବତ’ର ମର୍ମ ସଂସାରରେ ପ୍ରଚାର କରିବା ନିମନ୍ତେ ସତ୍ ପାଦ ରୂପ ସନାତନ ଆଦି ଗୋସ୍ୱାମୀମାନଙ୍କ ଉପରେ ଭାର ନ୍ୟସ୍ତ କଲେ । ଗୋସ୍ୱାମୀମାନେ ଏହି ଭାଗବତ ମର୍ମକୁ ନିଜ ଗ୍ରନ୍ଥମାନଙ୍କରେ ପ୍ରକାଶ କରିଗଲେ । ତେଣୁ ସଦାନନ୍ଦ ଗୋସ୍ୱାମୀମାନଙ୍କ ମତକୁ ବେଦ ବାକ୍ୟରୁ ଶ୍ରେଷ୍ଠ ବୋଲି ମାନୁଥିଲେ ।

ବ୍ରଜ କଥା ପ୍ରସଙ୍ଗରେ ରସାଭାସ ହେଲେ ବା ପୁରାଣଶାସ୍ତ୍ରରେ ବ୍ରଜ ଭକ୍ତି ରସର ମତାନ୍ତର ହେଲେ ତାହାକୁ ପରିତ୍ୟାଗ କରିବା ଉଚିତ ବୋଲି କବି ମତ ପ୍ରକାଶ କରିଅଛନ୍ତି । ଶ୍ରୀରୂପ ଗୋସ୍ୱାମୀଙ୍କ ମତକୁ ଅନୁସରଣ କରିବାକୁ ଯାଇ କବି ବହୁ ଗ୍ରନ୍ଥ, କଳାଭ୍ୟାସ, ବ୍ୟାଖ୍ୟାବାଦ ତ୍ୟାଗ କରିବା ପାଇଁ ବୈଷ୍ଣବମାନଙ୍କୁ ଉପଦେଶ ଦେଇଛନ୍ତି । ‘ଯୁଗଳ ରସାମୃତ ଲହରୀ’ କାବ୍ୟରେ କବିଙ୍କ ବୈଷ୍ଣବତତ୍ତ୍ୱ ଚରମ ସୀମା ସ୍ପର୍ଶ କରିଅଛି । ଏଥିରେ କବି ବ୍ରଜବାସୀ ବୈଷ୍ଣବ ସମ୍ପ୍ରଦାୟର ମୂଳତତ୍ତ୍ୱ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ୱ ମୌଳିକ ଜ୍ଞାନର ଯଥେଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି । ଏଥିରେ କୃଷ୍ଣ ନିଜ ବିଭୂତି ବର୍ଣ୍ଣନା କରି ଶ୍ରୀରାଧାକୃଷ୍ଣ ଲୀଳାର ତତ୍ତ୍ୱ ବୁଝାଇ ଅଛନ୍ତି ଓ ଶ୍ରୀରାଧା, ଚନ୍ଦ୍ରାବଳୀ, ଗୋପୀମାନେ ତାଙ୍କ ଅଂଶ ବିଶେଷ ବୋଲି ପ୍ରମାଣିତ କରିଅଛନ୍ତି । ମାତ୍ର ‘ଯୋଗମାୟା’ଙ୍କ ପ୍ରଭାବରୁ ଆପେ ଆପଣାକୁ ଚିହ୍ନିନପାରି ବଣା ହେଉଛନ୍ତି ।

ମୋ ଲୀଳା ବେଦ ନ ଜାଣଇ । ଜାଣିଲେ କହି ନ ପାରଇ ॥ ୧୦ ॥
ଯାହା ପାରିବ ଅବା କହି । ମୋ ଆଜ୍ଞା ପାଇତ ଲୁଚଇ ॥ ୧୧ ॥
ଯାହା କହଇ କେ ନବୁଝେ । ମୋ ମାୟା ଜଳେ ତେଣୁ ମଜ୍ଜେ ॥ ୧୨ ॥
ଯାହାର ସ୍ୱଭାବ ଯେମନ୍ତ । ସେ ଅର୍ଥ କରନ୍ତି ତେମନ୍ତ ॥ ୧୩ ॥
ଯେବା ମୋ ମହିମା ଜାଣନ୍ତି । ନଭାବ ମୁଖେ ବଖାଣନ୍ତି ॥ ୧୪ ॥
ଯାହାକୁ ମୋ'ର ଦୟାହୁଏ । ହୃଦୟେ କରଇ ଉଦୟେ ॥ ୧୫ ॥
ମୂର୍ଖ ହୋଇ ମୋ ତତ୍ତ୍ୱ ଜାଣେ । ଯଦି ପଣ୍ଡିତ ନ ପ୍ରମାଣେ ॥ ୧୬ ॥
ମୋ ଭକ୍ତ ସେବା ଧର୍ମ ଫଳେ । ମୋହର କୃପା ତାକୁ ମିଳେ ॥ ୧୭ ॥
ଜାଣଇ ଅନ୍ତର ବାହାରେ । ମୁଁ ସତ୍ୟ ସକଳ ଉପରେ ॥ ୧୮ ॥
ସଦା ଚିଦାନନ୍ଦ ସ୍ୱରୂପ । ମୋର କେବଳ ନିର୍ଲେପ ॥ ୧୯ ॥
ଅଣ ଅକ୍ଷର ମୁଁ ବୋଲଇ । ଅକ୍ଷର ରୂପେ ବିରାଜଇ ॥ ୨୦ ॥

× × ×

ଧନ୍ୟ ଧନ୍ୟ ସେ ଯୋଗମାୟା । ଆମ୍ଭମାନଙ୍କ ହୃଦେ ଛାୟା ॥ ୮୧ ॥
ଏଣୁ ନଦେଖି ତତ୍ତ୍ୱ ଭିବ । ଅଜ୍ଞାରେ ଏ ସୁଖାନୁଭବ ॥ ୮୨ ॥
("ଯୁଗଳ ରସାମୃତ ଲହରୀ-୧୩ଶ ଛାନ୍ଦ)

ଉପର ବର୍ଣ୍ଣିତ ପଦମାନଙ୍କରେ କବି ସଦାନନ୍ଦ ବିଶୁଦ୍ଧ ପ୍ରେମଭକ୍ତି ତତ୍ତ୍ୱର ମୂଳଭିତ୍ତିକୁ ପାଠକ ସମାଜରେ ପରିବେଷଣ କରିବା ସଙ୍ଗେ ସଙ୍ଗେ ଶ୍ରୀଚୈତନ୍ୟଙ୍କ 'ଅଚିନ୍ତ୍ୟ ଭେଦାଭେଦ' ତତ୍ତ୍ୱକୁ ସରଳ ଭାଷାରେ ବୁଝାଇ ଦେଇ ଅଛନ୍ତି । ଶ୍ରୀକୃଷ୍ଣ ଅଖିଳ ବ୍ରହ୍ମାଣ୍ଡର ପ୍ରାଣନାଥ ପ୍ରଭୁ । ଗୋପୀମାନେ ସବୁକାଳେ ତାଙ୍କର ଦାସୀ । ଏହି 'ପ୍ରଭୁ-ଦାସୀ' ନିତ୍ୟ ସମ୍ବନ୍ଧ ହିଁ ରାଧାକୃଷ୍ଣ ପ୍ରେମତତ୍ତ୍ୱର ମୂଳଭିତ୍ତି । (୨୩) କବି 'ନିଷ୍କାମିଜନମଣି' କାବ୍ୟର ଦ୍ୱିତୀୟ

(୨୩)(କ) ବିଶାଖା କହେ ଜନ୍ମେ ଜନ୍ମେ ସେ ପଦ ।
ସେବକ୍କା ଆମ୍ଭେ ସଖୀ ନକର ଖେଦ ॥
ଋଷି ମୁଖୁଁ ଶୁଣିଛୁ ! ଚିନ୍ତ ଯେ ଆମ୍ଭର ନୁହଁନ୍ତି କିଛୁ ॥ ୬ ॥
(ଯୁଗଳ ରସାମୃତ ଲହରୀ-୪୮ଶ ଛାନ୍ଦ)

(ଗ) କୃଷ୍ଣ ଅବ୍ୟୟ ସର୍ବକଳା ସମ୍ପୂର୍ଣ୍ଣ ଲୋ ।
ପୁରୁଷ ସେହି ଏକା ସମସ୍ତେ ଶକ୍ତି ।
ତେବେ ଉଚିତ ହେଲା ତାରେ ଆସକ୍ତି ଲୋ ॥ ୧୧ ॥
(ପ୍ରେମ ତରଙ୍ଗିଣୀ-ପଞ୍ଚବିଂଶ ଛାନ୍ଦ)

ଛାନ୍ଦରେ "ସେବ୍ୟ ସେବକ ସମ୍ବନ୍ଧ ବୈଷ୍ଣବର କୃଷ୍ଣ ପ୍ରଭୁ, ଆମ୍ଭେ ଦାସ" ବୋଲି ଉଲ୍ଲେଖ କରିଅଛନ୍ତି ।

ସ୍ୱ ଆଚରିତ ଧର୍ମ ବ୍ୟତୀତ କବି ଅନ୍ୟ ଧର୍ମ ଦର୍ଶନର ମଧ୍ୟ ବ୍ୟାଖ୍ୟା କରିଅଛନ୍ତି । ମାତ୍ର ଏହି ବ୍ୟାଖ୍ୟା ନିରପେକ୍ଷ ନୁହେଁ । ଏଥିରେ କବିଙ୍କ ସାମ୍ପ୍ରଦାୟିକ ମନୋଭାବର ସ୍ପଷ୍ଟ ସୂଚନା ମିଳେ ।

"ଈଶ୍ୱର ସୃଷ୍ଟିରେ ସ୍ଥାବର ଜଙ୍ଗମ କୀଟପତଙ୍ଗ ଏ ସବୁରି ।
ଜଙ୍ଗମ ମଧ୍ୟରେ ଶ୍ରେଷ୍ଠ ମଣିଷ ଜାତି ଭୁବନେ ଅଛନ୍ତି ଭରି । ୧ ।
ସାର ତହିଁ ବେଦ ବଉଧ ତହିଁକେ ନାମରୂପ ନ ମାନନ୍ତି ।
କେହିଥିବ ଅବା ବୋଲିଣ ତର୍କରେ ଭ୍ରମ ହୋଇ ମରୁଥାନ୍ତି । ୨ ।
ବେଦ ମଧ୍ୟେ ହିନ୍ଦୁ ମୁସଲମାନ ଏ ହିନ୍ଦୁ ତହିଁ ଆମ୍ଭମତ ।
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଏସବୁ ଚାରିଆଶ୍ରମେ ବିଦିତ । ୩ ।
ବେଦ ପ୍ରବୃତ୍ତି ନିବୃତ୍ତି ଦୁଇମାର୍ଗ ପ୍ରବୃତ୍ତି ସଂସାରେ ସୁଖ ।
ନିବୃତ୍ତି ମାର୍ଗେ ଜନ୍ମ ମୃତ୍ୟୁ ଛୁଟଇ ସେ ଧର୍ମ ଅତି ଅଲକ୍ଷ । ୪ ।
ଦ୍ୱୈତବାଦୀ ବୈଷ୍ଣବ ବୋଲନ୍ତି ଅଦ୍ୱୈତବାଦୀ ଯେ ସ୍ମାର୍ତ୍ତ ।
ଈଶ୍ୱର ପରେ ଭେଦାଭେଦ ସମ୍ବନ୍ଧ କରନ୍ତି କରି ତା ଭକ୍ତ । ୫ ।

× × ×

ପୁଣ୍ଡ୍ରକ ବାସୁଦେବ ପରି ବାସୁଦେବ ବୋଲାଇବା କାହିଁ ।
କହେ ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା ମୁକତିକି ଇଚ୍ଛା ନାହିଁ" । ୧୮ ।

(ନିଷ୍ଠାମଣିମାଳା-୨ୟ ଛାନ୍ଦ)

ଉପରୋକ୍ତ ପଦମାନଙ୍କରେ କବି ଅଦ୍ୱୈତବାଦୀ ସ୍ମାର୍ତ୍ତ ମତକୁ ନିନ୍ଦା କରିଅଛନ୍ତି । କାରଣ ସେମାନେ ନିଜକୁ ସ୍ୱୟଂ ନାରାୟଣ ବୋଲି କହୁଥିଲେ । ଉପାଧି ଥିବାରୁ ଜୀବ ଓ ବ୍ରହ୍ମ ମଧ୍ୟରେ ଭେଦ ଅଛି ମାତ୍ର ଉପାଧି ଛାଡ଼ିଲେ ଜୀବ ଓ ବ୍ରହ୍ମ ଏକ ବୋଲି ଏମାନଙ୍କ ମତ । ଅଦ୍ୱୈତବାଦୀଙ୍କର ଶୈବ, ଶାକ୍ତ ଗାଣପତ୍ୟ ଓ ସୌର ନାମରେ ଚାରିଗୋଟି ସମ୍ପ୍ରଦାୟ ଅଛି । ଏଥିରେ କବି କେତେକ ତତ୍ତ୍ୱକୁ ସରଳ ଭାବରେ ବୁଝାଇ ଅଛନ୍ତି । ଈଶ୍ୱର ସୃଷ୍ଟି ସ୍ଥାବର, ଜଙ୍ଗମ କୀଟ ପତଙ୍ଗାଦି ଚାରିଭାଗରେ ବିଭକ୍ତ । ଜଙ୍ଗମ ମଧ୍ୟରେ ଉଚ୍ଚମତ ଦୁଇଜାତିର ମନୁଷ୍ୟ ରହିଅଛନ୍ତି । କେତେକ ମନୁଷ୍ୟ ବେଦକୁ ସାର ବୋଲି ମାନନ୍ତି ଓ କେତେକ ବୌଦ୍ଧାବଲମ୍ବୀ ଈଶ୍ୱରଙ୍କ ନାମ ଓ ରୂପକୁ ମାନନ୍ତି

ନାହିଁ । କେତେକ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ସନ୍ଦେହବାନ । ହିନ୍ଦୁ ଧର୍ମରେ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଓ ଶୁଦ୍ର ଚାରିଗୋଟି ଆଶ୍ରମ । ପ୍ରବୃତ୍ତି ଓ ନିବୃତ୍ତି ଦୁଇଟି ମାର୍ଗ ରହିଅଛି । ନିବୃତ୍ତି ମାର୍ଗ ଶ୍ରେୟସ୍କର ଅଟେ ।

ବୈଷ୍ଣବମାନେ ଦ୍ୱୈତବାଦୀ । ସେମାନଙ୍କ ଈଶ୍ୱରଙ୍କର ନିକଟରେ ସେବ୍ୟ ଓ ସେବକ ସମ୍ବନ୍ଧ 'କୃଷ୍ଣ ପ୍ରଭୁ ଓ ବୈଷ୍ଣବ ଦାସ' । ବୈଷ୍ଣବମାନେ କୃଷ୍ଣଙ୍କୁ ନାରାୟଣ, ନରସିଂହ, ରାମ, କୃଷ୍ଣ ଯେ କୌଣସି ଭାବରେ ଭଜନ କରନ୍ତି ଓ ନାରଦ, ବ୍ୟାସ, ସନକ, ଶୁକଦେବ, ବଶିଷ୍ଠାଦି ଋଷିମାନଙ୍କ ମତକୁ ଆଚରଣ କରନ୍ତି ।

ବୈଷ୍ଣବ ସଦାନନ୍ଦ ବା ସାଧୁଚରଣ ଦାସ ଜଣେ ବିଶିଷ୍ଟ ଭକ୍ତ କବି । ଶ୍ରୀଚୈତନ୍ୟଙ୍କଠାରେ ତାଙ୍କର ଅଗାଧ ବିଶ୍ୱାସ ଓ ଭକ୍ତି ।

ପ୍ରଥମତଃ ଶ୍ରୀରାଧାଙ୍କର କୃଷ୍ଣ ପ୍ରୀତି କପରି ? ଶ୍ରୀରାଧାଙ୍କ କୃଷ୍ଣ ପ୍ରେମର ଆନନ୍ଦ ମାତ୍ରା ଯେ ଅଧିକ, ଏହା କୃଷ୍ଣ ଅନୁମାନ କରି ସେହି ଆନନ୍ଦ ଭୋଗପାଇଁ ଇଚ୍ଛାକଲେ । ଦ୍ୱିତୀୟରେ ଶ୍ରୀରାଧାରାଣୀ ଯେଉଁ କୃଷ୍ଣ ମାଧୁର୍ଯ୍ୟ ଆସ୍ୱାଦନ କରନ୍ତି, କୃଷ୍ଣ ନିଜେ ସେହି ମାଧୁରୀ ତାଙ୍କର କପରି ଆସ୍ୱାଦନ କରିବାକୁ ଚାହିଁଲେ । ତୃତୀୟରେ କୃଷ୍ଣଙ୍କୁ ପ୍ରୀତିକରି ରାଧାଙ୍କର ଯେଉଁ ସୁଖ ଉତ୍ପାଦନ ହୁଏ, ତାହା କପରି ? ତାହା ମଧ୍ୟ ଜାଣିବାକୁ କୃଷ୍ଣଙ୍କର ଇଚ୍ଛା ହେଲା । ଏହାହିଁ ଚୈତନ୍ୟାବତାରର ମୂଳ ରହସ୍ୟ । ଅନ୍ୟାନ୍ୟ ସମସ୍ତ ଗୌଣ । ଶ୍ରୀରାଧାକୃଷ୍ଣ ତତ୍ତ୍ୱର ପୂର୍ଣ୍ଣ ପ୍ରକଟନ ହେଉଛି 'ଶ୍ରୀଚୈତନ୍ୟ ଅବତାର' ମଧ୍ୟରେ । (୨୪)

ଶ୍ରୀଗୌରାବତାରରେ ରସ ଅନୁଭୂତିର ସ୍ୱରୂପ ଅତି ଚମତ୍କାର ଓ ଅପୂର୍ବ । ତେଣୁ ଏହାକୁ ଲକ୍ଷ୍ୟକରି ଶ୍ରୀଳ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଭାରତ ପ୍ରସିଦ୍ଧ ଅଦ୍ୱିତୀୟ ନୈୟାୟିକ ଓ ବୈଦାନ୍ତିକ ପଣ୍ଡିତ

---

(୨୪) "ରାଧାକୃଷ୍ଣ ପ୍ରଣୟ ବିକୃତି ଆହ୍ଲାଦିନୀ ଶକ୍ତିରସ୍ମାତ୍ ।
ଏକାତ୍ମନା ବପି ଭୁବି ପୁରା ଦେହ ଭେଦୌ ଗତୌ ତୌ ।
ଚୈତନ୍ୟାଖ୍ୟଂ ପ୍ରକଟ ମଧୁନା ତଦ୍ଦ୍ୱୟଂ ଚୈକ୍ୟମାପ୍ତଂ
ରାଧାଭାବ ଦ୍ୟୁତି ସୁବଳିତମ୍ ନୌମି କୃଷ୍ଣ ସ୍ୱରୂପମ୍ ॥"

ଶ୍ରୀଳ ଶ୍ରୀରୂପଦାମୋଦର ଗୋସ୍ୱାମୀଙ୍କ ଦ୍ୱାରା ଲିଖିତ । 'ପରମାର୍ଥୀ' ପତ୍ରିକା – ୧ମ ସଂଖ୍ୟା ୩୧ଶ ବର୍ଷ ପୃ. ୪ରେ ପ୍ରକାଶିତ ।

କହୁଅଛନ୍ତି, "ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ସକଳ ଅବତାରର ଫଳ ଶୁଣିଅଛୁ, ମାତ୍ର ପାପୀ ନିସ୍ତାର ପାଇଁ ଶ୍ରୀଚୈତନ୍ୟଙ୍କ ପରି ପ୍ରଭୁ ଆଉ କେହି ନାହିଁ ।(୨୫) ଏଣୁ ଶାସ୍ତ୍ରରେ ଅଛି;

"ଶ୍ରୀକୃଷ୍ଣ ଚୈତନ୍ୟ ପ୍ରଭୁ ସ୍ୱୟଂ ଭଗବାନ ।
ତାହାର ପଦାରବିନ୍ଦେ ସହସ୍ର ପ୍ରଣାମ ॥"

(ଶ୍ରୀଚୈତନ୍ୟ ଚରିତାମୃତ)

କବି ସଦାନନ୍ଦ ସ୍ୱରଚିତ ଅଧିକାଂଶ କାବ୍ୟାଦିରେ ତାଙ୍କର ପରମ ଇଷ୍ଟ କଳିଯୁଗାବତାର ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ନାମ, ଧାମ, ତତ୍ତ୍ୱ ଲୀଳାଦି ବର୍ଣ୍ଣନା କରି ନିଜ ଜୀବନ ଧନ୍ୟ କରିଅଛନ୍ତି । ଖ୍ରୀ : ଅ : ୧୯୭୭ ୩୧ଶ ବର୍ଷ ପ୍ରଥମ ସଂଖ୍ୟା 'ପରମାର୍ଥୀ' ପତ୍ରିକାରେ ପ୍ରକାଶିତ "ଶ୍ରୀଚୈତନ୍ୟବାଣୀ - ଶ୍ରୀଗୌଡ଼ୀୟବାଣୀ" ନାମକ ପ୍ରବନ୍ଧଟିରେ ଶ୍ରୀଚୈତନ୍ୟଙ୍କ ସମ୍ପର୍କରେ ଯେଉଁ ତତ୍ତ୍ୱ ସବୁ ପ୍ରକାଶିତ ହୋଇଅଛି, ସେ ସବୁ ବହୁ ପୂର୍ବରୁ କବି ସଦାନନ୍ଦ ସ୍ୱକାବ୍ୟ 'ନିସ୍ତାରଜନମଣି'ରେ ଓ 'ନାମଚିନ୍ତା-ମଣି'ରେ ଉଲ୍ଲେଖ କରିଯାଇଛନ୍ତି । ପ୍ରବନ୍ଧ 'ଶ୍ରୀଚୈତନ୍ୟବାଣୀ-ଶ୍ରୀଗୌଡ଼ୀୟ ବାଣୀରେ ପ୍ରକାଶିତ କ୍ରମେ ୧. "ସର୍ବକାରଣ କାରଣ, ଅନନ୍ତ ଶକ୍ତିମାନ, ସର୍ବେଶ୍ୱର ଅଖିଳ ରସାମୃତ ମୂର୍ତ୍ତି ସ୍ୱୟଂ ଭଗବାନ ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣହିଁ ସର୍ବଶ୍ରେଷ୍ଠ ଉପାସ୍ୟ । ବ୍ରହ୍ମ ସ୍ୱରୂପ ତାଙ୍କର ଅଙ୍ଗକାନ୍ତି, ନିର୍ବିଶେଷ ପ୍ରକାଶ, କଳ୍ପିତ ସବିଶେଷ ସ୍ୱରୂପ ପରମାତ୍ମା ତାଙ୍କର ଆଂଶିକ ପ୍ରକାଶ । ଷଡୈଶ୍ୱର୍ଯ୍ୟ ପୂର୍ଣ୍ଣ ଭଗବାନ ନାରାୟଣ ତାଙ୍କର ବିଳାସ ମୂର୍ତ୍ତି ପୂର୍ଣ୍ଣ ସବିଶେଷ ପ୍ରକାଶ ।" ୨. "ସଚ୍ଚିଦାନନ୍ଦ ବିଗ୍ରହ ଚିତ୍ ବିଳାସୀ ଶ୍ରୀକୃଷ୍ଣ ତାଙ୍କର ସ୍ୱରୂପ ଶକ୍ତି ଦ୍ୱାରା ବୈକୁଣ୍ଠ ଉପରି ନିତ୍ୟ ଗୋଲୋକ ଧାମରେ ସ୍ୱୟଂ ପ୍ରେମର ବିଷୟ ଓ ଆଶ୍ରୟ ହୋଇ ନିତ୍ୟକାଳ ପ୍ରେମରସ ଆସ୍ୱାଦନ ଲୀଳା କରନ୍ତି । ଏହାହିଁ ତାଙ୍କର ନିତ୍ୟ ଚିନ୍ମୟ ଲୀଳା ।"

ଶ୍ରୀଚୈତନ୍ୟଦେବଙ୍କ ପୂର୍ବରୁ ଓ ତାଙ୍କ ସମୟରେ ଉତ୍କଳରେ ବହୁ ଭକ୍ତ କବି ରାଧାକୃଷ୍ଣ ଚରିତର ବର୍ଣ୍ଣନା କରିଥିଲେ । ସୁଦ୍ଧା ଚୈତନ୍ୟପନ୍ଥୀ

(୨୫) "ସର୍ବେଷାମବତାରାଣାଂ ପୁରାଣୈର୍ଯତ୍ ଶ୍ରୁତଂ ଫଳଂ
ତସ୍ମାନ୍ନୋ ନିଷ୍କୃତି ନାସ୍ତି ଅତସ୍ତେ ଶରଣଂ ଗତଃ ॥"
(ଶ୍ରୀଳ ବାସୁଦେବ ସାର୍ବଭୌମଭଟ୍ଟ)

ବୈଷ୍ଣବ ମତ ନିର୍ଦ୍ଦିଷ୍ଟ ଆକାର ଧାରଣ କରିନଥିଲା । ଏହାର ଅବ୍ୟବହିତ ପରେ କ୍ରମେ ଏହାର ସ୍ୱରୂପ ସ୍ପଷ୍ଟ ହେଲା । ବୃନ୍ଦାବନ ଗୋଲୋକଧାମ ମାର୍ଗୀ, ରୂପ ସନାତନ ଓ ଜୀବ ପ୍ରଭୃତି ଗୋସ୍ୱାମୀମାନେ ସଂସ୍କୃତରେ ବହୁ ପ୍ରାମାଣିକ ଗ୍ରନ୍ଥ ରଚନାକରି ସମ୍ପ୍ରଦାୟମାର୍ଗ ପରିଷ୍କାର କରିଦେଲେ ଏବଂ ପରବର୍ତ୍ତୀ ବହୁ କବି ଏମାନଙ୍କ ପଦାନୁସରଣ କରି ସମ୍ପ୍ରଦାୟ ସମ୍ମତ କାବ୍ୟ କବିତା ଓ ଗ୍ରନ୍ଥ ରଚନା କଲେ । ଅଷ୍ଟାଦଶ ଶତାବ୍ଦୀ ବେଳକୁ ଅର୍ଥାତ ସଦାନନ୍ଦଙ୍କ ଆବିର୍ଭାବ ସମୟକୁ ଓଡ଼ିଶାରେ ବହୁ ବୃନ୍ଦାବନଧାମ ମାର୍ଗୀ ବୈଷ୍ଣବ ଗ୍ରନ୍ଥ ରଚିତ ହୋଇ ବୈଷ୍ଣବମାନଙ୍କ ମନ ଆନନ୍ଦିତ କରିଥିଲା । ଏହି ସମ୍ପ୍ରଦାୟର ତଥ୍ୟ ଓ ତତ୍ତ୍ୱ ସମ୍ବନ୍ଧରେ ସଦାନନ୍ଦ ଏକାଧିକ ଗ୍ରନ୍ଥ ରଚନା କରି ଜଣେ ପ୍ରଧାନ ସାମ୍ପ୍ରଦାୟିକ ପ୍ରଚାରକର ଆସନ ଅଧିକାର କରିପାରିଥିଲେ । ଶିଷ୍ୟ ଅଭିମନ୍ୟୁ ଗୁରୁଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । କବି ସଦାନନ୍ଦ ଯେ ବୈଷ୍ଣବ କବିମାନଙ୍କ ମଧ୍ୟରେ ବ୍ରଜଲୀଳା ସମ୍ବନ୍ଧରେ ତାତ୍ତ୍ୱିକ ଓ କବିତ୍ୱପୂର୍ଣ୍ଣ ବିଚାର ବର୍ଣ୍ଣନା କ୍ଷେତ୍ରରେ ସର୍ବଶ୍ରେଷ୍ଠ ଏହା କହିବା ବାହୁଲ୍ୟ ଅଟେ ।



# ପଞ୍ଚମ ପରିଚ୍ଛେଦ

## କବିଙ୍କ ସାହିତ୍ୟ କୃତିରେ ତୁଳନାତ୍ମକ ମୂଲ୍ୟାୟନ

ପ୍ରତିଭାବାନ୍ କବି ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା ଓଡ଼ିଆ କାବ୍ୟ ଆକାଶକୁ ଅକଳନ୍ତ ଆଲୋକ ଓ ସୌନ୍ଦର୍ଯ୍ୟ ପ୍ରଦାନ କରିଅଛନ୍ତି । କବି ଓଡ଼ିଆ, ସଂସ୍କୃତ, ବଙ୍ଗଳା ଓ ହିନ୍ଦୀ ଭାଷାରେ ଅତ୍ୟନ୍ତ ନିପୁଣ ଥିବା ତାଙ୍କ କାବ୍ୟ, କବିତା ଅନୁବାଦାଦିରୁ ସହଜରେ ଅନୁମାନ କରିହୁଏ । କବିଙ୍କର ଏହି ପ୍ରତିଭା କେବଳ ଚେଷ୍ଟା ପ୍ରସୂତ ନୁହେଁ, ଈଶ୍ୱର ପ୍ରଦତ୍ତ ମଧ୍ୟ । ଦିବ୍ୟଜ୍ଞାନ ଯୁକ୍ତ ଏହି କବିଙ୍କର ହାଲଦର୍ଶନ ସୁଦୂର ପ୍ରସାରି । କବି ସସୀମ ଜୀବନ କାଳ ମଧ୍ୟରେ ଯେଉଁ ଅସୀମ କାବ୍ୟରାଜ୍ୟ ସୃଷ୍ଟି କରିଅଛନ୍ତି, ତାହା ଅନନ୍ୟ ସାଧାରଣ । ସଂସ୍କୃତ ପୁରାଣ ଓ ସାହିତ୍ୟରେ କବି ଅଦ୍ୱିତୀୟ ପଣ୍ଡିତ ଥିଲେ । ସଂସ୍କୃତ ଭାଗବତ, ଗୀତା, ବ୍ରହ୍ମବୈବର୍ତ୍ତ ପୁରାଣ, ପଦ୍ମପୁରାଣ ଆଦିର ପ୍ରଭାବ କବିଙ୍କ କାବ୍ୟରେ ଦୃଷ୍ଟହୁଏ ।

କବି କେତେକ ଉଚ୍ଚକୋଟୀର ସଂସ୍କୃତ ଭକ୍ତି କାବ୍ୟ ଅଧ୍ୟୟନ କରି ତାହା ପ୍ରାକୃତ ଅର୍ଥାତ୍ ଓଡ଼ିଆ ଭାଷାରେ ଅନୁବାଦ କରିଥିବା ଦେଖାଯାଏ । ତାଙ୍କ ରଚିତ ଗ୍ରନ୍ଥ ବ୍ରଜଲୀଳାମୃତ ସମୁଦ୍ର, କୀର୍ତ୍ତନ ଉଜ୍ଜ୍ୱଳ, ଚନ୍ଦ୍ର ତରଙ୍ଗିଣୀ ଓ ନିଷ୍ଠାମାଳମଣି ପ୍ରଭୃତି କେବଳ ସଂସ୍କୃତ ଭକ୍ତି କାବ୍ୟର ଅନୁବାଦ ମାତ୍ର (୧) । ସେ ଅନୁବାଦ କ୍ଷେତ୍ରରେ ଯେଉଁ ମୌଳିକତା ପ୍ରଦର୍ଶନ କରିଅଛନ୍ତି, ତାହା ତାଙ୍କ ମହାନ୍ ପାଣ୍ଡିତ୍ୟର ପରିଚାୟକ । ଦ୍ୱିତୀୟ ପରିଚ୍ଛେଦରେ ଏ ଗ୍ରନ୍ଥଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ସ୍ଥାନ ପାଇଅଛି ।

---

(୧) କ) ସଦାନନ୍ଦଙ୍କ 'ବ୍ରଜଲୀଳାମୃତ ସମୁଦ୍ର' ରୂପ ଗୋସ୍ୱାମୀଙ୍କ କୃତ ବିଦଗ୍ଧ ମାଧବର ଅନୁବାଦ ।

ଖ) 'କୀର୍ତ୍ତନ ଉଜ୍ଜ୍ୱଳ' କିଶୋର ଦାସଙ୍କ ଶ୍ରବଣମଙ୍ଗଳର ଅନୁବାଦ ।

ଗ) 'ଚନ୍ଦ୍ର ତରଙ୍ଗିଣୀ' ରୂପ ଗୋସ୍ୱାମୀଙ୍କ ହରିଭକ୍ତି ରସାମୃତ ସିନ୍ଧୁର ଅନୁବାଦ ।

ଏହା ଛଡ଼ା କବିଙ୍କ ରଚିତ ଅଳ୍ପ କେତେକ ଶାସ୍ତ୍ରୀୟ ଗ୍ରନ୍ଥ, ଯଥା— ସଙ୍ଗୀତ ସଦାନନ୍ଦ, ସଂଗୀତପଦ୍ମ ଓ ବାଳବୋଧିନୀରେ ମଧ୍ୟ ସଂସ୍କୃତ ସାହିତ୍ୟର ପ୍ରଭାବ ପରିପୂର୍ଣ୍ଣ ଭାବରେ ପରିଲକ୍ଷିତ ହୁଏ । ସଂସ୍କୃତ ଭାଷାରେ କେବଳ ଯେ କବି ସଦାନନ୍ଦଙ୍କର ଅଗାଧ ପାଣ୍ଡିତ୍ୟ ଥିଲା, ତାହା ନୁହେଁ, ବଙ୍ଗଳା ଓ ବ୍ରଜବୋଲି ଭାଷାରେ କବି ଯଥେଷ୍ଟ ଜ୍ଞାନ ଅର୍ଜନ କରିଥିଲେ । ବ୍ରଜବୋଲି ଭାଷାରେ କବି 'ଶ୍ରୀକୃଷ୍ଣ ଉଜ୍ଜ୍ୱଳ' ନାମକ କ୍ଷୁଦ୍ର ଗ୍ରନ୍ଥ ଓ କେତେକ କ୍ଷୁଦ୍ର କବିତା ମଧ୍ୟ ରଚନା କରି ଯାଇଅଛନ୍ତି ।

ଶ୍ରୀ ରୂପଗୋସ୍ୱାମୀଙ୍କ କୃତ ସଂସ୍କୃତ ନାଟକ 'ବିଦଗ୍ଧ ମାଧବ'ର ବଙ୍ଗଳା ଅନୁବାଦ ବଙ୍ଗୀୟ ବୈଷ୍ଣବ କବି ଯଦୁନନ୍ଦନ ଦାସ କରିଥିଲେ । 'ବ୍ରଜଲୀଳାମୃତ ସମୁଦ୍ର' ରଚନା କଲାବେଳେ କବି ଯଦୁନନ୍ଦନଙ୍କ ଅନୁବାଦର ସାହାଯ୍ୟ ନେଇଥିବା ବିଷୟ ସ୍ୱଗ୍ରନ୍ଥରେ ବ୍ୟକ୍ତ କରିଅଛନ୍ତି (୨) । ଶ୍ରୀକୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କ ରଚିତ 'ଶ୍ରୀଚୈତନ୍ୟ ଚରିତାମୃତ' ଦ୍ୱାରା ସଦାନନ୍ଦଙ୍କ ରାଧାକୃଷ୍ଣଲୀଳା ବିଷୟକ କାବ୍ୟ କବିତାଗୁଡ଼ିକ ବିଶେଷ ଭାବରେ ପ୍ରଭାବିତ । ସଂସ୍କୃତ, ବଙ୍ଗଳା, ବ୍ରଜବୋଲି ଭାଷାର କବିମାନଙ୍କ ପ୍ରଭାବରେ କବି ଯେପରି ପ୍ରଭାବିତ ହୋଇଥିଲେ, ସେହିପରି ଭଞ୍ଜାଦି ଓଡ଼ିଆ କବି-ମାନଙ୍କ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଥିଲେ । 'ଯୁଗଳ ରସାମୃତ ଭଉଁରୀ' (ଅପ୍ରକାଶିତ) କାବ୍ୟରେ ସଦାନନ୍ଦ ଉପେନ୍ଦ୍ର ଭଞ୍ଜ, ଲୋକନାଥ, ବିଦ୍ୟାଧର, କୃଷ୍ଣଦାସ (ଦୀନକୃଷ୍ଣ) ଭୂପତି ପଣ୍ଡିତ, ଦୀନବନ୍ଧୁ ବିଜେଙ୍କ ସମ୍ବନ୍ଧରେ ମତ ବ୍ୟକ୍ତ କରି ଅନ୍ୟ କବିମାନଙ୍କୁ ଅସ୍ୱୀକାର କରିଅଛନ୍ତି (୩) ।

କବି ତତ୍କାଳୀନ ଓଡ଼ିଆ କବିମାନଙ୍କ ମଧ୍ୟରେ କେବଳ ଅଳ୍ପ କେତେ ଜଣ ଶ୍ରେଷ୍ଠ କବିଙ୍କ ନାମୋଲ୍ଲେଖ କରିଅଛନ୍ତି । ଅନ୍ୟ କବିମାନେ 'ଯୋଡ଼ାମୋଡ଼ା' କରି ପଦରଚନା କରିଥିବା ହେତୁ ସେମାନଙ୍କୁ ସଦାନନ୍ଦ କବିଶ୍ରେଣୀରେ ଗଣ୍ୟ କରିନାହାନ୍ତି । କବି ସଦାନନ୍ଦ ଶାକ୍ତ ସାମ୍ପ୍ରଦାୟିକ

---

(୨) ବିଦଗ୍ଧମାଧବ ତୁମ୍ଭର କୃପାରେ ଯେଉଁ ଗ୍ରନ୍ଥରେ,
ବାର ବାର ପ୍ରଣମଇ ଶ୍ରୀରୂପ ପଦ୍ମରେ । ୫୧ ।
ଗୋସାଇଁ ଗ୍ରନ୍ଥ ପଦ୍ୟାର କର୍ତ୍ତା ଯେ ଆପଣ,
ହେ ଯଦୁନନ୍ଦନ ବନ୍ଧୁ ତୁମ୍ଭ ଶ୍ରୀଚରଣ । ୫୨ ।
(୨ୟ ଛାନ୍ଦ,-ବ୍ର.ଲୀ.ସ)

(୩) ଯୁଗଳ ରସାମୃତ ଭଉଁରୀ, ୪୮ ଛାନ୍ଦ ବା ଶେଷ ଛାନ୍ଦ । (ଅପ୍ରକାଶିତ)

ବୈଷ୍ଣବ ଥିବା ହେତୁ 'କୃଷ୍ଣ ପୟାର' ରଚନା କରିଥିବା କବିମାନଙ୍କୁ ଅଧିକ ସମ୍ମାନ ଦେଇ(୪), ଅନ୍ୟ କବିମାନଙ୍କୁ କିଞ୍ଚିତ୍ ନ୍ୟୂନ କରିଥିବା ଦେଖାଯାଏ ।

କବି 'ଯୁଗଳ ରସାମୃତ ଭଉଁରୀରେ' ନାମୋଲ୍ଲେଖ କରିଥିବା କବିମାନଙ୍କ ବ୍ୟତୀତ, ପ୍ରେମଭକ୍ତି ରସ ଉପାସକ ଅନ୍ୟ କେତେକ ଓଡ଼ିଆ କବି, ଯଥା—ଜନାର୍ଦ୍ଦନ ଦାସ, ବୃନ୍ଦାବତୀ ଦାସୀ, ଶ୍ୟାମ ଦାସ, ବନମାଳୀ ଦାସ, ଶ୍ରୀହରି ଦାସ ପ୍ରମୁଖଙ୍କ ଦ୍ଵାରା ପ୍ରଭାବିତ ହୋଇଥିବା ଜଣାଯାଏ । ସଦାନନ୍ଦ ଯେତିକ ପରିମାଣରେ ପୂର୍ବବର୍ତ୍ତୀ ଓ ସମସାମୟିକ ପ୍ରେମଭକ୍ତି ଉପାସକ କବିମାନଙ୍କ ଦ୍ଵାରା ପ୍ରଭାବିତ ହୋଇଥିଲେ ସେତିକ ପରିମାଣରେ ପରବର୍ତ୍ତୀ କବିମାନେ ତାଙ୍କ ଦ୍ଵାରା ପ୍ରଭାବିତ ହୋଇଥିବା ଦେଖାଯାଏ । ଏହି ପରବର୍ତ୍ତୀ କବିମାନଙ୍କ ମଧ୍ୟରେ ମୁଖ୍ୟଆସନ ଗ୍ରହଣ କରିଥିଲେ କବି 'ଅଭିମନ୍ୟୁ ସାମନ୍ତସିଂହାର' ।

କବି ସଦାନନ୍ଦ ଶ୍ରୀଚୈତନ୍ୟପନ୍ଥୀ ବା ବ୍ରଜପନ୍ଥୀ ବୈଷ୍ଣବ ଥିବାହେତୁ ଶ୍ରୀମଦ୍ଭାଗବତକୁ ମୂଳ ଓ ଶ୍ରେଷ୍ଠତନ୍ତ୍ର ରୂପେ ଗ୍ରହଣ କରିଅଛନ୍ତି । ତେଣୁ ଶ୍ରୀମଦ୍ଭାଗବତ ମହାପୁରାଣରେ କେତେକ ବିଶିଷ୍ଟ ସଂସ୍କୃତ ଶ୍ଳୋକକୁ କବି ଅତି ଚମତ୍କାର ଭାବରେ ଓଡ଼ିଆରେ ଅନୁବାଦ କରି ନିଷ୍ଠାମାଳମଣି ଗ୍ରନ୍ଥର ବିଭିନ୍ନ ଛାନ୍ଦରେ ପ୍ରୟୋଗ କରିଅଛନ୍ତି । ଯଥା—

(୫) ଅନେକ ଶାସ୍ତ୍ର ବହୁତ ବିଦ୍ୟା ଏ ସଂସାରେ
ଅଳ୍ପକାଳେ ବହୁ ବିଘ୍ନ ପଡ଼ଇ ତହିଁରେ ଯେ । ୧ ।
ଏଥିରେ ଯେ ସାର ତାହା ଉପାସନା କର
କ୍ଷୀରରୁ ସାରାଂଶ ଭକ୍ଷେ ହଂସ ଯେ ପ୍ରକାର ଯେ । ୨ ।
(ନିଷ୍ଠାମାଳମଣି - ୩ୟ ଛାନ୍ଦ)

---

(୪) "କବି ଯେ ଭଣେ କୃଷ୍ଣ ପୟାର ।
ତାଙ୍କୁ କବିସୂର୍ଯ୍ୟ ନମସ୍କାର ।
ପ୍ରେମ ତରଙ୍ଗିଣୀ ଗ୍ରନ୍ଥସାର ।"
(ପ୍ରେମ ତରଙ୍ଗିଣୀ-୩୦ ଛାନ୍ଦ-୨୧ ପଦ, ପୃଷ୍ଠା-୧୭୧ । ପ୍ରକାଶକ—ଶ୍ରୀ ରାଧାକୃଷ୍ଣ ବସୁ, ଏମ୍. ଏ, ଶ୍ରୀ ରାସବିହାରୀ ମଠ, କଟକ-୧୯୩୨)

(୫) ଅନେକ ଶାସ୍ତ୍ରଂ ବହୁଧା ଚ ବିଦ୍ୟା ସ୍ଵଳ୍ପଶ୍ଚକାଳଃ ବହୁବିଘ୍ନତା ଚ ।
ଯତ୍ସାରଭୂତଂ ତଦୁପାସନୀୟଂ ହଂସୋ ଯଥା କ୍ଷୀରମିବାମ୍ବୁମିଶ୍ରଂ ॥
(ଶ୍ରୀମଦ୍ଭାଗବତ)

(୬) ଏଣୁ ମହାପୁରାଣ ଯେ ଶ୍ରୀମଦ୍ଭାଗବତ ।
କର୍ମଜ୍ଞାନ କହି କଲେ ଭକ୍ତିର ସିଦ୍ଧାନ୍ତ ଯେ । ୧ ।
ପରମାତ୍ମା, ବ୍ରହ୍ମ, ଭଗବାନ, ତିନି କଥା ।
ବୁଝାଇ କହିଲେ ଯେହ୍ନେ ଭେଦାଭେଦ ଯଥା । ୨ ।
(ନିଷ୍ଠା ମାଳମଣି-ଷଷ୍ଠ ଛନ୍ଦ)

(୭) "ସ୍ତ୍ରିୟ ଉରଗେନ୍ଦ୍ର" ଶ୍ଳୋକେ ସଂଶୟ ହୁଅନ୍ତେ ।
ଅର୍ଥ ପ୍ରକଟିତ ହୋଇଲା ପୁଣ ତାର ପ୍ରାନ୍ତେ ଯେ । ୮ ।
ସ୍ତ୍ରିୟାଙ୍କର ପ୍ରାପ୍ତି କୃଷ୍ଣ ସୂର୍ଯ୍ୟର ସଦୃଶ ।
ଅରିପ୍ରାପ୍ତି ବ୍ରହ୍ମ ତା କିରଣ ନିର୍ବିଶେଷ ଯେ । ୯ ।
(ନିଷ୍ଠା ମାଳମଣି-ଷଷ୍ଠ ଛନ୍ଦ)

(୮) ଭୁକ୍ତି ମୁକ୍ତି ତୁଚ୍ଛକରି ଭକ୍ତି କଲେ ସାର ।
କ୍ରମରେ ବର୍ଣ୍ଣିଲେ ଚତୁର୍ବିଂଶ ଅବତାର ଯେ । ୧୦ ।
ଅବତାରୀ କୃଷ୍ଣର କହନ୍ତେ ଅବତାର ।
ସ୍ୱୟଂ ଭଗବାନ ଏ ପୁରୁଷେ ଅଂଶ ଯାର ଯେ । ୧୧ ।
(ନିଷ୍ଠା ମାଳମଣି-ଷଷ୍ଠ ଛନ୍ଦ)

---

(୬) ବଦନ୍ତି ତତ୍ତତ୍ତ୍ୱବିଦଃ ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟଂ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ॥
(ଶ୍ରୀମଦ୍ଭାଗବତ)

(୭) ନିଭୃତ ମରୁନ୍ମନୋକ୍ଷଦୃଢ ଯୋଗଯୁଜୋ ହୃଦି ଯନ୍
ମୁନୟ ଉପାସତେ ତଦରୟୋଽପି ଯଯୁଃ ସ୍ମରଣାତ୍ ।
ସ୍ତ୍ରିୟ ଉରଗେନ୍ଦ୍ରଭୋଗ ଭୁଜଦଣ୍ଡ ବିଷକ୍ତଧିୟୋ
ବୟମପି ତେ ସମଃ ସମଦୃଶୋଽଙ୍ଘ୍ରି ସରୋଜ ସୁଧାଃ ।
(ଶ୍ରୀମଦ୍ଭାଗବତ)

(୮) ଭୁକ୍ତି ମୁକ୍ତି ସ୍ପୃହା ଯାବତ୍ ପିଶାଚୀ ହୃଦି ବର୍ତ୍ତତେ ।
ତାବଦ୍ ଭକ୍ତି ସୁଖସ୍ୟାତ୍ର କଥମଭ୍ୟୁଦୟୋ ଭବେତ୍ ॥
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ ।
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ ॥
(ରଘୁନାଥ ଦାସ ଗୋସ୍ୱାମୀ)

(୯) ପ୍ରେମସାର ପୂର୍ଣ୍ଣଭାଗ ସଯୋଗ ଠାହିଁରେ ।
ନାହିଁ ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ ଯେ । ୧୬ ।
ଯେହ୍ନେ ପ୍ରେମ କୃଷ୍ଣ ବୋଲେ ସୁଝି ନ ପାରିଲ ।
ସେ ଭାବରୁ ଆଜଠାରୁ ବଞ୍ଚିତ ହୋଇଲ । ୧୭ ।
(ନଷ୍ଟା ନୀଳମଣି-୩ୟ ଛାନ୍ଦ)

କବି ସଦାନନ୍ଦଙ୍କ 'ନଷ୍ଟାନୀଳମଣି' ଗ୍ରନ୍ଥରେ ଭଗବାନ ତତ୍ତ୍ୱ ବ୍ୟକ୍ତିତ ଚୈତନ୍ୟଦେବଙ୍କ ପ୍ରବର୍ତ୍ତିତ ଓ ରୂପସନାତନାଦି ଗୋସ୍ୱାମୀମାନଙ୍କ ଦ୍ୱାରା ବହୁ ଗ୍ରନ୍ଥରେ ପ୍ରତିପାଦିତ ତତ୍ତ୍ୱ ଓ ଆଦ୍ଭୁତ ବର୍ଣ୍ଣିତ ହୋଇଅଛି । (୧୦)

କବି, ଷଡ଼୍ ଗୋସ୍ୱାମୀଙ୍କ ମଧ୍ୟରୁ ବିଶିଷ୍ଟ ପଣ୍ଡିତ ସାଧକ ଶ୍ରୀରୂପ ଗୋସ୍ୱାମୀଙ୍କ ରଚିତ ସଂସ୍କୃତ ନାଟକ 'ବିଦଗ୍ଧ ମାଧବ'ର ଅନୁବାଦ ଓଡ଼ିଆ ଛାନ୍ଦ ବନ୍ଧରେ ଅତି ଅଳ୍ପ ସମୟ ଭିତରେ ରଚନା କରିଥିବା ପ୍ରମାଣ ମିଳେ । ଅବଶ୍ୟ ଏଥିରେ କବି ଯଦୁନନ୍ଦନ ଦାସଙ୍କ ବଙ୍ଗୀୟ ଅନୁବାଦର ସାହାଯ୍ୟ ନେଇଥିବା ଉଲ୍ଲେଖ କରିଅଛନ୍ତି (୧୧) ତଥାପି ମୂଳ ସଂସ୍କୃତ ଗ୍ରନ୍ଥ

---

(୯) ନ ପାରଯେଽହଂ ନିରବଦ୍ୟସଂଯୁଜାଂ,
ସ୍ୱସାଧୁ କୃତ୍ୟଂ ବିବୁଧାୟୁଷାପି ବଃ ।
ଯା ମା ଭଜନ୍ ଦୁର୍ଜ୍ଜରଗେହ ଶୃଙ୍ଖଳାଂ,
ସଂବୃଶ୍ଚ୍ୟ ତଦ୍ ବଃ ପ୍ରତିଯାତୁ ସାଧୁନା ॥
(ଶ୍ରୀମଦ୍ଭାଗବତ) ୨୨ ପଦ, ଦଶମ ସ୍କନ୍ଧ, ଦ୍ୱାତ୍ରିଂଶ ଅଧ୍ୟାୟ ଶେଷ ପଦ ।

(୧୦) ଏହି ନିବନ୍ଧର ଚତୁର୍ଥ ପରିଚ୍ଛେଦରେ ଏହା ଆଲୋଚନା କରାଯାଇଅଛି ।

(୧୧) ଶ୍ରୀରୂପ ଗୋସ୍ୱାମୀ ପାଦପଦ୍ମରେଣୁଗଣ,
ଶିରେ ଧରି ଗାଇ ଛାନ୍ଦେ କୃଷ୍ଣଲୀଳାଗୁଣ । ୧୨୮ ।
ଅନନ୍ତ ସହସ୍ର ମୁଖେ ଗାଏ ନିରବଧି,
ତଥାପି ସେ ଲୀଳା ଗୁଣ ନପାଏ ଅବଧି । ୧୨୯ ।
ମୁଁ ଛାର କି କହିବି ମୋହର ବୁଦ୍ଧି କିସ,
ହୋଉ ନୋହୁ ବୋଧ କରି ଆପଣା ମାନସ । ୧୩୦ ।
ସେ ଶ୍ଳୋକ ବୁଝିବାକୁ ମୋହର ଶକ୍ତି କାହିଁ,
ଯଦୁନନ୍ଦନ ଉଚ୍ଛିଷ୍ଟ ଭକ୍ଷଣ କରଇଁ । ୧୩୧ । (୪୧ଶ ଛାନ୍ଦ)
'ବ୍ରଜଲୀଳାମୃତ ସମୁଦ୍ର' (ଅପ୍ରକାଶିତ)

'ବିଦଗ୍ଧ ମାଧବ' ସହ କବି ସଦାନନ୍ଦଙ୍କ ଅନୁବାଦ ଗ୍ରନ୍ଥ 'ବ୍ରଜଲୀଳାମୃତ ସମୁଦ୍ର'ର ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ । ଅବଶ୍ୟ ଛପନ ଛାନ୍ଦ ବିଶିଷ୍ଟ ଏହି ଅନୁବାଦ ଗ୍ରନ୍ଥଟିକୁ କବି ଅତି ଅଳ୍ପ ସମୟ ଭିତରେ କୃତିତ୍ୱ ସହକାରେ ସମ୍ପୂର୍ଣ୍ଣ କରିଥିଲେ (୧୨) ।

ନିମ୍ନରେ ପ୍ରଦତ୍ତ ହୋଇଥିବା ଏହି ଗ୍ରନ୍ଥର ଅଳ୍ପ କେତେଗୋଟି ଦୃଷ୍ଟାନ୍ତରୁ କବିଙ୍କ ଆଶ୍ଚର୍ଯ୍ୟ କବିତା ରଚନା ଶକ୍ତି ଓ ଅନୁବାଦ ଶକ୍ତିର ପରିଚୟ ମିଳେ ।

(୧୩) ଜୟ ଜୟ କୃଷ୍ଣଲୀଳା ଶିଖରିଣୀ ସାର ।
ଚନ୍ଦ୍ର ସୁଧା ଉନ୍ମାଦିନୀ ଅଟଇ ଯେ ପ୍ରକାର ॥
ତାହାକୁ ଦମନ କରେ ଯେ ଅଟଇ ଏ ମତେ ।
ରାଧାଦି ପ୍ରଣୟ ଘନ ସାର ସୁବାସିତେ ॥
ବିଷମ ସଂସାର ପଥେ ସଦା ତପୋଙ୍ଗମେ ।
ତୃଷାରେ ପୀଡ଼ିତ ଜନମାନେ ଅବିଶ୍ରାମେ ॥
ଏ ଯେ କୃଷ୍ଣ ଲୀଳାମୃତ ଶିଖରିଣୀ ଜାଣ ।
ସେମାନଙ୍କ ତୃଷା ତୃଷ୍ଣା କରନ୍ତୁ ହରଣ ॥
"ବ୍ରଜଲୀଳାମୃତ ସମୁଦ୍ର", ପ୍ରଥମ ଛାନ୍ଦ (ଅପ୍ରକାଶିତ)

---

(୧୨) ଶ୍ରୀରୂପ ଗୋସ୍ୱାମୀ ପାଦ ପଙ୍କଜେ ଶରଣ,
କହୁଛି ପ୍ରକାଶିଲି ଦାସ ଏ ସାଧୁ ଚରଣ ।
ମାର୍ଗଶୀର କୃଷ୍ଣପକ୍ଷ ଦ୍ୱିତିଆରେ ଜନ୍ମ,
ମାଘ କୃଷ୍ଣ ନବମୀରେ ହୋଇଲା ସମ୍ପୂର୍ଣ୍ଣ ।
ଚତୁର୍ଦ୍ଦଶୀ ଅମାବାସ୍ୟାଦି ଏ ତିନି ଦିନ,
ଲେଖିଇ ନାହିଁ, ନିଷେଧ ଏ ପୂର୍ବ ବଚନ ।
ମାସକେ ସମ୍ପୂର୍ଣ୍ଣ କଲି ଉଦ୍‌ବେଗ ମନରେ,
ଦୋଷଥିବ ଯେବେ ନ ଦେଖିବ ବିଜ୍ଞ ନରେ ।
(୧୩) ସୁଧାନାଂ ଚାନ୍ଦ୍ରୀଣାମପି ମଧୁରିମୋନ୍ମାଦ ଦମନୀ,
ଦଧାନା ରାଧାଦି ପ୍ରଣୟ ଘନସାରୈଃ ସୁରଭିତାମ୍ ।
ସମନ୍ତା ସନ୍ତାପୋଦ୍‌ଗମ ବିଷମ ସଂସାର ସରଣି,
ପ୍ରଣୀତା ତେ ତୃଷ୍ଣାଂ ହରତୁ ହରିଲୀଳା ଶିଖରିଣୀ । ୧ ।
(ଶ୍ରୀରୂପ ଗୋସ୍ୱାମୀଙ୍କ କୃତ 'ବିଦଗ୍ଧ ମାଧବମ୍' ନାଟକର 'ପ୍ରଥମ ଅଙ୍କର' 'ପ୍ରଥମ ପଦ' ।)

ଜୟ ଜୟ ହରି ଜଗତରେ କୃପାବାନ
ନବଦ୍ୱୀପେ ଶଚୀମିଶ୍ରପୁରେ ଅବତୀର୍ଣ୍ଣ ।
ଦଗଧ ପୂରଟ ଦ୍ୟୁତି ବଦତ ସୁନ୍ଦର
ଧନ୍ୟ କଳିକାଳ ହେଲ ପାଇ ଶ୍ରୀ ପଯୁର ।
ଚିର ଅନର୍ପିତ ସ୍ୱଉଜ୍ଜ୍ୱଳ ରସ ପ୍ରେମ
ଦେଲେ ଯହିଁ ତହିଁ କୃଷ୍ଣ ଚଇତନ୍ୟ ନାମ ।
ଏମନ୍ତ ଗୌରହରି ମୋ ହୃଦ କନ୍ଦରେ
ସ୍ଫୁରନ୍ତୁ ସଦା ଆପଣା କୃପାଳୁ ଗୁଣରେ ॥ ୧ ।

(ବ୍ରଜଲୀଳାମୃତ ସମୁଦ୍ର- ଅପ୍ରକାଶିତ, ପ୍ରଥମଛାନ୍ଦ)

"ବୋଲନ୍ତି ବ୍ରଜ ସୁନ୍ଦରୀ ବୃନ୍ଦ ସଙ୍ଗତରେ
ବିହରି ଥିଲେ ଯେ କୃଷ୍ଣ ଚନ୍ଦ୍ର ଏହିଠାରେ ।
ଏହି କାଳିନ୍ଦୀର ତଟରେ କୃଷ୍ଣର ବିହାର
ପରସ୍ପର ଶୁଣି ଦୁଃଖିତ ରଜନୀ ବାସର ।
କାନ୍ଦି କାନ୍ଦି କେତେ କାହିଁ ମହୀରେ ଲୋଟନ୍ତି
ଏହି ଦୁଃଖେ ସେ ଯେ ନିଶୀ ବାସର ନଅନ୍ତି ।
ସେ ଭକ୍ତ ବୃନ୍ଦ ମୁକୁନ୍ଦ ବିରହ ସାଗରେ ।
ଭାସିବାରୁ ମହାଦୁଃଖେ ଚେତନା ହାନିଶାରେ" ।

(ବ୍ରଜଲୀଳାମୃତ ସମୁଦ୍ର- ଅପ୍ରକାଶିତ କାବ୍ୟ, ପ୍ରଥମଛାନ୍ଦ)

"ଯଦ୍ୟପି ଏ ଗ୍ରନ୍ଥେ ମୋର କବିତା ନିର୍ବନ୍ଧେ ।
ଅତ୍ୟନ୍ତ ଲଳିତ୍ୟ ବାଣୀ ନୋହିବ ପ୍ରବନ୍ଧେ ॥
ତଥାପି ତ ବୁଧଗଣେ ନୋହିବେ ବିମୁଖ ।
ମନେ ମାନ କୃଷ୍ଣ ଗୁଣରୁ ପାଇବେ ସୁଖ ॥
କୁପୋଦକେ ଶାଳଗ୍ରାମ ସ୍ନାନ କରିଥିଲେ ।
ଚରଣାମୃତ ବୋଲଣ କେ ଅବା ନ ବୋଲେ ॥
ମୂର୍ଦ୍ଧା ନମ୍ର କରି କେଉଁ ଜନ ବା ନ ପିଏ ।
ଏତେ ହେଲେ ବି ଏଥିରେ ନାହିଁତ ସଂଶୟେ ॥

("ବ୍ରଜଲୀଳାମୃତ ସମୁଦ୍ର"- ପ୍ରଥମଛାନ୍ଦ)

ବୃନ୍ଦାବନ ନିକୁଞ୍ଜ କନ୍ଦର ମନୋହର ।
ବିସ୍ତାରଇ ଗୁଣବୃନ୍ଦ ମାଧୁରୀ ନିକର ॥
ରାଧିକାର ସଙ୍ଗେ କେଳି ବିଭ୍ରମ ଭ୍ରମର ।
ଅଭ୍ୟାସ କରିବି ସଦା ମଙ୍ଗଳ ବିସ୍ତାର ॥

("ବ୍ରଜଲୀଳାମୃତ ସମୁଦ୍ର"- ୫୭ ଛାନ୍ଦ)

ଗୋକୁଳ ନିର୍ମଳ କେଳି ସୁଧା ସିନ୍ଧୁ କଣା ।
ହୃଦୟ ଶ୍ରବଣ ସ୍ନିଗ୍ଧେ ସେବେ ଯା ଆପଣା ॥
ହେ ରାଧା ମାଧବ ମଧୁ ମାଧୁରୀ ସ୍ୱରାଜ୍ୟ ।
ଏହି ନିବେଦନ ମୁହିଁ କରୁଛି ସାହାଯ୍ୟ ॥
ତବ ପାଦ ପଦ୍ମେ ଅତି ପ୍ରେମ ଉର୍ମି ଗଣେ ।
ସଦା ଉଦୟେ ହୁଅନ୍ତୁ ସେ ସର୍ବେ ତକ୍ଷଣେ ।

(ବ୍ରଜଲୀଳାମୃତ ସମୁଦ୍ର- ଅପ୍ରକାଶିତ କାବ୍ୟ-୫୭ ଛାନ୍ଦ)

'ତତ୍ତ୍ୱ ତରଙ୍ଗିଣୀ' ସଦାନନ୍ଦଙ୍କର ଅନ୍ୟ ଏକ ଅନୁବାଦ ଗ୍ରନ୍ଥ । ଏହି ଗ୍ରନ୍ଥରେ ଗୋସ୍ୱାମୀମାନଙ୍କ ଧର୍ମତତ୍ତ୍ୱଗୁଡ଼ିକ ଅନୁବାଦ କରିଯାଇଅଛି ।

'ମଙ୍ଗଳା ଚରଣ ପ୍ରେମ୍ନେ ଗୋସ୍ୱାମୀ ବଚନ
ଯାହା ଶ୍ରୀ ଚୈତନ୍ୟ ଦେବ ହୃଦରେ ମୋହର
ପ୍ରବର୍ତ୍ତାଇଲେ ବନ୍ଦୁ ଶ୍ରୀ ଚରଣେ ତାଙ୍କର" ।

( 'ତତ୍ତ୍ୱ ତରଙ୍ଗିଣୀ'- ଉତ୍ତର ବିଭାଗ, ପ୍ରଥମ ତରଙ୍ଗ)

ଏଥିରେ କବି ବିଭିନ୍ନ ସଂସ୍କୃତ ପୁରାଣ, ଯଥା—'ନାରଦ ପଞ୍ଚରାତ୍ର'

('ନାରଦ ପଞ୍ଚରାତ୍ରରେ ଲେଖିଛନ୍ତି ଯାହା,
ଗୋସ୍ୱାଇଁ ଉଦାହରଣ କଲେ ଆଣି ତାହା')- 'ପଦ୍ମପୁରାଣ'
'ପଦ୍ମ ପୁରାଣରେ କହେ ଯେ ହରିଙ୍କି ପୂଜେ,
ଜଗତ ଯାକକୁ ତୋଷି କରି ସେ ସହଜେ' ।
'ଗଉତମୀ ତନ୍ତ୍ର' ସୁଖ ବଇଷଇକ ବାହ୍ଲେଶ୍ୱର ତିନ
ଗଉତମୀ ତନ୍ତ୍ରେ ଉଦାହରଣ ଏ ମାନ'

ଆଜର ଦାର୍ଶନକ ତତ୍ତ୍ୱ ଗୁଡ଼କୁ ସୁନ୍ଦର ଭାବରେ ଅନୁବାଦ କରଅଛନ୍ତି । ଏହା ମଧ୍ୟ କବଙ୍କର ଏକ ବରାଟ ଅନୂବାଦ ଗ୍ରନ୍ଥ । ଏହ୍ବି ବଶିଷ୍ଟ ଗ୍ରନ୍ଥଗୁଡ଼କ ବ୍ୟତୀତ କବଙ୍କର ଅନ୍ୟାନ୍ୟ କେତେଗୁଡ଼ଏ ରଚନା ଯଥା— ସଙ୍ଗୀତ ସଦାନନ୍ଦ, ସ୍ବର ଦୀପିକା, ନାମ ଚନ୍ତାମଣି ଆଦରେ ଅଳ୍ପେ ବହୁତେ ସଂସ୍କୃତର ପ୍ରଭାବ ଅନୁଭୂତ ହୁଏ ।

ବଙ୍ଗଳା ଓ ବ୍ରଜବୋଲି ଭାଷାରେ ସଦାନନ୍ଦ କାବ୍ୟ କବତା ଲେଖିଥିବାର ଦୃଷ୍ଟାନ୍ତ ମିଳେ । କବଙ୍କ ସ୍ୱରଚତ ଗ୍ରନ୍ଥ କୀର୍ତ୍ତନ ଉଜ୍ଜ୍ୱଳ ଓ କେତେକ କ୍ଷୁଦ୍ର କବତା ଏହାର ଜ୍ୱଳନ୍ତ ପ୍ରମାଣ । ସ୍ୱାମୀ ଶ୍ରୀ କଶୋର ଦାସଙ୍କ ରଚତ ସଂସ୍କୃତ ଗ୍ରନ୍ଥ 'ଶ୍ରବଣ ମଙ୍ଗଳ' ଶ୍ଳୋକ ଗୁଡ଼କୁ କବ ବ୍ରଜବୋଲି ଭାଷାରେ କୀର୍ତ୍ତନ ଉଜ୍ଜ୍ୱଳ ଗ୍ରନ୍ଥରେ ଅନୁବାଦ କରଅଛନ୍ତି (୧୪) । ବ୍ରଜପନ୍ଥୀ ଓଡ଼ିଆ ବୈଷ୍ଣବ କବ ସଦାନନ୍ଦ ବ୍ରଜ ରସିକମାନଙ୍କୁ ଆନନ୍ଦ ଦେବା ନମନ୍ତେ ସଂସ୍କୃତ ଗ୍ରନ୍ଥକୁ ବ୍ରଜବୋଲି ଭାଷାରେ ଅନୁବାଦ କର ଯେଉଁ ଆଦର୍ଶ ସୃଷ୍ଟି କରଅଛନ୍ତି, ତାହା ଓଡ଼ିଆ ସାହିତ୍ୟ ଓ ଧର୍ମ କ୍ଷେତ୍ରରେ ବରଳ । କବ ବ୍ରଜବୋଲି ଭାଷାରେ ଶ୍ରୀ ରାଧା କୃଷ୍ଣଙ୍କ ଝୁଲଣ ଗୀତ ରଚନା କରଥିବାର ଉଦାହରଣ ମିଳେ (୧୫) । ଉପରୋକ୍ତ ଆଲୋଚନାରେ ସଂସ୍କୃତ ଓ ବଙ୍ଗଳା ଭାଷା ସହ କବ ସଦାନନ୍ଦ ସମ୍ପର୍କ ସଂକ୍ଷେପରେ ଦର୍ଶାଇ

---

(୧୪) ଆମାର କଣ୍ଠେ ଥାକପୁ କହିବେନ ସ୍ୱାମୀ
ପ୍ରଭୁ ଶ୍ରୀ କଶୋର ଦାସ ପାଦେ ନମି । ୧୧ ।
ଶ୍ରବନ ମଙ୍ଗଲ ଶ୍ଳୋକ ସୂତ୍ରେର ବଚୃର
ପ୍ରକାଶିବେ ସବଲୀଳା କରୟେ ବସ୍ତାର । ୧୨ ।

('କୀର୍ତ୍ତନ ଉଜ୍ଜ୍ୱଳ'—ଅପ୍ରକାଶିତ ଗ୍ରନ୍ଥ, ପ୍ରଥମ ପ୍ରଦୀପ,
ବାଣୀବହାରସ୍ଥ ପୋଥିବଭାଗରୁ ଗୃହୀତ)

(୧୫) "ଦୋ କୁଞ୍ଜେ ଝୁଲେ,
ଗଣ୍ଡ ମଣ୍ଡଲେ କୁଣ୍ଡଲ ଦୋଲେ
ଯେ ଯେ ଡାସୀଯେ ଜଗ ମଗାଏ
ସଜଲ ଜଲଦ ସେ ଏ କବସୂର୍ଯ୍ୟ ବ୍ରହ୍ମା ଗାଏ" ।

(ଝୁଲଣ ଗୀତ- ଶ୍ରୀ ସଦାନନ୍ଦ କବସୂର୍ଯ୍ୟ ବ୍ରହ୍ମା,
ବାଣୀବହାରସ୍ଥ ପୋଥି ବଭାଗରୁ ସଂଗୃହୀତ)

ଦିଆଗଲା । ନିମ୍ନରେ ପୂର୍ବ ଓ ପରବର୍ତ୍ତୀ ଓଡ଼ିଆ କବିମାନଙ୍କ ସହ କବିଙ୍କ ସମ୍ପର୍କର ସାମାନ୍ୟ ସୂଚନା ପ୍ରଦାନ କରାଗଲା ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ନୟାଗଡ଼ ସାହିତ୍ୟ ଚର୍ଚ୍ଚାର ଗୋଟିଏ କେନ୍ଦ୍ର ଥିଲା । ସେଠାରେ ରାଜା କୃଷ୍ଣସିଂହ ଓ ଉପେନ୍ଦ୍ର ଭଞ୍ଜ ସାହିତ୍ୟ ଚର୍ଚ୍ଚା କରିବାର ସୁବିଧା ପାଇଥିଲେ । ଏଣୁ ସଦାନନ୍ଦଙ୍କ ପକ୍ଷରେ ସାହିତ୍ୟ ଚର୍ଚ୍ଚାର ସୁବିଧା ସୁଲଭ ଥିଲା । ବିଶେଷତଃ ଭଞ୍ଜ ସାହିତ୍ୟ ଚର୍ଚ୍ଚାରେ ସେ ବିଶେଷ ଦକ୍ଷତା ଲାଭ କରିଥିଲେ । ତାଙ୍କ ଲେଖାବଳୀରେ ଭଞ୍ଜଙ୍କ ପ୍ରଭାବ ସୁସ୍ପଷ୍ଟ । କିପରି ଉପେନ୍ଦ୍ର ଭଞ୍ଜଙ୍କୁ ସଦାନନ୍ଦ ଅନୁକରଣ କରି ଅଛନ୍ତି, ତାହା ନିମ୍ନୋଦ୍ଧୃତ ଦୁହିଁଙ୍କ ପଦ ଦିଓଟିରୁ ସୁନ୍ଦର ରୂପେ ବୁଝାଯାଏ ।

"ସାରଙ୍ଗ ତରୁତଳେ ସାରଙ୍ଗଧରହେଳେ ସାରଙ୍ଗମୁଖୀ ଦେଖଇଛି ।
ସାରଙ୍ଗ ସାରଙ୍ଗରେ ସାରଙ୍ଗ ସାରଙ୍ଗରେ ସାରଙ୍ଗ ସାରଙ୍ଗଦିଏଛି" ।

(ଯୁଗଳ ରସାମୃତ ଲହରୀ, ଛାନ୍ଦ ୭- ପଦ ୭)

"ସାରଙ୍ଗ ରଦ ପଲଙ୍କେ, ସାରଙ୍ଗ ପଙ୍କିଳ ପଙ୍କେ ।
ସାରଙ୍ଗ ମୁଖୀ ସାରଙ୍ଗ, ସାରଙ୍ଗରେ ମାତିଲେ" ।

(ଉପେନ୍ଦ୍ର ଭଞ୍ଜ)

ସଦାନନ୍ଦ ଅକ୍ଷର ନିୟମ ରଚନାର ରୀତିକୁ ପ୍ରସାରିତ କରିଥିଲେ । ଏହା ସେ ସ୍ୱୀକାର କରି ଲେଖି ଅଛନ୍ତି—

"ଆଦ୍ୟେ ବନା - ନିୟମ ଏକ ବର୍ଣ୍ଣ ।
ପୁଣି ସ୍ୱରାଦରେ କିଛି ଉଦ୍‌ଗୀର୍ଣ୍ଣ
ରେଫ ଯୁକ୍ତାନ୍ତେ କେତେ ତାତପର୍ଯ୍ୟ" ।

(ଯୁଗଳ ରସାମୃତ ଲହରୀ-୨ୟ ଛାନ୍ଦ ୪୨-ପଦ)

କବି ସଦାନନ୍ଦ ଉପେନ୍ଦ୍ରଭଞ୍ଜଙ୍କ କୃଷ୍ଣରସ ସମ୍ପର୍କୀୟ କଳା କଉତୁକ ଓ ଦ୍ୱାରକାଲୀଳା ବର୍ଣ୍ଣିତ ସୁଭଦ୍ରା କାବ୍ୟଦ୍ୱାରା ଅନୁପ୍ରାଣିତ ହୋଇଥିବା ଅନୁମାନ କରାଯାଏ । 'ଯୁଗଳ ରସାମୃତ ଲହରୀ'ର ଉନଚତ୍ୱାରିଂଶ ଛାନ୍ଦକୁ କବି 'ବନମାଳୀ ଦାସଙ୍କ ରାସ ବାଣୀରେ' ଗାଇବା ପାଇଁ ନିର୍ଦ୍ଦେଶ

କରିଥିବାରୁ ଜଣାଯାଏ ଯେ, କବି 'ବନମାଳୀ'ଙ୍କ ସମସାମୟିକ ବା ଅଳ୍ପ ପରବର୍ତ୍ତୀ । ବନମାଳୀ ବୈଷ୍ଣବ ମତାବଲମ୍ବୀ ଥିଲେ । ତାହାଙ୍କ ପଦାବଳୀ ଓଡ଼ିଶାରେ ସର୍ବଜନ ଆଦର ଲାଭ କରିଅଛି । କବି ସଦାନନ୍ଦ ଭକ୍ତ କବିଙ୍କ କାବ୍ୟ କବିତା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । 'ଯୁଗଳ ରସାମୃତ ଭଞ୍ଜିଙ୍ଗ' (ଅପ୍ରକାଶିତ) ୪୮ ଛାନ୍ଦ, ୫୪ରୁ ୫୮ ପଦରେ ଉପେନ୍ଦ୍ର ଭଞ୍ଜ, ଲୋକନାଥ ବିଦ୍ୟାଧର, କୃଷ୍ଣ ଦାସ, ଭୂପତି ପଣ୍ଡିତ, ଦୀନବନ୍ଧୁ ରାଜ ଆଦି କବିଙ୍କ ବିଷୟରେ ସ୍ୱ ମତବ୍ୟକ୍ତ କରିଥିବା ହେତୁ ଜଣାଯାଏ ଯେ କବି ଏହି କବି ମାନଙ୍କ କାବ୍ୟ କୃତି ଦ୍ୱାରା ପ୍ରଭାବିତ ହୋଇଥିଲେ । କବି ସଦାନନ୍ଦ ମଧ୍ୟ ଭୂପତି ପଣ୍ଡିତଙ୍କ ପରି କୃଷ୍ଣ ପୟାର ରଚନା କରିଥିବା କବିମାନଙ୍କୁ ଶ୍ରେଷ୍ଠ ଆସନ ପ୍ରଦାନ କରି ଅଛନ୍ତି—

"କବି ଯେ ଭଣେ କୃଷ୍ଣ ପୟାର ।
ତାଙ୍କୁ କବିସୂର୍ଯ୍ୟ ନମସ୍କାର" ।

କବି ସଦାନନ୍ଦଙ୍କ କାବ୍ୟ କବିତା ଦ୍ୱାରା ପରବର୍ତ୍ତୀ ଯେଉଁ କେତେଜଣ କବି ପ୍ରଭାବିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଥିଲେ "କବି ଅଭିମନ୍ୟୁ ସାମନ୍ତସିଂହାର" । ଏହାଙ୍କ ସମ୍ପର୍କରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଯଥାର୍ଥରେ ଉଲ୍ଲେଖ କରିଅଛନ୍ତି—"ପରବର୍ତ୍ତୀ ବ୍ରଜପନ୍ଥୀମାନେ ସଦାନନ୍ଦଙ୍କ କାବ୍ୟ ପାଠ କରି ଉତ୍ସାହିତ ହୋଇଥିବେ ଏଥିରେ ସନ୍ଦେହ ନାହିଁ । ତାଙ୍କ ଶିଷ୍ୟ ଅଭିମନ୍ୟୁ ଏହାର ଏକ ନିଦର୍ଶନ" । କବି ସଦାନନ୍ଦଙ୍କ ରଚିତ କାବ୍ୟରେ ଥିବା ଅନୁରୂପ ପ୍ରୟୋଗ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ କାବ୍ୟକୃତିରେ ଦେଖାଯାଏ । ତନ୍ମଧ୍ୟରୁ ଏକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଯାଇଅଛି—

"ଉପମେୟଙ୍କ ସାର ବା ଏକତ୍ର କରି ।
ପୁଷ୍ପବନ୍ତ-ଚକରେ ପେଷିଲା କି କରି । ୮ ।
ଲବଣୀ ମିଶାଇ ଦଳ କଲା ଚିକ୍କଣ ।
ଘନ ଶୀକେ ରସାଣିଲା କରି ନିର୍ମାଣ । ୯ ।
ଜୀବନ୍ୟାସ କରି ଜଗନ୍ମୋହନ ମନ୍ତ୍ରେ ।
ମଦନ କି ଆଣିଛି ବାମା ବଧିବା ଯନ୍ତ୍ରେ" । ୧୦ ।
('ପ୍ରେମ ତରଙ୍ଗିଣୀ' - ଦ୍ୱିତୀୟ ଛାନ୍ଦ-ଶ୍ରୀ ସ. କ. ସୂ. ବ୍ରହ୍ମା)

"ସଂସାର କାନ୍ତି ସାରକୁ ଆଣିଲା ।
ଅମୃତ ମିଶାଇ ବାଟି ଗୁଣିଲା ।
ବିହି ଏ ମୂରତି କି ନିର୍ମାଣିଲା ।
ମର୍କତ ରସାଣରେ ରସାଣିଲା ସେ ।
ଉପମା ସୃଷ୍ଟି ଜିଣିଲା ସେ ।
ମୋହନ ମନ୍ତ୍ରରେ ଜୀବନ୍ୟାସ କରି
ସାର ସଂସାର ଗଣିଲା ଯେ । ୩ ।
( "ବିଦଗ୍ଧ ଚିନ୍ତାମଣି"-୩ୟ ଛାନ୍ଦ-ପୃ୧୮-୧୯ )

## ଉପସଂହାର :—

ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧ ଠାରୁ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ସମୟ ଉତ୍କଳ ସାହିତ୍ୟ କ୍ଷେତ୍ରରେ ପ୍ରକୃତରେ ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ । ଧନଞ୍ଜୟ, ଉପେନ୍ଦ୍ର, ଦୀନକୃଷ୍ଣ, ଲୋକନାଥ, ସଦାନନ୍ଦ, ଅଭିମନ୍ୟୁ ପ୍ରଭୃତି ସାହିତ୍ୟ ସ୍ରଷ୍ଟାଗଣ ଏ ଯୁଗର ସାହିତ୍ୟକୁ ବିଭବଶାଳୀ କରିବା ସଙ୍ଗେ ସଙ୍ଗେ ସ୍ୱୀୟ ରଚନାଚାତୁର୍ଯ୍ୟ ପ୍ରଦର୍ଶନ କରି ଯାଇଅଛନ୍ତି । ଏହି ଯୁଗର କାବ୍ୟକୃତି, ଗତାନୁଗତିକତା ତଥା ପରମ୍ପରାର ପକ୍ଷପାତି ଥିଲା । ବାହ୍ୟିକ ଉପାଦାନ ଉପରେ ଗୁରୁତ୍ୱ ଓ ଆଙ୍ଗିକ ସାଜସଜ୍ଜା, ଭକ୍ତି ଧର୍ମମତ ଓ ତତ୍ତ୍ୱର ପ୍ରଚାର, ଇହକାଳ ଅପେକ୍ଷା ପରକାଳ ଧର୍ମାର୍ଥକାମମୋକ୍ଷ ଅପେକ୍ଷା ଭଗବତ୍ ପ୍ରେମଭକ୍ତି ଉପରେ ଅଧିକ ଗୁରୁତ୍ୱ ଆରୋପ, ଜୀବନ ଓ ସମାଜ ବିମୁଖତା, ସାହିତ୍ୟରେ ଉତ୍କଟ ଶୃଙ୍ଗାରଚର୍ଚ୍ଚା ଓ ପ୍ରାକୃତ ଲୌକିକ ପୁଣି ସଂସ୍କୃତ କାବ୍ୟ ପରମ୍ପରା ଦ୍ୱାରା ତାହାର ପରିପୁଷ୍ଟି । ମାନବୀୟ ଅନୁଭୂତିର ନେପଥ୍ୟରେ ଦେବଦେବୀମାନଙ୍କ ଅଲୌକିକ ଲୀଳାର ବ୍ୟଞ୍ଜନା ଓ ବିଶ୍ଳେଷଣ; ବୈଷ୍ଣବ ରସ-ଚର୍ଯ୍ୟା ଓ ରସଶାସ୍ତ୍ରର ପ୍ରେରଣା; ଆଳଙ୍କାରିକ ଓ ଶୃଙ୍ଗାରାତ୍ମକ ସଂସ୍କୃତ କାବ୍ୟକର୍ତ୍ତା, ବିଶେଷତଃ ଶ୍ରୀହର୍ଷ ଓ ଜୟଦେବଙ୍କ ପ୍ରଚ୍ଛନ୍ନ ପ୍ରଭାବ; ଏ ସମସ୍ତ ମଧ୍ୟଯୁଗୀୟ ଆଭିମୁଖ୍ୟ ଦ୍ୱାରା ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପ୍ରଭାବିତ ହୋଇଥିବା ଦେଖାଯାଏ । (୧୭)

ଜଗନ୍ନାଥ ଦାସାଦି ପଞ୍ଚସଖା, ଦୀନକୃଷ୍ଣାଦି କବିମାନେ ନୀଳଗିରି ମାହାତ୍ମ୍ୟର ପୁନରୁତ୍‌ଥାନ କରି ଶ୍ରୀକ୍ଷେତ୍ରକୁ ନିତ୍ୟଧାମ ରୂପେ ପ୍ରମାଣିତ କରିଥିବା

(୧୭) 'ଓଡ଼ିଆ ସାହିତ୍ୟର ମଧ୍ୟପର୍ବ'-ଶ୍ରୀ ସୁରେନ୍ଦ୍ର ମହାନ୍ତି । ପୃଷ୍ଠା-୩-୪

ହେତୁ ବ୍ରଜମନ୍ତ୍ରୀ କବି ସଦାନନ୍ଦ ଗୋବର୍ଦ୍ଧନ ଓ ବୃନ୍ଦାବନର ମାହାତ୍ମ୍ୟ ବୃଦ୍ଧି କରିବା ମାନସରେ ସ୍ୱ କାବ୍ୟକୃତିମାନଙ୍କରେ ଗୌଡ଼ୀୟ ଗୋସ୍ୱାମୀମାନଙ୍କ ଗ୍ରନ୍ଥକୁ ଅନୁକରଣ କରି ଅଭିନବ ପ୍ରସଙ୍ଗମାନ ଉତ୍‌ଥାପନ କରି ଯାଇଅଛନ୍ତି । ମାତ୍ର ଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରତି ତାଙ୍କର ଭକ୍ତି ନ୍ୟୂନ ଥିବା ଜଣାଯାଏ ନାହିଁ । କାରଣ କବି ସ୍ୱ କାବ୍ୟ ଲେଖା ସମୟରେ ଆଦ୍ୟନ୍ତଭାଗରେ ପୁରୁଷୋତ୍ତମ କ୍ଷେତ୍ରରେ ବାସକରୁଥିଲେ । ଏହି ସମୟରେ ସେ ପୁରୀର ମହାରାଜା ଗଜପତି ବୀରକେଶରୀ ଦେବଙ୍କ ଠାରୁ 'କବିସୂର୍ଯ୍ୟ ବ୍ରହ୍ମା' ଉପାଧି ଲାଭ କରିଥିଲେ (୧୭) । ଅଧିକନ୍ତୁ କବିଙ୍କ ରଚିତ 'ଶ୍ରୀ ନୀଳାଦ୍ରିନାଥ ମହିମା' ନାମକ ଜଣାଣ ତାଙ୍କ ଜଗନ୍ନାଥ ପ୍ରୀତିର ଏକ ସ୍ୱତନ୍ତ୍ର ଉଦାହରଣ । ଏଥିରେ କବି ଜଗନ୍ନାଥଙ୍କ ପ୍ରତି ଅଚଳା ଭକ୍ତି ପ୍ରଦର୍ଶନ କରିଯାଇ ଅଛନ୍ତି ।

"ମହିମା ! ଶୁଣିମା ହେଉ ଗରିବ ଡ଼ାକ ।
ନିରେଖ ଜନକୁ ରଖ ପଙ୍କଜ ମୁଖ
କୃପା ସାଗର କାହିଁକି ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେଁ ସଳଖ । ୧ ।

× × ×

କହେ ସଦାନନ୍ଦ ଗୁରୁ; ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର କେବେ ନ ଦେଖ" । ୪ ।

ଏହା ବ୍ୟତୀତ କବି କାଳ୍ପନିକ କାବ୍ୟ 'ଲଳିତଲୋଚନା' କାବ୍ୟରେ ନାୟିକା ବସନ୍ତ ଋତୁରେ ବନଭ୍ରମଣ ଉଦ୍ଦେଶ୍ୟରେ ଗୃହରୁ ବହିର୍ଗତ ହେବା ସମୟରେ ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରିଥିବାର ଏକ ବର୍ଣ୍ଣନା ମିଳେ ।

"ସେହି କ୍ଷଣରେ ଲକ୍ଷଣ ଲକ୍ଷ ଭୂଷାକି କ୍ଷଣେ ନାରୀଙ୍କି ଠାରିଲା ।
ଶ୍ରୀ ଜଗନ୍ନାଥଙ୍କୁ ସୁମରି ପରମ ଆନନ୍ଦ ହୋଇ ବାହାରିଲା ॥
ଶ୍ରୀକର ପଇଠି ଉଭୟ ସଖିରେ ।
ବୟସୀ ବକ୍ଷରେ ଏମନ୍ତ ଯେମନ୍ତ ଶଶୀ ତାରା ମଧ୍ୟ ଦେଶରେ" । ୭ ।

(ଲଳିତଲୋଚନା-୭ମ ଛାନ୍ଦ) (ଅପ୍ରକାଶିତ)

---

(୧୭) "ଓଡ଼ିଆ ସାହିତ୍ୟର ଇତିହାସ"-ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
ପୃଷ୍ଠା-୩୩୭

ଶ୍ରୀ ଚୈତନ୍ୟ ଓ ଗୋସ୍ୱାମୀମାନଙ୍କ ତିରୋଧାନ ପରେ ବ୍ରଜବୈଷ୍ଣବ ସମ୍ପ୍ରଦାୟରେ ଆକର୍ଷଣ ଶକ୍ତି କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ଓଡ଼ିଶାରେ ମଧ୍ୟ ଶ୍ରୀ ଚୈତନ୍ୟଙ୍କ ସମସାମୟିକ ମହାରାଜା ଗଜପତି ପ୍ରତାପରୁଦ୍ରଦେବ ଓ ତାଙ୍କ ମନ୍ତ୍ରୀ ବୈଷ୍ଣବ ରାୟ ରାମାନନ୍ଦଙ୍କ ପୃଷ୍ଠପୋଷକତାରେ ଯେଉଁ ଚୈତନ୍ୟ-ପନ୍ଥୀ ବୈଷ୍ଣବ ଧର୍ମର ଭୂୟୋବିକାଶ ଘଟିଥିଲା, ତାହାମଧ୍ୟ ପରବର୍ତ୍ତୀ ରାଜା-ମାନଙ୍କର ଯଥୋଚିତ ପୃଷ୍ଠପୋଷକତା ଅଭାବରୁ ନିଷ୍ପ୍ରଭ ହୋଇ ପଡ଼ିଥିଲା । ଏଣୁ ରସିକ-ପଣ୍ଡିତ-ଭକ୍ତକବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସ୍ୱଗୁରୁଙ୍କ ନିର୍ଦ୍ଦେଶରେ ବ୍ରଜଲୀଳା ତତ୍ତ୍ୱର ପ୍ରଚାର ନିମନ୍ତେ ଦ୍ରୁତ ପଦକ୍ଷେପ ଗ୍ରହଣକରି ଉକ୍ତ ବିଷୟରେ ନାନା କାବ୍ୟ କବିତା ରଚନା କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ସ୍ଥାନରେ ମଠ ପ୍ରତିଷ୍ଠା କରି ତତ୍କାଳୀନ ରାଜା, ଜମିଦାର-ମାନଙ୍କ ପୃଷ୍ଠପୋଷକତାରେ ଏହି ଧର୍ମର ପୁନଃରୁତ୍ଥାନ କରିଥିଲେ ।

କବି ଚୈତନ୍ୟ ଧର୍ମର ତତ୍ତ୍ୱକୁ ପ୍ରଚାର କରିବା ଲକ୍ଷ୍ୟରେ, ନିଷ୍ଠାମଣିକମଣି, ଗୌରଚନ୍ଦ୍ରାମଣି, ବିଶ୍ୱମ୍ଭର ବିହାର, ନାମଚିନ୍ତାମଣି, ବ୍ରଜଲୀଳାମୃତ ସମ୍ପୁଟ (ରୂପଗୋସ୍ୱାମୀ କୃତ ନାଟକ ବିଦଗ୍‌ଧମାଧବର ଅନୁବାଦ), ଭକ୍ତିତରଙ୍ଗିଣୀ (ରୂପଗୋସ୍ୱାମୀଙ୍କ ଭକ୍ତିରସାମୃତ ସିନ୍ଧୁର ଛାୟାରେ), ପ୍ରେମତରଙ୍ଗିଣୀ, ପ୍ରେମ କଳ୍ପଲତା, ଯୁଗଳରସାମୃତ ଲହରୀ, ଯୁଗଳରସାମୃତ ଭଉଁରୀ, କୀର୍ତ୍ତନ ଉଜ୍ଜ୍ୱଳ (କିଶୋର ଦାସ ଗୋସ୍ୱାମୀଙ୍କ 'ଶ୍ରବଣମଙ୍ଗଳ'ର ଅନୁବାଦ), ପାଠରତ୍ନାବଳୀ ଓ ଚିଟାଉଚନ୍ଦ୍ରୋଦୟ, ଆଦି କାବ୍ୟମାନ ଏବଂ କେତେକ କବିତା ଯଥା; ଶ୍ରୀ ଚୈତନ୍ୟ ଜଣାଣ, ଚଉତିଶା, ଭଜନ, କୀର୍ତ୍ତନ, ଝୁଲଣଗୀତ ଆଦି ରଚନା କରିଥିଲେ ।

ଏହା ବ୍ୟତୀତ ରସିକ କବି ସଦାନନ୍ଦ ଅନ୍ୟାନ୍ୟ କେତେକ କାବ୍ୟ କବିତା ରଚନା କରି ସ୍ୱ ରଚନା ପାଟବର ବୈଶିଷ୍ଟ୍ୟ ପ୍ରତିପାଦନ କରିଯାଇ ଅଛନ୍ତି । ସେମାନଙ୍କ ମଧ୍ୟରେ କାଳ୍ପନିକ କାବ୍ୟ 'ଲଳିତ ଲୋଚନା' 'ମୋହନଲତା ବା ମୋହନ କଳ୍ପଲତା' ଓ ସୁରଙ୍ଗଦୀପିକା, ବାଳବୋଧିନୀ, ସଙ୍ଗୀତ ସଦାନନ୍ଦ, ସଙ୍ଗିନୀ ଚଉତିଶା, କୋଇଲି ଚଉତିଶା, ଚଉପଦୀ, ଲକ୍ଷ୍ମୀକେଶବ ଜଣାଣ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ପ୍ରକାଶ ଥାଉକି ଏହି ଗବେଷଣାତ୍ମକ ନିବନ୍ଧର ଦ୍ୱିତୀୟ ପରିଚ୍ଛେ-ଦରେ ଏହାର ବିସ୍ତୃତ ଆଲୋଚନା କରାଯାଇଅଛି ।

ଏ ପର୍ଯ୍ୟନ୍ତ କବି ସଦାନନ୍ଦଙ୍କ ବିରଚିତ ୨୧ ଗୋଟି କାବ୍ୟ, ୪ଟି ଜଣାଣ, ୪ଟି ଚଉତିଶା, ୭ଟି ଚଉପଦୀ, ୪ଟି ଅନ୍ୟାନ୍ୟ କବିତା, ୭ଟି ରାଧାକୃଷ୍ଣ ଝୁଲଣଗୀତ, ଲେଖିକାର ହସ୍ତଗତ ହୋଇଅଛି । ଏହି ସମସ୍ତ କାବ୍ୟ କବିତାର

ବହୁମୁଖୀ ଆଲୋଚନା ପୂର୍ବରୁ ବିଭିନ୍ନ ପରିଚ୍ଛେଦରେ ଓ ଅନ୍ୟାନ୍ୟ ପରିଚ୍ଛେଦମାନଙ୍କରେ ହୋଇଥିବାରୁ, ଉପସଂହାରରେ ସେ ସମସ୍ତର ଅଧିକ ଆଲୋଚନା ଅନାବଶ୍ୟକ ମନେ ହେଲା ।

ଉପେନ୍ଦ୍ର ଭଞ୍ଜଙ୍କ ପରେ କବି ସଦାନନ୍ଦଙ୍କ ବ୍ୟତୀତ ଆଉ କୌଣସି କବି ଏତେ କାବ୍ୟ ରଚନା କରିନାହାନ୍ତି । ଗ୍ରନ୍ଥ ରଚନା ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜଙ୍କ ସହ ସଦାନନ୍ଦ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସମ ଆସନର ଅଧିକାରୀ । ଭାବ, ଭାଷା, ପାଣ୍ଡିତ୍ୟ, ଲାଳିତ୍ୟ ଓ ଅଳଙ୍କାରାଦିରେ କବିଙ୍କ ପ୍ରତିଟି ରଚନା ଅତ୍ୟନ୍ତ ମନୋରମ ହୋଇ ପାରିଅଛି । ତେଣୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମହାଶୟ 'ଓଡ଼ିଆ ସାହିତ୍ୟର ଇତିହାସ' ୩ୟ ଭାଗରେ ଯଥାର୍ଥତଃ ଲେଖିଛନ୍ତି; "ଉପେନ୍ଦ୍ର ଓଡ଼ିଆ ସାହିତ୍ୟ ରାଜ୍ୟର ମୁକୁଟମଣି ହେଲେ ତାଙ୍କ ସଙ୍ଗେ ସଦାନନ୍ଦ ସର୍ବ ବିଷୟରେ ତୁଳନୀୟ ହେବା ପାଇଁ ଅଯୋଗ୍ୟ ନୁହନ୍ତି ।" ଏତେ ବଡ଼ ଜଣେ ପ୍ରତିଭାବାନ୍ କବି, ରସିକ-ପଣ୍ଡିତ-ଭକ୍ତ ଏତେ ଗୁଡ଼ିଏ ମହାନ୍ କାବ୍ୟ କବିତା ରଚନା କରି ଓଡ଼ିଆ ସାହିତ୍ୟ ଭଣ୍ଡାରର ଶ୍ରୀବୃଦ୍ଧି କରିଥିଲେ ମଧ୍ୟ ଅଦ୍ୟାବଧି ଲୋକଲୋଚନର ଅନ୍ତରାଳରେ ରହିଯାଇଛନ୍ତି, ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡ଼େ । ତେବେ ଯେତେଦୂର ମନେହୁଏ, କବିଙ୍କର ଦୃଢ଼ ଏକନିଷ୍ଠ ବ୍ରଜପନ୍ଥୀ ବୈଷ୍ଣବ ସାମ୍ପ୍ରଦାୟିକତା ଏହାର ପ୍ରଧାନ ପ୍ରତିବନ୍ଧକ । କବି ନିଜ କୃତି ଓ ଗୌରବ ପ୍ରଚାର ଓ ପ୍ରସାର କରିବା ସ୍ୱ-ଭଜନ ନିଷ୍ଠାର ପରିପନ୍ଥୀ ବୋଲି ମନେ କରୁଥିଲେ ।

ଏହାଛଡ଼ା କବି ଥିଲେ ସ୍ୱଧର୍ମାଭିମାନୀ । ଏହାର ପରିଚୟ ମିଳୁଥିଲେହେଁ ଜାତିଧର୍ମ ନିର୍ବିଶେଷରେ କାବ୍ୟାମୋଦୀ ପ୍ରେମିକ ପାଠକବୃନ୍ଦଙ୍କୁ ଉଲ୍ଲେଖ କରି ସେ ଲେଖିଅଛନ୍ତି;

"ଶୁଣହେ ଗୀତ ଗ୍ରାହକମାନେ, ଉପମା ତୁମ୍ଭ ତୁମ୍ଭ ସମାନେ ।
ଗଣନା ହେଲେ ସର୍ବଦ୍ୟମାନେ, ସେ ପଣ୍ଡିତ ମୋ ଅନୁମାନେ ।
ଯେ ବଶ ସଦା ପ୍ରେମାଭିମାନେ, ସେ ପୁଣି ମାନେ ଯେ ।
ସହଜେ ଥାଅ କାବ୍ୟମାନେ, ଧିକ ତାହାଙ୍କୁ ଯେହି ନମାନେ ।
ତୁମ୍ଭଙ୍କୁ ନମାନନ୍ତି ଗୁମାନେ, ଥାନ୍ତୁ ସେମାନେ ଯେ ।
ଭୂତ ଭବିଷ୍ୟ ବରତମାନେ, କୁଶଳ ହେବ ସୁ ସନମାନେ ।
ଶୁଣ ନୃପଜ କଥା ସାମାନ୍ୟେ ପ୍ରଶଂସାମାନେ ଯେ ॥ ୧ ॥
(ମୋହନ କଳ୍ପଲତା-୧° ଛାନ୍ଦ)

ଉପରୋକ୍ତ ଦୃଷ୍ଟାନ୍ତଟିରୁ ବୁଝାଯାଏ ଯେ କବି କେବଳ ଜଣେ ରସିକ,ପଣ୍ଡିତ ଓ ଭକ୍ତ ନଥିଲେ, ସେ ଥିଲେ ଜଣେ ସ୍ୱାଧୀନଚେତା ଗଣପୂଜ୍ୟ ମହାକବି । □

# ସହାୟକ ଗ୍ରନ୍ଥସୂଚୀ

ଇଂରାଜୀ ପୁସ୍ତକ ଓ ପତ୍ରିକା—


1. Bengal Vaishnavism-by Bipin Ch. Pal, Cal.1933
2. The Bhakti Cult in Ancient India-by Dr. Bhagbat Kumar Goswami Sastri, Cal. 1924.
3. Early History of Vaishnab Sect. Hema Chandra Raichowdhury, M.A., Calcutta University-1920.
4. Teachings & Philosophy of Sri Chaitanya Mahapravu-Published by Gaudiya Mission, Calcutta.
5. Language & Literature of Orissa-1898 Vol. IV, Sri Manmohan Chakravarty.
6. All about Hinduism-Sri Swami Sivanand Saraswati.
7. A History of South India-Sri Nilakantha Sastri
8. The Persian Sufism-O.P. Cyrian RIC.
9, Obscure Religious Cult-Sri S. B. Dasgupta.
10. 'The Flying Troika'-K. P. S. Menon, Oxford Press.
11. The Orissa Historical Research Journal, Part-III 1954.
12. Gopi's Love for Srikrishna-by Hanuman prasad Poddar, Gita Press.
13. Back to God Head. Vol. 10, No. 2, Published by Harekrushna movement.

14. A History of Orissa, Vol. I. W. W. Hunter

15. The History of the Medieval Vaishnavism in Orissa, by Prabhat Mukherjee.

16. Orissa Historical Research Journal, 1953 Vol.II, Vol. XIII No. 2, 1954, Part-III.

## ଓଡ଼ିଆ ପୁସ୍ତକ

୧ । ଶ୍ରୀଶ୍ରୀ ଚୈତନ୍ୟ ଚରିତାମୃତ - ଓଡ଼ିଆ ଅନୁବାଦ
ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକ-୨ ।

୨ । ରାୟ ରାମାନନ୍ଦ - ଶ୍ରୀମତୀ ସରଳା ଦେବୀ, ଓଡ଼ିଶା ସାହିତ୍ୟ
ଏକାଡେମି ଦ୍ୱାରା ପ୍ରକାଶିତ ।

୩ । ଖୁର୍ଦ୍ଧା ଇତିହାସ - କେଦାରନାଥ ମହାପାତ୍ର, ଶାରଦା ପ୍ରେସ୍
ଭୁବନେଶ୍ୱର-୨ ।

୪ । ବନମାଳୀ ପଦ୍ୟାବଳୀର ଭୂମିକା - ଶ୍ରୀ ଫକୀର ଚରଣ ଦାସ ।

୫ । ବିଦଗ୍ଧଚିନ୍ତାମଣି ମୁଖବନ୍ଧ - ପ୍ରାଚୀ ସଂସ୍କରଣ ୧ମ ଖଣ୍ଡ
ଡଃ ଆର୍ତ୍ତବଲ୍ଲଭ ମହାନ୍ତି ।

୬ । ପ୍ରାଚୀନ ଉତ୍କଳ - ୧୮ଶ ଭାଗ-ସ୍ୱର୍ଗତ ମୃତ୍ୟୁଞ୍ଜୟ ରଥ ।

୭ । ବିଦଗ୍ଧ ଚିନ୍ତାମଣି ଟୀକା - ଡଃ ଗୋପାଳଚନ୍ଦ୍ର ମିଶ୍ର ।

୮ । ଓଡ଼ିଆ ସାହିତ୍ୟର ଇତିହାସ - ପଣ୍ଡିତ ବିନାୟକ ମିଶ୍ର
ରଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର, କଟକ ।

୯ । ଓଡ଼ିଆ ସାହିତ୍ୟର ଇତିହାସ- ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

୧୦ । ଓଡ଼ିଆ ସାହିତ୍ୟର ଇତିହାସ - ଦ୍ୱିତୀୟ, ତୃତୀୟ ଓ ୪ର୍ଥ ଭାଗ
ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଏମ.ଏ., ଗ୍ରନ୍ଥମନ୍ଦିର, କଟକ

୧୧ । ଓଡ଼ିଶା ଇତିହାସ - ୨ୟ ଖଣ୍ଡ, ଡଃ ହରେକୃଷ୍ଣ ମହତାବ ।

୧୨ । ଓଡ଼ିଆ ସାହିତ୍ୟରେ ମଧ୍ୟପର୍ବ - ଶ୍ରୀ ସୁରେନ୍ଦ୍ର ମହାନ୍ତି ।

୧୩ । ଓଡ଼ିଶୀ ବୈଷ୍ଣବ ଧର୍ମ - ଡଃ କାହ୍ନୁଚରଣ ମିଶ୍ର ।

୧୪ । ହିନ୍ଦୁଧର୍ମ ସର୍ବସ୍ୱ-ଉପେନ୍ଦ୍ରନାଥ ହୋତା, ଧର୍ମଗ୍ରନ୍ଥ ଷ୍ଟୋର, କଟକ ।

୧୫ । ବେଦ ମନୁଷ୍ୟ କୃତ କି ? - ଶ୍ରୀ ପ୍ରିୟବ୍ରତ ଦାଶ

୧୬ । ଶ୍ରୀ ଚୈତନ୍ୟଦେବ ଓ ତାହାଙ୍କ ପାର୍ଷଦଗଣ-ଶ୍ରୀ ଗିରିଜାଶଙ୍କର ରାୟ

୧୭ । ଉପନିଷଦ୍ ଗ୍ରନ୍ଥାବଳୀ - ବୃହଦାରଣ୍ୟ କୋପନିଷଦ୍, ୩ୟ ଭାଗ
(ଉଦ୍‌ବୋଧନ କାର୍ଯ୍ୟାଳୟ) ।

୧୮ । ଶ୍ରୀଶ୍ରୀ ନାମ ଓ ନାମ ମାହାତ୍ମ୍ୟ-ଶ୍ରୀ କଶୋଣି କଙ୍କର ଦାସ, ଏମ୍.ଏ.

୧୯ । ଉପେନ୍ଦ୍ର ସାହିତ୍ୟ ସମାଲୋଚନା - ଶ୍ରୀ ବିଷ୍ଣୁମୋହନ ମହାନ୍ତି ।

୨୦ । ପ୍ରେମ ପଞ୍ଚାମୃତ - ଭୂପତି ପଣ୍ଡିତ, ପ୍ରାଚୀ ସଂସ୍କରଣ

୨୧ । ଉତ୍କଳ ସାହିତ୍ୟର ଇତିହାସ - ୰ତାରିଣୀ ଚରଣ ରଥ ।

୨୨ । ଶ୍ରୀକୃଷ୍ଣ - ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଷ୍ଟୁଡେଣ୍ଟସ୍ ଷ୍ଟୋର, ବ୍ରହ୍ମପୁର ।

୨୩ । ରାଧାବଲ୍ଲଭ ସମ୍ପ୍ରଦାୟ ସିଦ୍ଧାନ୍ତ ଓ ସାହିତ୍ୟ ।

୨୪ । ଭଞ୍ଜପ୍ରଭା - ପ୍ରକାଶକ ଭଞ୍ଜଜୟନ୍ତୀ ସମିତି-୧୯୫୩ ।

୨୫ । ପ୍ରାଚୀନ ଉତ୍କଳ - ୰ଜଗବନ୍ଧୁ ସିଂହ ।

୨୬ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ।

୨୭ । ଆଲୋଚନାମାଳା - ଡଃ କାହ୍ନୁଚରଣ ମିଶ୍ର ।

୨୮ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ - ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରାଚୀସଂସ୍କରଣ ।

୨୯ । ଓଡ଼ିଆ ସାହିତ୍ୟର କ୍ରମ ପରିଣାମ - ପଣ୍ଡିତ ନୀଳକଣ୍ଠ ଦାଶ
୧ମ ଓ ୨ୟ ଭାଗ ।

୩୦ । ପଞ୍ଚସଖା ଓଡ଼ିଆ ସାହିତ୍ୟ - ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି,
ଫ୍ରେଣ୍ଡସ୍ ପବ୍ଲିସର୍ସ୍, କଟକ-୨ ।

୩୧ । ଲଳିତଲୋଚନା - ହାଣ୍ଡ୍‌ଲିପି ଓ ତାଳପତ୍ର ପୋଥି,
**Cy 277, OL 47, OL 52** ବାଣୀବିହାର ।

୩୨ । ଯୁଗଳରସାମୃତ ଲହରୀ - ପ୍ରକାଶିତ ପୁସ୍ତକ ଓ ତାଳପତ୍ର ପୋଥି
Cy 178 OL 225 - ବାଣୀବିହାର
OI/92 OI/608, Cy 92 ମ୍ୟୁଜିୟମ, ଭୁବନେଶ୍ୱର

୩୩ । ଯୁଗଳରସାମୃତ ଭଉଁରୀ - ପୋଥି ନଂ ୧୬୦୮ ଓ Cy 1C06
ମ୍ୟୁଜିୟମ, ଭୁବନେଶ୍ୱର ।

୩୪ । ପ୍ରେମତରଙ୍ଗିଣୀ - ପ୍ରକାଶିତ ପୁସ୍ତକ ଓ ପୋଥି Cy 221,
Cy 345 ବାଣୀବିହାର ।

୩୫ । ପ୍ରେମକଳ୍ପଲତା - ପ୍ରକାଶିତ ପୁସ୍ତକ ଓ ପୋଥି ନଂ OI/528 (c)
ମ୍ୟୁଜିୟମ ।

୩୬ । ଚଇତାଉ ଚନ୍ଦ୍ରୋଦୟ - ପୋଥି ନଂ Cy 182 ବାଣୀବିହାର

୩୭ । ନାମଚିନ୍ତାମଣି-ପ୍ରକାଶିତ ପୁସ୍ତକ ଓ ପୋଥି ନଂ OL 339 ବାଣୀବିହାର

୩୮ । ନିଷ୍ଠାଜ୍ଞାନମଣି - ପ୍ରକାଶିତ ପୁସ୍ତକ ଓ ପୋଥି ନଂ OI/544,
1371 ଓ 1401 (A) ମ୍ୟୁଜିୟମ, ଭୁବନେଶ୍ୱର ।

୩୯ । ଚିତ୍ତତରଙ୍ଗିଣୀ - ପୋଥି ନଂ OL/୯0 ବାଣୀବିହାର ।

୪୦ । ପାଦରତ୍ନାବଳୀ - ପୋଥି ନଂ Cy 344, OL 151,
ବାଣୀବିହାର ।

୪୧ । ବ୍ରଜଲୀଳାମୃତ ସମୁଦ୍ର - ପାଣ୍ଡୁଲିପି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
ଓ ପୋଥି ନଂ OL/166, ବାଣୀବିହାର ।

୪୨ । ପ୍ରେମଚିନ୍ତାମଣି - ପୋଥି ନଂ OI/1081 (A) ମ୍ୟୁଜିୟମ,
ଭୁବନେଶ୍ୱର ।

୪୩ । ବିଶ୍ୱମ୍ଭର ବିହାର - ପୋଥି ନଂ Or H/15, Cy 272
ମ୍ୟୁଜିୟମ ।

୪୪ । ପ୍ରୀତିଚିନ୍ତାମଣି - ପୋଥି ନଂ OI/94 ମ୍ୟୁଜିୟମ, ଭୁବନେଶ୍ୱର

୪୫ । ସଙ୍ଗୀତ ସଦାନନ୍ଦ - ପୋଥି ନଂ ବାଣୀବିହାର ।

- ୪୬ । ମୋହନକଲ୍ପଲତା - ପାଣ୍ଡୁଲିପି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ପୋଥି ନଂ OL/60, OL ୨4 ବାଣୀବିହାର ।

୪୭ । ଭାଗବତଗୀତାନୁବାଦ - ପୋଥି ନଂ OL 240 ବାଣୀବିହାର ।

୪୮ । ସ୍ୱରଶାସ୍ତ୍ର ବା ସ୍ୱରଦୀପିକା - OL 114, OL 208 ମ୍ୟୁଜିୟମ, ଭୁବନେଶ୍ୱର । OL 298

୪୯ । ବାଳବୋଧିନୀ - ପୋଥି ନଂ Cy (b) 43୦, Cy 104 (b) ମ୍ୟୁଜିୟମ, ଭୁବନେଶ୍ୱର ।

୫୦ । ଉତ୍କଳଖଣ୍ଡମଣି - ପୋଥି ନଂ ୧୭୨ ମ୍ୟୁଜିୟମ ।

## ଓଡ଼ିଆ ପତ୍ରିକା ଓ ପ୍ରବନ୍ଧ

୧ । ଝଙ୍କାର ୧୦ମ ବର୍ଷ ୩ୟ ସଂଖ୍ୟା, ଜାନୁୟାରୀ ୧୯୫୮ ପ୍ରବନ୍ଧ-'ଗଜପତି ବୀରକେଶରୀ ଦେବ' ଶ୍ରୀ କେଦାରନାଥ ମହାପାତ୍ର ।

୨ । ଝଙ୍କାର ୨୯ଶ ବର୍ଷ ୬ଷ୍ଠ ସଂଖ୍ୟା ସେପ୍ଟେମ୍ବର ୧୯୭୭ ପ୍ରବନ୍ଧ-'ରାୟରାମାନନ୍ଦ' ଡ଼ଃ ହରେକୃଷ୍ଣ ମହତାବ

୩ । ଝଙ୍କାର ୩୦ଶ ବର୍ଷ ୧୧ଶ ସଂଖ୍ୟା ଫେବୃୟାରୀ ୧୯୭୯ ଓ ୧୨ଶ ସଂଖ୍ୟା ମାର୍ଚ୍ଚ ୧୯୭୯ ପ୍ରବନ୍ଧ-'ରାଜ୍ୟ ବନ୍ଧନ ବିଜୋଚଣ-ଖୋରଧାର ରାଜବଂଶ ଓ ଜଗନ୍ନାଥ'-ହରମାନ୍ କୁଲ୍କ, ଭାଷାନ୍ତର-ସଚ୍ଚିଦାନନ୍ଦ ମିଶ୍ର

୪ । ଝଙ୍କାର ୩୧ଶ ବର୍ଷ ୩ୟ ସଂଖ୍ୟା ଜୁନ୍ ୧୯୭୯ ଜଗନ୍ନାଥ ଓ ଗଜପତି ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର

୫ । ପୌରୁଷ ୬ଷ୍ଠ ବର୍ଷ ୧ମ ସଂଖ୍ୟା ପ୍ରବନ୍ଧ-'ଭାଗବତ ଧର୍ମ' ଡଃ ଗୋକୁଳଗୋବିନ୍ଦ ଶାସ୍ତ୍ରୀ

୬ । 'ପୌରୁଷ' ୯ମ ବର୍ଷ ୧ମ ସଂଖ୍ୟା ପ୍ରବନ୍ଧ-'ଜଗନ୍ନାଥ-କୃଷ୍ଣ' ଡଃ ଗୋକୁଳଗୋବିନ୍ଦ ଶାସ୍ତ୍ରୀ

୭ । ପୌରୁଷ ୧୨ଶ ବର୍ଷ ୧ମ ଓ ୩ୟ ସଂଖ୍ୟା

